# ଶିଶୁ ମନୋବିଜ୍ଞାନ

ପ୍ରଫେସର ଡକ୍ଟର ଗିରୀଶବାଳା ମହାନ୍ତି

ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା

ଭୁବନେଶ୍ୱର

# ଶିଶୁ ମନୋବିଜ୍ଞାନ


ଲେଖିକା :

ପ୍ରଫେସର (ଡକ୍‌ଟର) ଗିରୀଶବାଳା ମହାନ୍ତି

ଏମ୍. ଏ., ପିଏଚ୍. ଡ଼ି.

ନିର୍ଦ୍ଦେଶିକା, ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା

ଭୁବନେଶ୍ୱର



୧୯୯୪

ପ୍ରକାଶକ :

ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା;

ଭୁବନେଶ୍ୱର

**CHILD PSYCHOLOGY**

Published by the Orissa State Bureau of Text-book Preparation & Production under the centrally sponsored scheme of production of books and literature in regional languages at the University level of the Government of India in the ministry of Education and Social Welfare ( Department of Education ), New Delhi.

*Written by* :

**Prof. (Dr.) Girishbala Mohanty,** M.A., Ph.D.
Director, Orissa State Bureau of
Text book Preparation and Production,
Bhubaneswar.

*Reviewed by* :

**Dr. Radhanath Rath,** M.A., Ph.D
Professor and Head of the Department of Psychology,
Utkal University, Bhubaneswar.

*Language Scrutinised by* :

**Smt. Haripriya Mohapatra, M.A.**
Language Expert,
Text Book Bureau, Bhubaneswar

First Edition—1977—2000
Revised Edition—1987—1000

Third Impression—1994/2,000 Copies

*Published by* : **The Orissa State Bureau of Text Book Preparation & Production, Bhubaneswar.**

Publication No.—183



*Printed by* :

**Sathi Printing Press**
**Oriya Bazar, Cuttack-1**

**Price Rs. 14.00**
**(Rupees Fourteen only)**

# ତୃତୀୟ ମୁଦ୍ରଣର ଭୂମିକା

ବିଶେଷ ଆନନ୍ଦର କଥା ଯେ ପ୍ରଫେସର (ଡକ୍ଟର) ଗିରିଶବାଳା ମହାନ୍ତିଙ୍କଦ୍ୱାରା ପ୍ରଣୀତ "ଶିଶୁ ମନୋରଞ୍ଜନ" ପୁସ୍ତକଟିର ଆଦର ଦିନକୁଦିନ ବୃଦ୍ଧି ପାଇବାରେ ଲାଗିଛି । ଏଣୁ ଏହି ସଂସ୍ଥା ତରଫରୁ ଏହାର ତୃତୀୟ ମୁଦ୍ରଣ ପ୍ରକାଶିତ ହେବାକୁ ଯାଉଛି । ଏହା ପାଠକ ପାଠିକା ଛାତ୍ରୀ ଓ ଅଧ୍ୟାପିକା ମହଲରେ ବିଶେଷ ଭାବରେ ଆଦୃତ ହେବ ବୋଲି ମୋର ଆଶା ।

ଭୁବନେଶ୍ୱର<br>ତା ୧ । ୯ । ୯୪

ଡକ୍ଟର ଏମ୍. ଜ୍ୟୁ. ଖାନ୍<br>ନିର୍ଦ୍ଦେଶକ

# ପରିମାର୍ଜିତ ସଂସ୍କରଣର ଭୂମିକା

ବିଶେଷ ଆନନ୍ଦର କଥା ଯେ, ପ୍ରଫେସର (ଡକ୍ଟର) ଗିରୀଶବାଳା ମହାନ୍ତିଙ୍କ ଦ୍ୱାରା ଲିଖିତ ଶିଶୁ ମନୋରଞ୍ଜନ ପୁସ୍ତକଟିର ଆଦର ଦିନକୁଦିନ ବଢ଼ି ଚାଲିଛି । ଏହି ସଂସ୍ଥାଦ୍ୱାରା ପୁସ୍ତକଟିର ପରିମାର୍ଜିତ ସଂସ୍କରଣ ପ୍ରକାଶିତ ହେବାକୁ ଯାଉଛି । ଏହି ସଂସ୍କରଣରେ ପୂର୍ବରୁ ଥିବା ବିଷୟଗୁଡ଼ିକ ଉତ୍ତମ ରୂପେ ସଙ୍କଳନ କରାଯାଇଛି । ଏହି ସଂସ୍କରଣଟିର ନବୀକରଣ ଲାଗି ମଧ୍ୟ ବିଶେଷ ଦୃଷ୍ଟି ଦିଆଯାଇଛି ।

ଏଣୁ ପାଠକ, ପାଠିକା, ଛାତ୍ରୀ ଓ ଅଧ୍ୟାପିକା ମହଲରେ ପୂର୍ବଭଳି ବିଶେଷ ଭାବରେ ଆଦୃତ ହେବ ବୋଲି ଆମର ଆଶା ।

ଭୁବନେଶ୍ୱର
ତା। ୨।୫।୮୭

ପ୍ରଫେସର (ଡ.) ଗିରୀଶବାଳା ମହାନ୍ତି
ନିର୍ଦ୍ଦେଶିକା

# ମୁଖବନ୍ଧ

ଶିଶୁ ମନୋବିଜ୍ଞାନର ପରିସର ଯଥେଷ୍ଟ ବ୍ୟାପକ ଓ ବିସ୍ତୃତ ହେଲେ ମଧ୍ୟ ଏ ସମ୍ବନ୍ଧରେ ଅଭିଭାବକ ଓ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କର ଧାରଣା ବିଜ୍ଞାନସମ୍ମତ ଓ ସୁସ୍ପଷ୍ଟ ନୁହେଁ । ଅନେକ କ୍ଷେତ୍ରରେ ବହୁ ଭ୍ରାନ୍ତ ଓ ଅବୈଜ୍ଞାନିକ ପ୍ରଥାର ବଶବର୍ତ୍ତୀ ହୋଇ ପିତାମାତା ତଥା ପିଲାର ନିକଟତମ ସଂସ୍ପର୍ଶରେ ଆସୁଥିବା ବ୍ୟକ୍ତିବିଶେଷ ତାର ସୁସ୍ଥ ବ୍ୟକ୍ତିତ୍ୱ ଗଠନ ପଥରେ ବାଧା ସୃଷ୍ଟି କରିଥାନ୍ତି । ସଂପ୍ରତି ଶିଶୁ ମନୋବିଜ୍ଞାନ କ୍ଷେତ୍ରରେ ବହୁ ବିଜ୍ଞାନସମ୍ମତ ଗବେଷଣା ପୂର୍ବକ ନାନା ମତ ଓ ବିଶ୍ୱାସକୁ ଖଣ୍ଡନ କରି ନୂତନ ମତବାଦ-ମାନ ଉପସ୍ଥାପିତ କରିଅଛି । ଏହିସବୁ ନୂତନ ତଥ୍ୟ ଗୃହବିଜ୍ଞାନ ଓ ସମାଜ ବିଜ୍ଞାନ ଛାତ୍ରଛାତ୍ରୀ ତଥା ଜନସାଧାରଣଙ୍କୁ ସମ୍ୟକ୍ ଭାବରେ ଅବହିତ କରିବାର ଲକ୍ଷ୍ୟ ରଖି ଏହି ପୁସ୍ତକ ରଚନା କରାଯାଇଛି ।

ଗୃହବିଜ୍ଞାନ ଅଧ୍ୟୟନ କରୁଥିବା ଛାତ୍ରଛାତ୍ରୀଙ୍କର ଏକ ପ୍ରଧାନ ଲକ୍ଷ୍ୟ ହେଲା ଗୃହ ପରିବେଷ୍ଟନୀକୁ ସର୍ବାଙ୍ଗସୁନ୍ଦର କରି ଗଢ଼ିବା ଓ ବିକାଶର ବିଭିନ୍ନ ପର୍ଯ୍ୟାୟରେ ଶିଶୁର ଉତ୍ତମ ଶାରୀରିକ, ମାନସିକ ଓ ବୌଦ୍ଧିକ ବିକାଶରେ ସାହାଯ୍ୟ କରିବା ।

ମାତୃଗର୍ଭର ଉଷ୍ମତା ହରାଇ ଧରାପୃଷ୍ଠରେ ଅବତୀର୍ଣ୍ଣ ହେଲା ପରେ ଶିଶୁର ବ୍ୟକ୍ତିତ୍ୱ ଗଠନ ଆରମ୍ଭ ହୁଏ ଗୃହ ପରିବେଷ୍ଟନୀ ମଧ୍ୟରେ । କହିବା ବାହୁଲ୍ୟ ଯେ, ଏଥିପାଇଁ ଗୃହର ମନସ୍ତାତ୍ତ୍ୱିକ ବାୟୁମଣ୍ଡଳ ଅନୁକୂଳ ହେବା ଆବଶ୍ୟକ । ଶିଶୁକୁ ବାଲ୍ୟକାଳରୁ କିପରି ଭାବରେ ଲାଳନପାଳନ କଲେ ତାର ବ୍ୟକ୍ତିତ୍ୱର ପୂର୍ଣ୍ଣାଙ୍ଗ ବିକାଶ ହେବା ସଙ୍ଗେ ସଙ୍ଗେ ତାର ଅନ୍ତର୍ନିହିତ ଶକ୍ତି ଓ ବିଶେଷ ଯୋଗ୍ୟତାର ଉତ୍କୃଷ୍ଟତମ ବିକାଶ ହୋଇପାରିବ ତାହା ଗୃହ ବିଜ୍ଞାନ ଛାତ୍ରଛାତ୍ରୀଙ୍କର ଜାଣିବା ଉଚିତ ।

ଏତଦ୍‌ବ୍ୟତୀତ ସେମାନଙ୍କର ଶିଶୁ ମନୋବିଜ୍ଞାନ ସମ୍ବନ୍ଧୀୟ ସାଂପ୍ରତିକ ଗବେଷଣା ତଥା ବିଭିନ୍ନ ନୂତନ ମତବାଦ ସମ୍ବନ୍ଧରେ ଯଥେଷ୍ଟ ଓ ସ୍ପଷ୍ଟ ଜ୍ଞାନ ରହିବା ଆବଶ୍ୟକ । ଗୃହ ବିଜ୍ଞାନ ଛାତ୍ରଛାତ୍ରୀମାନଙ୍କ ନିମନ୍ତେ ଉଦ୍ଦିଷ୍ଟ ଏହି ପୁସ୍ତକରେ ଉପରୋକ୍ତ ବିଷୟଗୁଡ଼ିକ ପ୍ରତି ଧ୍ୟାନ ରଖି ମୁଖ୍ୟତଃ ଶିଶୁର ବ୍ୟକ୍ତିତ୍ୱର ସୁସ୍ଥ ବିକାଶ କିପରି କରାଯାଇପାରିବ ସେ ସମ୍ପର୍କରେ ସୂଚନା ଦିଆଯାଇଛି ।

ପ୍ରଥମ କେତୋଟି ଅଧ୍ୟାୟରେ ଶିଶୁ ମନୋବିଜ୍ଞାନ ଅଧ୍ୟୟନ କରିବାର ଆବଶ୍ୟକତା, ଶିଶୁ ଅଧ୍ୟୟନ ପଦ୍ଧତି, ପ୍ରାକ୍ ଜନ୍ମ ଓ ଜନ୍ମ ପର ବିକାଶରେ ଅନୁବଂଶ ଓ ପରିବେଶର ପ୍ରଭାବ ଇତ୍ୟାଦି ସମ୍ବନ୍ଧରେ ସଂକ୍ଷିପ୍ତ ଧାରଣା ଦିଆଯାଇଛି ।

ପୁସ୍ତକର ଦ୍ୱିତୀୟାର୍ଦ୍ଧରେ ଶିଶୁର ବିଭିନ୍ନ ମନସ୍ତାତ୍ତ୍ୱିକ ପ୍ରକ୍ରିୟା, ଯଥା— ସମ୍ବେଦନା, ଧ୍ୟାନ, ଶିକ୍ଷଣ ଓ ଅଭ୍ୟାସ ଗଠନ, ଧୀଶକ୍ତି, ସ୍ମରଣ ଓ ବିସ୍ମରଣ ପ୍ରକ୍ରିୟା, ବିଚାର, ଚିନ୍ତନ ଓ କଳ୍ପନା ଇତ୍ୟାଦି ସମ୍ବନ୍ଧରେ ଆଲୋଚନା କରାଯାଇଛି ।

ଶେଷ ଭାଗରେ ଶିଶୁର ସୁସ୍ଥ ଓ ପୂର୍ଣ୍ଣାଙ୍ଗ ବ୍ୟକ୍ତିତ୍ୱ ଗଠନରେ ସାମାଜିକ ଓ ଆବେଗିକ ବିକାଶର ଭୂମିକା ଓ କ୍ରୀଡ଼ାର ମହତ୍ତ୍ୱ ବିଭିନ୍ନ ଅଧ୍ୟୟନ ଓ ଦୃଷ୍ଟାନ୍ତ ସହ ବର୍ଣ୍ଣନା କରାଯାଇଛି ।

ପୁସ୍ତକର ସୀମିତ କଳେବର ଦୃଷ୍ଟିରୁ ବିଭିନ୍ନ ବିଷୟଗୁଡ଼ିକୁ ବିଶଦ ଭାବରେ ଆଲୋଚନା କରିବାର ଅବକାଶ ମିଳି ନଥିଲେ ମଧ୍ୟ ଗୃହବିଜ୍ଞାନ ଛାତ୍ରଛାତ୍ରୀଙ୍କର ଆବଶ୍ୟକୀୟ ବହୁ ଜ୍ଞାତବ୍ୟ ଉପାଦେୟ ଓ ବିଜ୍ଞାନସମ୍ମତ ତଥ୍ୟ ଏହି ପୁସ୍ତକରେ ସନ୍ନିବେଶିତ କରିବାକୁ ଉଦ୍ୟମ କରିଛି ।

ଗୃହବିଜ୍ଞାନ ସ୍ନାତକ ଶ୍ରେଣୀର ଛାତ୍ରଛାତ୍ରୀଙ୍କ ବ୍ୟତୀତ ମନୋବିଜ୍ଞାନ ଛାତ୍ରଛାତ୍ରୀ ଓ ସର୍ବସାଧାରଣ ଏହି ପୁସ୍ତକଟି ପାଠ କରି ଉପକୃତ ହୋଇପାରିବେ ବୋଲି ମୋର ଆଶା ।

ଏହି ପୁସ୍ତକଟିର ପ୍ରକାଶନ ଦାୟିତ୍ୱ ଗ୍ରହଣ କରିଥିବାରୁ ମୁଁ ଓଡ଼ିଶା ରାଜ୍ୟ ପାଠ୍ୟ ପୁସ୍ତକ ସଂସ୍ଥାକୁ ଧନ୍ୟବାଦ ଅର୍ପଣ କରୁଛି ।

ପରିଶେଷରେ, ଯେଉଁ ଛାତ୍ରଛାତ୍ରୀମାନେ ସଂଶୋଧିତ ପାଣ୍ଡୁଲିପିଟିକୁ ନକଲ କରି ପ୍ରକାଶ ଉପଯୋଗୀ କରିବାରେ ସାହାଯ୍ୟ କରିଛନ୍ତି, ମୁଁ ସେମାନଙ୍କୁ ଆନ୍ତରିକ କୃତଜ୍ଞତା ଜଣାଉଛି ।

ଲେଖିକା

# ଉପୋଦ୍‌ଘାତ

"ଉଚ୍ଚ ହେବାପାଇଁ କର ଯେବେ ଆଶା
ଉଚ୍ଚ କର ଆଗ ନିଜ ମାତୃଭାଷା"

—ଗଙ୍ଗାଧର ମେହେର

ଭାରତବର୍ଷରେ ବହୁ ଭାଷାଭାଷୀ ଲୋକ ରହୁଥିବାରୁ ଭାଷା ସମସ୍ୟା ଏକ ଜଟିଳ ସମସ୍ୟା । ସ୍ୱାଧୀନତା ପରେ ଭାରତ ସରକାର ଭାଷା ବିଷୟରେ ତାଙ୍କର ଜାତୀୟ ନୀତି କ'ଣ ହେବ ସେ ବିଷୟରେ ଗୁରୁତ୍ୱର ସହିତ ଚିନ୍ତା କଲେ । ଭାରତ ସରକାରଙ୍କଦ୍ୱାରା ସ୍ଥାପିତ ଭାଷା କମିଶନ (୧୯୬୪-୬୬) ଏ ଦିଗରେ ବହୁ ଅନୁସନ୍ଧାନ କରି ଏକ ସୁଚିନ୍ତିତ ରିପୋର୍ଟ ଦାଖଲ କଲେ । ଭାରତର ବିଭିନ୍ନ ଆଞ୍ଚଳିକ ଭାଷାରେ କଲେଜ ଓ ବିଶ୍ୱବିଦ୍ୟାଳୟ ସ୍ତରରେ ଶିକ୍ଷାଦାନ କାର୍ଯ୍ୟ ପରିଚାଳିତ ହେବା ଉଚିତ ବୋଲି ସେମାନେ ସୁପାରିଶ କଲେ । ଆଞ୍ଚଳିକ ଭାଷା ଶିକ୍ଷା ମାଧ୍ୟମ ହେଲେ ବୈଜ୍ଞାନିକ ଓ ବୈଷୟିକ ଜ୍ଞାନ ସହଜରେ ଲୋକ-ମାନଙ୍କ ମଧ୍ୟରେ ପ୍ରସାର ଲାଭ କରିବ । ଏହା ଯେ କେବଳ ଦେଶକୁ ଶିଳ୍ପ ସମୃଦ୍ଧିରେ ବିକାଶ ଲାଭ କରିବାରେ ସାହାଯ୍ୟ କରିବ ତା ନୁହେଁ; ପରନ୍ତୁ ବିଜ୍ଞାନ ଓ ବୈଜ୍ଞାନିକ ଦୃଷ୍ଟିକୋଣର ଦୃଢ଼ ଭିତ୍ତିଭୂମି ଜନସାଧାରଣଙ୍କ ମଧ୍ୟରେ ସ୍ଥାପିତ କରିପାରିବ । ଉଚ୍ଚଶିକ୍ଷିତ ସମାଜ ଓ ନିରକ୍ଷର ଜନତାଙ୍କ ମଧ୍ୟରେ ଯେଉଁ ବିରାଟ ବ୍ୟବଧାନ ରହିଛି ତାହା ଧୀରେ ଧୀରେ ଦୂରୀଭୂତ ହେବ । ଇଂରାଜୀରେ ଶିକ୍ଷା ଦିଆଯାଉଥିବାରୁ ଅବୋଧ୍ୟ ବିଷୟବସ୍ତୁକୁ ଛାତ୍ରମାନେ କଣ୍ଠସ୍ଥ କରି ଯେପରି ଆୟତ୍ତ କରିବାକୁ ଚେଷ୍ଟା କରୁଛନ୍ତି ଆଞ୍ଚଳିକ ଭାଷା ମାଧ୍ୟମରେ ଶିକ୍ଷା ଦିଆଗଲେ ସେପରି କଣ୍ଠସ୍ଥ କରିବାର ଆବଶ୍ୟକତା ପଡ଼ିବ ନାହିଁ । ସେମାନେ ବିଷୟବସ୍ତୁ ସବୁ ନିଜ ଭାଷାରେ ସହଜରେ ବୁଝିପାରିବେ ଓ ତାକୁ ଆୟତ୍ତ କରିପାରିବେ । ତେଣୁ ଶିକ୍ଷାର ଗୁଣାତ୍ମକ ମାନ ବୃଦ୍ଧି ଘଟିବ । ଭାରତବର୍ଷ ବ୍ୟତୀତ ପୃଥିବୀର ଅନ୍ୟ କୌଣସି ସଭ୍ୟ ଦେଶରେ ଆଞ୍ଚଳିକ ଭାଷା ବ୍ୟତୀତ ଅନ୍ୟ ଭାଷାରେ କଲେଜ ଓ ବିଶ୍ୱବିଦ୍ୟାଳୟ ସ୍ତରରେ ଶିକ୍ଷା ଦିଆଯାଏ ନାହିଁ ।

ଆନନ୍ଦର ବିଷୟ ଯେ ଉଚ୍ଚଶିକ୍ଷା କ୍ଷେତ୍ରରେ ଆଞ୍ଚଳିକ ଭାଷାର ପ୍ରଚଳନ ନେଇ ଶିକ୍ଷା କମିଶନ୍‌ଙ୍କ ସୁଚିନ୍ତିତ ମତାମତକୁ ଭାରତ ସରକାର ଗ୍ରହଣ କଲେ । ୧୯୬୭ ମସିହାରେ ଭାରତବର୍ଷର ସବୁ ବିଶ୍ୱବିଦ୍ୟାଳୟର କୁଳପତିମାନଙ୍କର ସମ୍ମିଳନୀରେ ଶିକ୍ଷା କମିଶନ୍‌ଙ୍କ ସୁପାରିଶ ଉପରେ ଆଲୋଚନା ହୋଇ ଏହାର ମୂଳ ନୀତିକୁ ଗ୍ରହଣ କରିବାକୁ ସ୍ୱୀକୃତି ପ୍ରଦାନ କରାଗଲା । ୧୯୬୮ ମସିହା ଜାନୁଆରୀ ୧୮ ତାରିଖ ଦିନ ଭାରତ ପାର୍ଲିମେଣ୍ଟରେ କେନ୍ଦ୍ର ସରକାର ଜାତୀୟ ଶିକ୍ଷାନୀତି ଉପସ୍ଥାପିତ କଲେ । ଏହା

ସର୍ବସମ୍ମତିକ୍ରମେ ଗୃହୀତ ହେଲା । କଲେଜ ଓ ବିଶ୍ୱବିଦ୍ୟାଳୟ ସ୍ତରରେ ପାଠ୍ୟପୁସ୍ତକ ପ୍ରଣୟନ କରିବା ପାଇଁ କେନ୍ଦ୍ର ସରକାର ସବୁ ପ୍ରଦେଶକୁ ଆର୍ଥିକ ସାହାଯ୍ୟ ଦେବାକୁ ଘୋଷଣା କଲେ । ଏହି କାର୍ଯ୍ୟକ୍ରମର ଏକ ଅଙ୍ଗବିଶେଷ ହେଉଛି ୧୯୭୦ ମସିହା ମାର୍ଚ୍ଚ ୧୧ ତାରିଖ ଦିନ ଆମ ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥାର ପ୍ରତିଷ୍ଠା । ଅଦ୍ୟାବଧି ଆମେ ଅନେକଗୁଡ଼ିଏ ଉପାଦେୟ ପାଠ୍ୟପୁସ୍ତକ ପ୍ରକାଶ କରିସାରିଲୁଣି । କଲେଜରେ ଆଞ୍ଚଳିକ ଭାଷା ମାଧ୍ୟମରେ ଅଧ୍ୟାପକମାନେ ଯେତେ ଶୀଘ୍ର ଶିକ୍ଷା ଦେବେ ଓ ଛାତ୍ରମାନେ ଆଞ୍ଚଳିକ ଭାଷାରେ ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ସେମାନଙ୍କର ଉତ୍ତର ପ୍ରଦାନ କରିବେ ସେତେ ଶୀଘ୍ର କେନ୍ଦ୍ର ସରକାରଙ୍କ ଘୋଷିତ ନୀତି ପ୍ରକୃତରେ କାର୍ଯ୍ୟକାରୀ ହେବ ଓ ଆମର ବହୁ ଅର୍ଥ ଓ ଶ୍ରମ ବ୍ୟୟରେ ପ୍ରଣୀତ ଏହି କଲେଜ ପାଠ୍ୟପୁସ୍ତକ ସମୂହର ସଦୁପଯୋଗ ହେବ ।

ଆଲୋଚ୍ୟ ପୁସ୍ତକ 'ଶିଶୁ ମନୋବିଜ୍ଞାନ'ଟିକୁ ଲେଖିଛନ୍ତି ରେଭେନ୍ସା ମହାବିଦ୍ୟାଳୟ ମନସ୍ତତ୍ତ୍ୱ ବିଭାଗର ବିଭାଗମୁଖ୍ୟ ଡକ୍ଟର ଗିରିଶବାଳା ମହାନ୍ତି । ଏହାକୁ ସମୀକ୍ଷା କରିଛନ୍ତି ସ୍ୱନାମଧନ୍ୟ ଅଧ୍ୟାପକ ତଥା ଉତ୍କଳ ବିଶ୍ୱବିଦ୍ୟାଳୟସ୍ଥ ମନସ୍ତତ୍ତ୍ୱ ବିଭାଗର ବିଭାଗମୁଖ୍ୟ ଡକ୍ଟର ରାଧାନାଥ ରଥ । ଏହାର ଭାଷା ସଂଶୋଧନ କରିଛନ୍ତି ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥାର ଭାଷା ସଂଶୋଧିକା ଅଧ୍ୟାପିକା ଶ୍ରୀମତୀ ହରପ୍ରିୟା ମହାପାତ୍ର । ଏ ସମସ୍ତଙ୍କୁ ମୁଁ ସଂସ୍ଥା ତରଫରୁ ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଛି ।

ଏ, ୧୨୫ ଶହୀଦନଗର
ଭୁବନେଶ୍ୱର-୭
ମାର୍ଚ୍ଚ ୧୧, ୧୯୭୭

ଗଦାଧର ମିଶ୍ର
ନିର୍ଦ୍ଦେଶକ
ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ
ଓ ପ୍ରକାଶନ ସଂସ୍ଥା

# ସୂଚୀପତ୍ର

# ଶିଶୁ ମନୋବିଜ୍ଞାନ

## ପ୍ରଥମ ଅଧ୍ୟାୟ

## ଉପକ୍ରମଣିକା ଓ ଐତିହାସିକ ବିବରଣୀ

ପ୍ରାଚୀନ କାଳରେ ଶିଶୁମାନଙ୍କର ଶାରୀରିକ ଓ ମାନସିକ ବିକାଶ ପ୍ରତି କୌଣସି ସ୍ୱତନ୍ତ୍ର ଦୃଷ୍ଟି ଦିଆଯାଉନଥିଲା । ଶିଶୁର ଶାରୀରିକ, ମାନସିକ ତଥା ନୈତିକ ବିକାଶ ଯେ ଯୁବକ ଓ ପ୍ରୌଢ଼ମାନଙ୍କଠାରୁ ସ୍ୱତନ୍ତ୍ର, ଏହା କେହି ଧାରାବାହିକ ଭାବରେ ଅଧ୍ୟୟନ କରୁନଥିଲେ । ତେଣୁ ଯୁବକ, ବୟସ୍କ ଓ ପ୍ରୌଢ଼ମାନଙ୍କ ପରି ଶିଶୁ ଓ ବାଳକବାଳିକା-ମାନଙ୍କ ପ୍ରତି ସମ ବ୍ୟବହାର ପ୍ରଦର୍ଶନ କରାଯାଉଥିଲା । ସେମାନଙ୍କୁ ଏକାରକମର ଖାଦ୍ୟ ଓ ପୋଷାକ ଦିଆଯାଉଥିଲା । ବିଭିନ୍ନ କ୍ଷେତ୍ରରେ ଯୁବକ ଓ ପ୍ରୌଢ଼ମାନଙ୍କ ସହିତ ସେମାନେ ମିଳିମିଶି କାର୍ଯ୍ୟ କରୁଥିଲେ । ଯୌନ ସମ୍ବନ୍ଧୀୟ ଆଲୋଚନାରୁ ଶିଶୁମାନଙ୍କୁ ଦୂରରେ ରଖାଯାଉନଥିଲା । ମୁଖ୍ୟତଃ ଶିଶୁ-ମନସ୍ତତ୍ତ୍ୱ ଅଧ୍ୟୟନର ଗୁରୁତ୍ୱ କେହି ପ୍ରାୟ ଉପଲବ୍ଧି କରୁନଥିଲେ । ପିତା ମାତା, ଗୁରୁଜନ ଓ ପରିବାର ତଥା ସମାଜର ବୟୋଜ୍ୟେଷ୍ଠ ବ୍ୟକ୍ତିମାନଙ୍କର ଆଦେଶ ଓ ଉପଦେଶ ଅନୁସାରେ କାର୍ଯ୍ୟ କରିବା, ସେମାନଙ୍କର ଆଶା ଆକାଂକ୍ଷା ପୂରଣ କରିବା, ସେମାନଙ୍କୁ ବିଭିନ୍ନ କାର୍ଯ୍ୟରେ ସାହାଯ୍ୟ ସହଯୋଗ କରିବା ଏବଂ ଆଦର୍ଶ ଓ ଉପାଦେୟ ଜୀବନଯାପନ ନିମନ୍ତେ ନିଜକୁ ପ୍ରସ୍ତୁତ କରିବା ଇତ୍ୟାଦି କାର୍ଯ୍ୟ ଶିଶୁମାନଙ୍କର କରିବା ଉଚିତ ବୋଲି ଧରିନିଆଯାଉଥିଲା ।

ବିଦ୍ୟାଳୟରେ ମଧ୍ୟ ବାଳକ, କିଶୋର ଓ ଯୁବକମାନଙ୍କ ନିମନ୍ତେ ସ୍ୱତନ୍ତ୍ର ଶ୍ରେଣୀର ବ୍ୟବସ୍ଥା ନ ଥିଲା । ୧୦ରୁ ୨୦ ବର୍ଷର ବାଳକ ଓ ଯୁବକମାନଙ୍କ ପାଇଁ ଏକ ପ୍ରକାରର ଶିକ୍ଷା ପ୍ରଚଳିତ ଥିଲା । ମୋଟ ଉପରେ ବାଳକ ବୟସ୍କ ବ୍ୟକ୍ତିର ଏକ କ୍ଷୁଦ୍ର ସଂସ୍କରଣ ବା 'Child is a miniature adult' ବୋଲି ବୁଝାଯାଉଥିଲା ।

କିନ୍ତୁ ୧୭୦୦ ଶତାବ୍ଦୀ ବେଳକୁ ଶିଶୁର ଶାରୀରିକ ଓ ମାନସିକ ବିକାଶ, ତା'ର ନୈତିକତା, ମାନସିକ ସ୍ୱାସ୍ଥ୍ୟ ଓ ଶିକ୍ଷା ସମ୍ବନ୍ଧରେ ପିତାମାତା, ଶିକ୍ଷକ, ଭାବୁକ ଓ ଦାର୍ଶନିକମାନଙ୍କ ମନରେ ଆଗ୍ରହ ପ୍ରକାଶ ପାଇଲା । ଶିଶୁ ଯେ ଏକ କ୍ଷୁଦ୍ର ବୟସ୍କ ନୁହେଁ, ତା'ର ବ୍ୟକ୍ତିତ୍ୱର ବିକାଶ ପାଇଁ ଯେ ସ୍ୱତନ୍ତ୍ର ଲାଳନପାଳନ, ଶିକ୍ଷା ଓ ଉନ୍ନତ ପାରିପାର୍ଶ୍ୱିକ ଅବସ୍ଥା ପ୍ରୟୋଜନ ଏ ସମ୍ବନ୍ଧରେ ଜନମତ ପ୍ରକାଶ ପାଇଲା । ବାଲ୍ୟାବସ୍ଥାକୁ ଏକ ସରଳ ଓ ନିରୀହ ଅବସ୍ଥା ବୋଲି କାଳକ୍ରମେ ସମସ୍ତେ ଗ୍ରହଣ କରିନେଲେ । ବିଭିନ୍ନ ବୟସର ଶିଶୁ ଓ ବାଳକ ବାଳିକାମାନଙ୍କୁ ସ୍ୱତନ୍ତ୍ର ଶ୍ରେଣୀରେ ସ୍ୱତନ୍ତ୍ର ବିଷୟମାନ

ଶିକ୍ଷା ଦିଆଯିବାକୁ ବ୍ୟବସ୍ଥା କରାଗଲା । ଶିଶୁ ଯେପରି ଯୌନ ସମ୍ବନ୍ଧୀୟ କୌଣସି ଜ୍ଞାନ ଲାଭ କରିନପାରେ ସେଥିପାଇଁ କଠୋର ଦୃଷ୍ଟି ଦିଆଗଲା । ଶିଶୁର ଶାରୀରିକ ଅଙ୍ଗପ୍ରତ୍ୟଙ୍ଗ ଓ କ୍ରିୟାକଳାପର ବିକାଶ ଯେପରି ଉନ୍ନତ ଓ ବଳିଷ୍ଠ ହୁଏ ସେଥିପ୍ରତି ସମସ୍ତେ ସଚେତନ ହେଲେ । ଶିଶୁର ବ୍ୟକ୍ତିତ୍ୱକୁ ସୁସ୍ଥ ସବଳ ଓ ସ୍ୱାଭାବିକ କରି ଗଢ଼ିବାକୁ ହେଲେ ତା'ର ବାଲ୍ୟାବସ୍ଥାର ବିକାଶ ପ୍ରତି ଯଥେଷ୍ଟ ଯତ୍ନବାନ ହେବା ଉଚିତ ବୋଲି ଧୀରେ ଧୀରେ ପିତାମାତା ହୃଦୟଙ୍ଗମ କଲେ । ଏଣୁ ୧୭°° ଶତାବ୍ଦୀରେ ଶିଶୁ ପାଳନ ଓ ବିକାଶକୁ କେନ୍ଦ୍ରକରି ନାନାବିଧ ମତ ପୁସ୍ତକ ଆକାରରେ ପ୍ରକାଶ ପାଇଲା ।

ଉପଯୁକ୍ତ ସାମାଜିକ ଓ ପାରିବାରିକ ଉପଯୋଜନ ପାଇଁ ଶିଶୁ ପ୍ରତି ପିତା-ମାତାଙ୍କର ବ୍ୟବହାର, ମନୋଭାବ, ଦୃଷ୍ଟିଭଙ୍ଗୀ, ତା'ର ବାଲ୍ୟାବସ୍ଥାର ବିଭିନ୍ନ ଅଭିଜ୍ଞତା ଯେ ବହୁଳ ପରିମାଣରେ ଦାୟୀ, ଏହା ବିନା ଦ୍ୱିଧାରେ ସ୍ୱୀକାର କରାଗଲା । ଶିଶୁର ବିଭିନ୍ନ ମନସ୍ତାତ୍ତ୍ୱିକ ପ୍ରକ୍ରିୟା, ଯଥା—ଚିନ୍ତନ, ବିସ୍ମରଣକ୍ତି, ଆଗ୍ରହ ଓ ଚିନ୍ତାଧାରା ଇତ୍ୟାଦି ସମ୍ବନ୍ଧରେ ପୂର୍ବରୁ ପିତାମାତା ଓ ଶିକ୍ଷକ ଯେଉଁ ମନୋଭାବ ପୋଷଣ କରୁଥିଲେ ସେଥିରେ ମଧ୍ୟ ପରିବର୍ତ୍ତନ ଲକ୍ଷ୍ୟ କରାଗଲା ।

ଏହିପରି ସନ୍ଧିକ୍ଷଣ ମୁହୂର୍ତ୍ତରେ ବିଭିନ୍ନ ଦାର୍ଶନିକ, ବୈଜ୍ଞାନିକ, ଚିନ୍ତାଶୀଳ ବ୍ୟକ୍ତି ଏବଂ ସର୍ବୋପରି ମନସ୍ତାତ୍ତ୍ୱିକମାନେ ଶିଶୁର ବିଭିନ୍ନ ମନସ୍ତାତ୍ତ୍ୱିକ ପ୍ରକ୍ରିୟା, ଯଥା :— ଧ୍ୟାନ, ଶିକ୍ଷଣ, ଆଗ୍ରହ, ଆକାଂକ୍ଷା, କଳ୍ପନାଶକ୍ତି, ରୁଚି ଓ ଅଭିପ୍ରେରଣ ସମ୍ବନ୍ଧରେ ବିଭିନ୍ନ ଅନୁସନ୍ଧାନ ତଥା ପର୍ଯ୍ୟବେକ୍ଷଣ ଚଳାଇ ମନୋବିଜ୍ଞାନ ଇତିହାସରେ ଏକ ନୂତନ ପର୍ଯ୍ୟାୟ ସୃଷ୍ଟି କଲେ । ପ୍ରସିଦ୍ଧ ଦାର୍ଶନିକ ପ୍ଲେଟୋ ମତ ଦେଲେ ଯେ, ପ୍ରତ୍ୟେକ ଶିଶୁର ଜନ୍ମଜାତ ପ୍ରବୃତ୍ତି ତଥା ଲକ୍ଷଣଗୁଡ଼ିକର ପ୍ରଭେଦ ଯୋଗୁଁ, ବ୍ୟକ୍ତିଗତ ଭିନ୍ନତା ଦୃଷ୍ଟି-ଗୋଚର ହୁଏ । ତେଣୁ ପ୍ରତ୍ୟେକ ଶିଶୁର ଜନ୍ମଜାତ ତାରତମ୍ୟ ପ୍ରତି ଦୃଷ୍ଟି ଦେଇ ଶିକ୍ଷଣ ତଥା ପ୍ରଶିକ୍ଷଣ ନୀତି ଧାର୍ଯ୍ୟ ହେବା ବିଧେୟ ।

ଦ୍ୱିତୀୟତଃ, ପ୍ରତ୍ୟେକ ଶିଶୁର ଅନ୍ତର୍ନିହିତ ଶକ୍ତି, ସହଜାତ ପ୍ରବୃତ୍ତି, ସ୍ୱତନ୍ତ୍ର ଯୋଗ୍ୟତା ଓ ସାମର୍ଥ୍ୟ ପ୍ରଭୃତିକୁ ଉଦ୍‌ଘାଟନ କରି ସେଗୁଡ଼ିକର ଉପଯୁକ୍ତ ବିନିଯୋଗ କରିବା ପାଇଁ ଶିଶୁକୁ ସୁଯୋଗ ଓ ଅବସର ଦେବା ବିଧେୟ ବୋଲି ପ୍ଲେଟୋ ଦୃଢ଼ ମତ ପୋଷଣ କରିଥିଲେ । ପ୍ଲେଟୋଙ୍କର ଏହି ମତବାଦ ଶିଶୁର ବିକାଶ ସମ୍ବନ୍ଧରେ ବହୁ ଅମୂଲ୍ୟ ତଥ୍ୟ ଯୋଗାଇପାରିଛି । ଶିଶୁ ମନୋବିଜ୍ଞାନ ଅଧ୍ୟୟନର ଯେତେବେଳେ କୌଣସି ସତ୍ତା ନ ଥିଲା, ଠିକ୍ ସେହି ସମୟରେ ପ୍ଲେଟୋଙ୍କର ଉପରୋକ୍ତ ମତବାଦ ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ ମନେ ହେଲା ।

ପ୍ଲେଟୋଙ୍କ ପରେ କୋମିନିଅସ୍, ଜନ୍‌ଲକ୍, ରୁଷୋ, ପେଷ୍ଟାଲୋଜି ପ୍ରଭୃତି ବିଶିଷ୍ଟ ଦାର୍ଶନିକଗଣ ଶିଶୁର ଆଗ୍ରହ, ରୁଚି, ଅଭିଜ୍ଞତା, ଆବେଗ, ଅନୁଭୂତି, ପ୍ରଶିକ୍ଷଣ,

ଅଭିପ୍ରେରଣ ଓ ବଂଶାନୁସୃତ ଲକ୍ଷଣଗୁଡ଼ିକ ତାର ବ୍ୟକ୍ତିତ୍ୱର ବିକାଶ ପାଇଁ ଯେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ସେ ସମ୍ବନ୍ଧରେ ବିଭିନ୍ନ ଦିଗରୁ ଆଲୋକପାତ କଲେ ।

ଊନବିଂଶ ଶତାବ୍ଦୀରେ ବାଲ ମନୋବିଜ୍ଞାନ ଉପରେ ସେପରି ଉଲ୍ଲେଖଯୋଗ୍ୟ ଅଧ୍ୟୟନ ଓ ଗବେଷଣା କରାଯାଇନଥିଲେ ମଧ୍ୟ ଶିଶୁର ବ୍ୟବହାର ଓ କ୍ରିୟାକଳାପକୁ ପର୍ଯ୍ୟବେକ୍ଷଣ କରି କେତେଗୁଡ଼ିଏ ଶିଶୁ ଆତ୍ମକାହାଣୀ ଲିଖିତ ହୋଇଥିଲା ।

ପ୍ରେୟର (୧୮୭୬) ଇନ୍‌ଫ୍ୟାଣ୍ଟ ଡେଭଲପମେଣ୍ଟ ଏବଂ ଡାର୍‌ୱିନ୍ (୧୮୭୭) ବାୟୋଗ୍ରାଫିକାଲ ମେଥଡ୍ ଅଫ୍ ଇନ୍‌ଫ୍ୟାଣ୍ଟ ପୁସ୍ତକମାନ ରଚନା କରିଥିଲେ । ପ୍ରେୟରଙ୍କ ପୁସ୍ତକ ଶିଶୁ ସମ୍ବନ୍ଧୀୟ ବୈଜ୍ଞାନିକ ଗବେଷଣାର ତଥ୍ୟ ଉପରେ ପର୍ଯ୍ୟବସିତ ହୋଇ ଲିଖିତ ହୋଇଥିଲା ।

ଡାର୍‌ୱିନ୍‌ଙ୍କର ବିବର୍ତ୍ତନବାଦ ଶିଶୁ ବିକାଶର ପର୍ଯ୍ୟାୟମାନଙ୍କ ସମ୍ବନ୍ଧରେ ଯଥେଷ୍ଟ ତଥ୍ୟ ଯୋଗାଇଥିଲା । ବିଶେଷକରି ଡାର୍‌ୱିନ୍‌ଙ୍କର "ଅନ୍ ଦି ଅରିଜିନ୍ ଅଫ୍ ସ୍ପେସିସ୍" ପୁସ୍ତକ ଶିଶୁ ମନୋବିଜ୍ଞାନକୁ ବିଜ୍ଞାନସମ୍ମତ କରିବା ପାଇଁ ନୂତନ ପଦକ୍ଷେପମାନ ଗ୍ରହଣ କଲା । ହଲ୍ ସର୍ବପ୍ରଥମେ ଶିଶୁ ମନୋବିଜ୍ଞାନରେ ପ୍ରଶ୍ନୋଗବଧି ବ୍ୟବହାର କରି ଏହାକୁ ବିଜ୍ଞାନସମ୍ମତ କରିବାକୁ ଚେଷ୍ଟା କରିଥିଲେ । ହଲ୍‌ଙ୍କ ବ୍ୟତୀତ ଗେସେଲ, କୋହଲମ୍ୟାନ ଓ ଟର୍ମାନ ପ୍ରଭୃତି ଶିଶୁର ବିଭିନ୍ନ ଶାରୀରିକ ଓ ମାନସିକ ବିକାଶ ସମ୍ବନ୍ଧରେ ଅଧ୍ୟୟନ କରିବା ନିମନ୍ତେ ଦଳ ଦଳ ଶିଶୁଙ୍କୁ ନେଇ ଧାରାବାହିକ ଗବେଷଣା ଚଳାଇଥିଲେ । ସେମାନଙ୍କ ମତରେ ଶିଶୁକୁ ଉପଯୋକ୍ତ ମାର୍ଗରେ ପରିଚାଳିତ କରିବା ପାଇଁ ତାର ଶାରୀରିକ ଓ ମାନସିକ ବିକାଶର କ୍ରମ ଓ ତାର ସାଧାରଣ କ୍ରିୟାକଳାପ ଓ ବ୍ୟବହାର ଅଧ୍ୟୟନ କରିବା ଆବଶ୍ୟକ ।

ଭିନ୍ନ ଭିନ୍ନ ପରିସ୍ଥିତି ଓ ଉତ୍ପାଦକଦ୍ୱାରା ଶିଶୁର ବିକାଶର କ୍ରମ କିପରି ଭାବରେ ପ୍ରଭାବିତ ହେଉଛି ଏବଂ ଏହାଦ୍ୱାରା ତାର କ୍ରିୟାକଳାପରେ କି ପରିବର୍ତ୍ତନ ଘଟୁଛି, ତାହା ଅଧ୍ୟୟନ କରିବା ପାଇଁ ମନୋବୈଜ୍ଞାନିକଗଣ ବୈଜ୍ଞାନିକ ପ୍ରଣାଳୀର ସାହାଯ୍ୟ ନେଉଥିଲେ । ଏଗୁଡ଼ିକ ମଧ୍ୟରେ ପର୍ଯ୍ୟବେକ୍ଷଣ, ପ୍ରଶ୍ନାବଳୀ, ସାକ୍ଷାତକାର, ପରିସଂଖ୍ୟାନ ଓ ପ୍ରୟୋଗାତ୍ମକ ବିଧିଗୁଡ଼ିକ ବିଶେଷ ଭାବରେ ବ୍ୟବହୃତ କରାଗଲା ।

ସାଧାରଣ ଶିଶୁମାନଙ୍କ ବ୍ୟତୀତ ଉତ୍କୃଷ୍ଟ, ପ୍ରତିଭାଶାଳୀ, ଅସାମାନ୍ୟ ବାଳକବାଳିକା ଏବଂ ମନ୍ଦବୁଦ୍ଧି, ଜଡ଼ମତି, ବିକୃତ ଓ ଅସ୍ୱାଭାବିକ ଶିଶୁମାନଙ୍କର ବୃଦ୍ଧି ଓ ବିକାଶ ସମ୍ବନ୍ଧରେ ନାନା ଅଧ୍ୟୟନମାନ ଆରମ୍ଭ କରାଗଲା । ଏ ସମ୍ପର୍କରେ ମନୋବିଶ୍ଳେଷଣବାଦୀ ବିଶ୍ୱବିଖ୍ୟାତ ମନୋବୈଜ୍ଞାନିକ ଫ୍ରଏଡ଼ ପ୍ରଥମ ସାହସିକ ପଦକ୍ଷେପ ନେଇଥିଲେ । ବ୍ୟକ୍ତିର ଯୌନ ଅଭିଜ୍ଞତା ଓ ଯୌନ ସମ୍ବନ୍ଧୀୟ ବିଭିନ୍ନ ଜ୍ଞାନ ତଥା ଅନୁଭବର ଆରମ୍ଭ ଯୌବନାବସ୍ଥାରେ ନ ହୋଇ ଶୈଶବାବସ୍ଥାର ପ୍ରଥମ ୫ ବର୍ଷରେ ହୁଏ ବୋଲି ଫ୍ରଏଡ୍

ଯେଉଁ ମତ ପ୍ରକାଶ କଲେ ତାହା ସମଗ୍ର ମାନବ ସମାଜର ନୈତିକତାକୁ ଦୋହଲାଇ ଦେବା ସଙ୍ଗେ ସଙ୍ଗେ ସମଗ୍ର ବିଶ୍ୱରେ ବିଶୃଙ୍ଖଳା ସୃଷ୍ଟି କରିଥିଲା । ଶୈଶବାବସ୍ଥାରେ ଶିଶୁକୁ ଯେପରି ଭାବରେ ଲାଳନ ପାଳନ କରାଯାଏ, ତାର ବ୍ୟକ୍ତିତ୍ୱ ସେହିପରି ଭାବରେ ଗଠିତ ହୁଏ । ଏଣୁ ସୁସ୍ଥ ଶାରୀରିକ ଓ ମାନସିକ ବିକାଶ ପାଇଁ ବାଲ୍ୟାବସ୍ଥାରେ ଶିଶୁ ପ୍ରତି ଧ୍ୟାନ ଦେବା ଆବଶ୍ୟକ । ପରବର୍ତ୍ତୀ ଜୀବନର ମାନସିକ ବ୍ୟାଧି ବାଲ୍ୟାବସ୍ଥାର ବିଭିନ୍ନ ଅଭିଜ୍ଞତା ଉପରେ ପର୍ଯ୍ୟବସିତ ବୋଲି ସେ ନାନା ଉଦାହରଣ ଓ ପ୍ରମାଣ ଦେଇ ଦର୍ଶାଇ ଅଛନ୍ତି । ଫ୍ରଏଡ୍‌ଙ୍କର ମନୋ-ବିଶ୍ଳେଷଣ ମତବାଦ ତାଙ୍କର ବୈଜ୍ଞାନିକ ଅଭିଜ୍ଞତା ଓ ଦୂରଦୃଷ୍ଟି ଉପରେ ବହୁଳ ଭାବରେ ପର୍ଯ୍ୟବସିତ ହୋଇଥିଲା । ବାଲ୍ୟାବସ୍ଥାର ଅଭିଜ୍ଞତା ଜୀବନବ୍ୟାପୀ ମାନବର ସମସ୍ତ କ୍ରିୟାକଳାପକୁ ପ୍ରଭାବିତ କରୁଥିବାରୁ ଏ ଅବସ୍ଥାର ଗୁରୁତ୍ୱ ପ୍ରତି ସତର୍କ ଦୃଷ୍ଟି ଦେବାକୁ ପିତା, ମାତା ଓ ଶିକ୍ଷକ ଇତ୍ୟାଦିଙ୍କୁ ଫ୍ରଏଡ୍ ସତର୍କବାଣୀ ଶୁଣାଇ ଅଛନ୍ତି ।

ବୈଜ୍ଞାନିକ ବିନେଟ୍ (୧୯୦୫) ବୁଦ୍ଧି ପରୀକ୍ଷଣ ପାଇଁ କେତେଗୁଡ଼ିଏ ଉପାୟ ଉଦ୍ଭାବନ କଲେ ଏବଂ ଟରମ୍ୟାନ ତାଙ୍କର ସହକର୍ମୀମାନଙ୍କ ସହିତ ଏହି ପରୀକ୍ଷଣଗୁଡ଼ିକୁ ସଂଶୋଧନ କରି ଆମେରିକାର ଶିଶୁମାନଙ୍କ ଉପରେ ପ୍ରୟୋଗ କଲେ ।

ବିଂଶ ଶତାବ୍ଦୀରେ ଶିଶୁ ବିକାଶ ଉପରେ ଧାରାବାହିକ ଗବେଷଣା ଓ ଅଧ୍ୟୟନ କରାଗଲା । ପ୍ରୟୋଗାତ୍ମକ ବିଧିରେ ମଧ୍ୟ ନାନା ପରୀକ୍ଷଣମାନ କରାଯାଇପାରିଛି । ଏହି ସମୟରେ ପାଭଲୋଭଙ୍କର ପ୍ରତିମାନ ପ୍ରଣାଳୀ (Conditioning Method) ଉପରେ ହୋଇଥିବା ପ୍ରାରମ୍ଭିକ ଗବେଷଣାକୁ ଭିତ୍ତି କରି ଓ୍ୱାଟ୍‌ସନ୍ ଶିଶୁମାନଙ୍କର ଶିକ୍ଷଣ, ବିଭିନ୍ନ ଅଭ୍ୟାସ ଓ ଆବେଗର ବିକାଶ ଇତ୍ୟାଦି ଉପରେ ନାନା ସଂପରୀକ୍ଷା କରି ଶିଶୁ ମନୋ-ବିଜ୍ଞାନକୁ ଯଥେଷ୍ଟ ବିସ୍ତାରିତ କରିପାରିଅଛନ୍ତି ।

ଆଧୁନିକ ଯୁଗରେ ନାନା ସ୍ଥାନରେ, ବିଶେଷତଃ ପାଶ୍ଚାତ୍ୟ ଦେଶମାନଙ୍କରେ ଶିଶୁ ବିକାଶ ଗବେଷଣା କେନ୍ଦ୍ର ବା ଶିଶୁ ବିକାଶ ନିଦାନାଗାରମାନ ଖୋଲାଯାଇ ବାଳକର ଶାରୀରିକ ଓ ମାନସିକ ବିକାଶ ସମ୍ବନ୍ଧରେ ବିଭିନ୍ନ ତଥ୍ୟମାନ ଉଦ୍‌ଘାଟନ କରାଯାଉଛି । ଏଥିପାଇଁ ମଧ୍ୟ ଅତି ଆଧୁନିକ ଧରଣର ଯନ୍ତ୍ରପାତିମାନ ବ୍ୟବହାର କରାଯାଉଛି । ୟେଲ୍ ବିଶ୍ୱବିଦ୍ୟାଳୟର ଶିଶୁ ବିକାଶ ନିଦାନାଗାର, କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟର ଶିଶୁ ମଙ୍ଗଳ କେନ୍ଦ୍ର, ଫେଲ୍‌ସ ଗବେଷଣା ସଂସ୍ଥା, ଓହିଓ ବାଳ ଅପରାଧ ଗବେଷଣା କେନ୍ଦ୍ର, ଚିକାଗୋ ଜନ୍ ବେକର ଉପଦେଶନ କେନ୍ଦ୍ର, ବୋଷ୍ଟନ ଗବେଷଣା କେନ୍ଦ୍ର ଇତ୍ୟାଦିମାନଙ୍କରେ ବହୁମୂଲ୍ୟ ଗବେଷଣାମାନ କରାଯାଉଛି । ଏହି ଗବେଷଣାଗାରର ଫଳାଫଳକୁ ଭିତ୍ତି କରି ପିତା ମାତା, ଶିକ୍ଷକ ଓ ବାଳକର ନିକଟତମ ବ୍ୟକ୍ତିଗଣ ଶିଶୁର ବ୍ୟକ୍ତିତ୍ୱ କିପରି ଉପଯୁକ୍ତ ଭାବରେ ସଙ୍ଗଠନ କରିବାକୁ ହେବ ସେ ବିଷୟରେ ଅଧିକରୁ ଅଧିକ ସଚେତନ ହେଉଅଛନ୍ତି ।

ସଂପ୍ରତି ଶିଶୁ ମନୋବିଜ୍ଞାନରେ ଶିଶୁର ବୌଦ୍ଧିକ ଓ ଜ୍ଞାନାତ୍ମକ ବିକାଶ ଉପରେ ଅଧିକ ଗୁରୁତ୍ୱ ଦିଆଯାଉଛି । ପିଆଜେ (Piaget) ଶିଶୁର ଶିକ୍ଷଣ, ବିସ୍ମରଣଶକ୍ତି, ଚିନ୍ତନ

ଓ ମାନସିକ ବିକାଶ ଉପରେ ଅଧିକରୁ ଅଧିକ ଗବେଷଣାମାନ କରି ବର୍ତ୍ତମାନ ଯୁଗରେ ଏହାକୁ ଶିଶୁ ମନୋବିଜ୍ଞାନ ଅଧ୍ୟୟନର କେନ୍ଦ୍ର ବିନ୍ଦୁ ବୋଲି ମତ ବ୍ୟକ୍ତ କରିଅଛନ୍ତି ।

ବିଗତ ୬୦-୭୦ ବର୍ଷ ମଧ୍ୟରେ ଶିଶୁ ମନୋବିଜ୍ଞାନ କ୍ଷେତ୍ରରେ ଯେଉଁ ଦ୍ରୁତ ପରିବର୍ତ୍ତନ ଘଟିଛି, ତାହା ଲକ୍ଷ୍ୟ କଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ । ବିଭିନ୍ନ ଅଧ୍ୟୟନ, ଗବେଷଣା ଓ ପର୍ଯ୍ୟବେକ୍ଷଣଦ୍ୱାରା ଶିଶୁ ମନୋବିଜ୍ଞାନର କ୍ଷେତ୍ରକୁ ବିସ୍ତାରିତ କରାଯାଇପାରିଛି । ଏସବୁ ସତ୍ତ୍ୱେ ଶିଶୁ ମନୋବିଜ୍ଞାନ ଏପର୍ଯ୍ୟନ୍ତ ଶୈଶବାବସ୍ଥାରେ ରହିଛି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଅନୁସନ୍ଧାନ ଓ ଗବେଷଣା ଫଳରେ ଯେଉଁ ନୂତନ ତଥ୍ୟ ଉଦ୍‌ଘାଟିତ ହେଉଛି, ତାହାକୁ ଭିତ୍ତି କରି ପୂର୍ବ ସିଦ୍ଧାନ୍ତ ଓ ତଥ୍ୟଗୁଡ଼ିକୁ ସଂଶୋଧନ କରାଯାଉଛି ।

## ଶିଶୁ ମନୋବିଜ୍ଞାନ ଅଧ୍ୟୟନର ଆବଶ୍ୟକତା

ଗର୍ଭସଞ୍ଚାର ସମୟଠାରୁ ବୟଃ ପ୍ରାପ୍ତି ପର୍ଯ୍ୟନ୍ତ ବ୍ୟକ୍ତିର ଶାରୀରିକ ବିକାଶ, ଶିକ୍ଷଣ, ଭାଷା, ଆବେଗ, ଅଭିପ୍ରେରଣ, ସମ୍ବେଦନ, ପ୍ରତ୍ୟକ୍ଷ ପ୍ରକ୍ରିୟା, ସ୍ମରଣଶକ୍ତି, ଚିନ୍ତନ, ବିଚାର ଶକ୍ତି, ଧୀ ଶକ୍ତି, ସମ୍ବେଗ, ମାନସିକ ସ୍ୱାସ୍ଥ୍ୟ ପ୍ରଭୃତି ବିଭିନ୍ନ ମନସ୍ତାତ୍ତ୍ୱିକ ପ୍ରକ୍ରିୟାଗୁଡ଼ିକର ବିକାଶ ଅଧ୍ୟୟନ କରିବା ଶିଶୁ ମନୋବିଜ୍ଞାନର ପ୍ରଧାନ ଉଦ୍ଦେଶ୍ୟ ଅଟେ ।

ଦ୍ୱିତୀୟତଃ ଉପରୋକ୍ତ ବୃଦ୍ଧି ଓ ବିକାଶ ନିମିତ୍ତ ବିଭିନ୍ନ ନିୟମାବଳୀ ପ୍ରଣୟନ କରି ଶିଶୁର ବ୍ୟବହାର ତଥା ଆଚରଣକୁ ନିୟନ୍ତ୍ରଣ ଓ ପରିବର୍ତ୍ତନ କରିବା ଶିଶୁ ମନୋବିଜ୍ଞାନ ଅଧ୍ୟୟନର ଅନ୍ୟ ଏକ ଉଦ୍ଦେଶ୍ୟ ଅଟେ ।

ତୃତୀୟତଃ ବ୍ୟବହାରର ନିୟନ୍ତ୍ରଣ ଓ ପରିବର୍ତ୍ତନ ନିମିତ୍ତ ନିୟମାବଳୀ ଗଠନ କରିବା ସଙ୍ଗେ ସଙ୍ଗେ ଶିଶୁମାନଙ୍କର ଉଚିତ ବିକାଶ ତଥା ଉପଯୁକ୍ତ କ୍ରିୟାକଳାପ, ସାମାଜିକ ଓ ବ୍ୟକ୍ତିଗତ ଉପଯୋଜନ ନିମିତ୍ତ ଶିଶୁ ମନୋବିଜ୍ଞାନରେ ବିଭିନ୍ନ ଉପଦେଶମାନ ଦିଆଯାଏ ।

ସାଧାରଣ ଓ ସ୍ୱାଭାବିକ କ୍ରିୟାକଳାପ ପ୍ରଦର୍ଶନ କରୁଥିବା ଶିଶୁମାନଙ୍କର ବିକାଶ ଅଧ୍ୟୟନ କରିବା ଶିଶୁ ମନୋବିଜ୍ଞାନର କେବଳ ଲକ୍ଷ୍ୟ ନୁହେଁ; ଅସ୍ୱାଭାବିକ, ଶାରୀରିକ ଓ ମାନସିକ ବିକଳାଙ୍ଗ ଓ ବିକୃତ ସ୍ୱଭାବର ଶିଶୁ, ଅସାମାଜିକ ଶିଶୁ, ଧୀମାନ ଓ ବିଶିଷ୍ଟ ଶିଶୁଙ୍କର ବ୍ୟବହାର ଓ କ୍ରିୟାକଳାପର ଅଧ୍ୟୟନ ମଧ୍ୟ ଶିଶୁ ମନୋବିଜ୍ଞାନର ପରିସର ଅନ୍ତର୍ଭୁକ୍ତ । ଏ ସବୁର ଅଧ୍ୟୟନ ସଙ୍ଗେ ସଙ୍ଗେ ଉପରୋକ୍ତ ଅସ୍ୱାଭାବିକ ଶିଶୁମାନଙ୍କର ଶାରୀରିକ ବିକାଶ ଓ ବ୍ୟବହାର ତଥା ଉପଯୋଜନରେ ଗଠନାତ୍ମକ ଓ ସକାରାତ୍ମକ (Positive) ପରିବର୍ତ୍ତନ ଆଣିବା ପାଇଁ ଶିଶୁ ମନୋବିଜ୍ଞାନ ସବୁ ପ୍ରକାର ଚେଷ୍ଟା କରିଥାଏ ।

ଶିଶୁର ଶାରୀରିକ ଓ ମାନସିକ ବିକାଶର ବିଭିନ୍ନ କ୍ରମ ଅଧ୍ୟୟନ କରିବା ପାଇଁ ବିଭିନ୍ନ ବୟସରେ ତାର ଶାରୀରିକ ଓ ମାନସିକ ବିକାଶକୁ ତନ୍ନ ତନ୍ନ କରି ଅଧ୍ୟୟନ କରିବାକୁ ହେବ । ସାଧାରଣ ଶିଶୁମାନଙ୍କର ବିକାଶର ପ୍ରକୃତରୂପ ଓ ଧାରାକୁ ପର୍ଯ୍ୟବେକ୍ଷଣ କରି କେତେବେଳେ ଏବଂ କେଉଁ କାରଣ ଯୋଗୁଁ ଏହି ଧାରାରେ ଅନ୍ୟ ଶିଶୁମାନଙ୍କର ବିକାଶରେ କ୍ରୁଟି ଓ ବ୍ୟତିକ୍ରମ ହୁଏ ଏବଂ କାହିଁକି ହୁଏ ତାହା ଶିଶୁ ମନୋବିଜ୍ଞାନ ଅଧ୍ୟୟନ କରେ । ଭିନ୍ନ ଭିନ୍ନ ବୟସର ଅନେକଗୁଡ଼ିଏ ଶିଶୁଙ୍କୁ ଅଧ୍ୟୟନ କରି ସେମାନଙ୍କର ବିଭିନ୍ନ ଶାରୀରିକ ଓ ମାନସିକ ବିକାଶର ସାଧାରଣ ମାନ ବା ପ୍ରକୃତରୂପଗୁଡ଼ିକ ଶିଶୁ ମନୋ-ବୈଜ୍ଞାନିକମାନେ ଉପସ୍ଥାପିତ କରନ୍ତି ।

ପ୍ରତ୍ୟେକ ବୟସ ବା ପର୍ଯ୍ୟାୟରେ ବିକାଶର ଏହିପରି କେତେଗୁଡ଼ିଏ ସାଧାରଣ ମାନ (Standard) ଥାଏ । ଏହି ମାନ ସହିତ ନିଜ ଶିଶୁର ବିକାଶକୁ ତୁଳନା କରି ପିତା ମାତା ସେମାନଙ୍କ ଶିଶୁର ଶାରୀରିକ ଓ ମାନସିକ ବିକାଶ ସମ୍ବନ୍ଧରେ ସଠିକ ଜ୍ଞାନ ଲାଭ କରିପାରନ୍ତି । ଯଦି କୌଣସି ଶିଶୁ ବିକାଶର ସାଧାରଣ ମାନଠାରୁ ବହୁତ ପଛରେ ପଡ଼ିଥାଏ, ତାର ବିକାଶ ଯେପରି ତ୍ୱରାନ୍ୱିତ ହୋଇପାରିବ, ସେ ଦିଗରେ ପିତା ମାତା ଡାକ୍ତର ବା ଶିଶୁ ମନସ୍ତତ୍ତ୍ୱବିତ୍ମାନଙ୍କର ପରାମର୍ଶ ନିଅନ୍ତି । ଉଦାହରଣ ସ୍ୱରୂପ, ଦେଢ଼ବର୍ଷ ପର୍ଯ୍ୟନ୍ତ ଯଦି ଶିଶୁର ଦାନ୍ତ ନ ଉଠେ, ଅଠର ମାସ ମଧ୍ୟରେ ଶିଶୁ ଯଦି ନ ଚାଲେ ବା ୨-୩ ବର୍ଷ ପର୍ଯ୍ୟନ୍ତ ଯଦି ତାର କହିବା ଶକ୍ତିର ବିକାଶ ହୁଏ ନାହିଁ ଅଥବା ୮-୧୦ ବର୍ଷ ବୟସରେ ମଧ୍ୟ ଶିଶୁର ସ୍ୱଭାବରେ ଯଦି ଅତ୍ୟଧିକ ଦୋଷତ୍ରୁଟି ଦେଖାଦିଏ ଏବଂ ଏପରି କ୍ଷେତ୍ରରେ କେଉଁ ବୟସରେ ଶିଶୁର ଏହି ବିକାଶଗୁଡ଼ିକ ସାଧାରଣତଃ ହୁଏ, ତାହା ଯଦି ପିତାମାତା ଜାଣିଥିବେ, ତେବେ ସେହି ଅନୁସାରେ ତାଙ୍କର ସନ୍ତାନସନ୍ତତିଙ୍କର ବୃଦ୍ଧି ଓ ବିକାଶକୁ ତୁଳନା କରି ଉଚିତ ପଦକ୍ଷେପ ନେଇପାରିବେ । ଏ ଦୃଷ୍ଟିରୁ ଦେଖିବାକୁ ଗଲେ ପ୍ରତ୍ୟେକ ପିତାମାତାଙ୍କର ଶିଶୁ ମନସ୍ତତ୍ତ୍ୱ ସମ୍ପର୍କରେ ଗଭୀର ଜ୍ଞାନ ରହିବା ଉଚିତ ।

କେଉଁ ବୟସରେ ଶିଶୁର କି କି ପ୍ରକାରର ବିକାଶ ହେବ ଏବଂ କେଉଁ ପର୍ଯ୍ୟାୟରେ ସେ କି କି ପ୍ରକାରର ବ୍ୟବହାର ଦେଖାଇବ, ତାହା ପ୍ରତ୍ୟେକ ପିତାମାତାଙ୍କର ଜାଣିବା ଉଚିତ । ଅନେକ ପିତାମାତା ଓ ଅଭିଭାବକ ଶିଶୁର ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗ ଉପଯୁକ୍ତ ପରିପକ୍ୱତା ଲାଭ କରିବା ପୂର୍ବରୁ ତାକୁ ବିଭିନ୍ନ କାର୍ଯ୍ୟ କରିବାକୁ ବାଧ୍ୟ ବା ଉତ୍ସାହିତ କରି-ଥାଆନ୍ତି ଏବଂ ସେ କାର୍ଯ୍ୟଟି କରିନପାରିଲେ ତା ଉପରେ କ୍ରୋଧାନ୍ୱିତ ହୋଇ ତାକୁ ମାରଧର କରନ୍ତି । କେତେକ ପିତାମାତା ଓ ଗୁରୁଜନ ପିଲାକୁ ୨-୩ ବର୍ଷରୁ ପାଠ ପଢ଼ାଇବାକୁ ଚେଷ୍ଟା କରି ଉପର ଶ୍ରେଣୀରେ ନାମ ଲେଖାଇବାକୁ ପ୍ରୟାସ କରିଥାନ୍ତି । କିନ୍ତୁ ଶିଶୁର ବିଭିନ୍ନ

ଅଙ୍ଗ ପ୍ରତ୍ୟଙ୍ଗ ଓ ମସ୍ତିଷ୍କର ଉପଯୁକ୍ତ ବିକାଶ ହୋଇନଥିବା ବେଳେ ଏପରି ପ୍ରଚେଷ୍ଟା ପ୍ରତ୍ୟେକ ଶିଶୁ ପକ୍ଷରେ କ୍ଷତିକାରକ ହୋଇଥାଏ । ଶିଶୁର ମସ୍ତିଷ୍କ ଯେପର୍ଯ୍ୟନ୍ତ କେତେ-ଗୁଡ଼ିଏ ବିଷୟ ଶିକ୍ଷା କରିବାକୁ ବା ଗ୍ରହଣ କରିବାକୁ ପ୍ରସ୍ତୁତ ହୋଇନପାରିଛି, ପିଲାକୁ ସେହି ବିଷୟଗୁଡ଼ିକ ଶିକ୍ଷା କରିବାକୁ ବାଧ୍ୟ କଲେ ତାର ମସ୍ତିଷ୍କ ଉପରେ ଅଧିକ ଚାପ ପଡ଼େ ଓ ସ୍ୱାଭାବିକ ବିକାଶ ବ୍ୟାହତ ହୁଏ । ଦ୍ୱିତୀୟତଃ କାର୍ଯ୍ୟଟିକୁ ସୁଚାରୁ ରୂପେ ସମ୍ପନ୍ନ କରି ନପାରିଲେ ବା ପାଠଗୁଡ଼ିକୁ ଉପଲବ୍ଧି କରିନପାରିଲେ ପିଲାର ନିଜ ସମ୍ବନ୍ଧରେ ନ୍ୟୂନ ଓ ହତାଶ ଭାବ ଜାତ ହୁଏ ଏବଂ ଆତ୍ମବିଶ୍ୱାସ କମିଯାଏ । କୌଣସି କାର୍ଯ୍ୟରେ ଉତ୍ସାହ ରହେ ନାହିଁ । ନୂଆକରି ଗୋଟିଏ କାର୍ଯ୍ୟ ହାତକୁ ନେବାକୁ ଅଭିଳାଷ ଜାତ ନ ହୋଇ ବରଂ ଭୟ ଜାତ ହୁଏ । ସେହିପରି ଭାବରେ ୬-୭ ମାସରୁ ଶିଶୁକୁ ଚାଲିବାକୁ ଓ କଥା କହିବାକୁ ଶିକ୍ଷା ଦେବା ଏବଂ ଚାଲିନପାରିଲେ ବା କଥା କହିନପାରିଲେ ମାଡ଼ ଦେବା, ଦୁଇବର୍ଷରୁ ପଣିକିଆ ମୁଖସ୍ଥ କରାଇବା ଇତ୍ୟାଦି ଶିଶୁର ବିକାଶ ପକ୍ଷରେ ଯେ ଅତ୍ୟନ୍ତ ହାନିକାରକ, ଏହା ଶିଶୁ ମନୋବିଜ୍ଞାନ ଅଧ୍ୟୟନ କରି ପ୍ରତ୍ୟେକ ପିତାମାତା ବା ଶିକ୍ଷକ ଜାଣିପାରିବେ । ତେଣୁ ଯେଉଁ ସମୟରେ ଶିଶୁ ଯାହା କରିବା କଥା ତାହା ଆଗରୁ ଜାଣିପାରିଲେ ଶିଶୁକୁ ଉପଯୁକ୍ତ ମାର୍ଗରେ ପରିଚାଳିତ କରିବାକୁ ତଥା ଉପଦେଶ ଦେବାକୁ ସୁବିଧା ହୁଏ । ଯେଉଁ ଶିଶୁର ଯେତିକି ଗ୍ରହଣ କରିବାର ଯୋଗ୍ୟତା ବା ଶକ୍ତି ଥିବ, ତାକୁ କେବଳ ସେତିକି ଗ୍ରହଣ କରିବାକୁ ବା ଶିକ୍ଷା କରିବାକୁ ଉତ୍ସାହିତ କରାଯିବା ଉଚିତ । ବାଧ୍ୟ କରି ଶିଶୁଠାରୁ କୌଣସି କାର୍ଯ୍ୟ ହାସଲ କରିବା ଶିଶୁ ପକ୍ଷରେ ଅତ୍ୟନ୍ତ ବିପଜ୍ଜନକ । ଏପରି କରିବା ଦ୍ୱାରା ସେହି କାର୍ଯ୍ୟ ପ୍ରତି ଶିଶୁର ଆଗ୍ରହ ଏବଂ ଉତ୍ସାହ କମିଯିବା ସଙ୍ଗେ ସଙ୍ଗେ ଶିଶୁ ମନରେ ଏକ ମନସ୍ତାତ୍ତ୍ୱିକ ପ୍ରତିକ୍ରିୟା ଦେଖାଦିଏ । ଏହା ଫଳରେ ସେ ସେପରି କାର୍ଯ୍ୟରେ ହାତ ଦେବାକୁ ଡରେ । ପିଲାଟି ଯଦି କୌଣସି କାରଣରୁ ଅଙ୍କରେ ଦୁର୍ବଳ ତାକୁ ବାଧ୍ୟ କରି ବା ମାଡ଼ ଦେଇ ଅଙ୍କ କଷିବାକୁ ଲଗାଇଲେ ଅଙ୍କ ପ୍ରତି ତାର ଅଧିକ ଭୟ ଜାତ ହୁଏ । ଅଙ୍କଖଣ୍ଡିକ ଯେତେ ସହଜ ହେଲେ ମଧ୍ୟ ଆତ୍ମବିଶ୍ୱାସ ଅଭାବରୁ ଅଙ୍କ କଷିବା କଥା ପଡ଼ିବାକ୍ଷଣି ନାନା ବାହାନା ଦେଖାଇ ପିଲା ଅଙ୍କଠାରୁ ଦୂରେଇ ରହିବାକୁ ଚେଷ୍ଟା କରେ । ତେଣୁ ଶିଶୁ ମନୋବିଜ୍ଞାନର ଉଦ୍ଦେଶ୍ୟ ହେଲା ଶିଶୁକୁ କୌଣସି କାର୍ଯ୍ୟ କରିବାକୁ ବାଧ୍ୟ ନ କରି ଉପଯୁକ୍ତ ପରିପକ୍ୱତା ଆସିଗଲେ ତା ମନରେ ଆଗ୍ରହ ଓ ଅଭିପ୍ରେରଣ ଜାତ କରାଇ ସ୍ୱତଃପ୍ରବୃତ୍ତ ଭାବରେ ସେ ଯେପରି କାର୍ଯ୍ୟଟି ସମ୍ପନ୍ନ କରେ, ସେଥିପାଇଁ ସବୁ ପ୍ରକାର ଚେଷ୍ଟା କରିବା । ପ୍ରତ୍ୟେକ ଶିଶୁର ଜନ୍ମଜାତ ପ୍ରବୃତ୍ତି, ଅନ୍ତର୍ନିହିତ ଶକ୍ତି, ଆକାଂକ୍ଷା, ସ୍ୱତନ୍ତ୍ର ଯୋଗ୍ୟତା ଓ ରୁଚିଗୁଡ଼ିକୁ ଭିନ୍ନ ଭିନ୍ନ କରି ବିଶ୍ଳେଷଣ କରି ଜୀବନ ସଂଗ୍ରାମରେ ଅଗ୍ରସର ହେବାପାଇଁ ତାକୁ ଉପଯୁକ୍ତ ବୃତ୍ତିଗତ ଉପଦେଶ ଦେବା ଶିଶୁ ମନୋବିଜ୍ଞାନ ଅଧ୍ୟୟନ କରିବାର ଅନ୍ୟ ଏକ ଲକ୍ଷ୍ୟ ।

ଶିଶୁ ମନୋବିଜ୍ଞାନ ଅଧ୍ୟୟନ କଲେ ସାଧାରଣ ଶିଶୁମାନଙ୍କର ଶାରୀରିକ ଓ ମନ-ସ୍ତାତ୍ତ୍ୱିକ ବିକାଶ ସମ୍ବନ୍ଧରେ ଜ୍ଞାନ ଅର୍ଜନ କରିବା ସଙ୍ଗେ ସଙ୍ଗେ ଅସାମାନ୍ୟ ଓ ସମସ୍ୟାବହୁଳ

ଶିଶୁ, ବିକୃତ ଓ ଅବାଞ୍ଛିତ ତତ୍ତ୍ୱ ସମ୍ପନ୍ନ ଶିଶୁମାନଙ୍କର ଅସ୍ୱାଭାବିକ ବିକାଶର କାରଣ ନିର୍ଣ୍ଣୟ କରି ହୁଏ ଏବଂ ଉପଯୁକ୍ତ ଚିକିତ୍ସା ମଧ୍ୟ କରାଯାଇପାରେ । କୌଣସି ବ୍ୟକ୍ତି ନିଜର ପରିବାର, ସମାଜ ତଥା ପରିବେଶ ସହିତ ଉପଯୋଜନ କରିନପାରୁଥିଲେ ତାହାର ବାଲ୍ୟ ଜୀବନର ଅଭିଜ୍ଞତା ଓ ଘଟଣାବଳୀକୁ ତନ୍ନ ତନ୍ନ କରି ବିଶ୍ଳେଷଣ କରି ଅସମଞ୍ଜନର ପ୍ରକୃତ କାରଣ ଉଦ୍‌ଘାଟନ କରିବା ହେଉଛି ଶିଶୁ ମନୋବୈଜ୍ଞାନିକମାନଙ୍କର ପ୍ରଥମ ଏବଂ ପ୍ରଧାନ କର୍ତ୍ତବ୍ୟ । ବାଳକ ବାଳିକାମାନଙ୍କର ବିଭିନ୍ନ ଅସାମାଜିକ ବ୍ୟବହାର, ଯଥା : ମିଛ କହିବା, ଚୋରି କରିବା, ସାଙ୍ଗସାଥୀ ବା ଭାଇଭଉଣୀମାନଙ୍କ ସହିତ ସଦାସର୍ବଦା କଳହ କରିବା, ସେମାନଙ୍କୁ ମାଡ଼ ଗାଳିଦେବା, ପିତା ମାତାଙ୍କର ଅତ୍ୟଧିକ ଅବାଧ୍ୟ ହେବା ପ୍ରଭୃତିର ପ୍ରକୃତ କାରଣ ଅନୁସନ୍ଧାନ କରିବା ଶିଶୁ ମନୋବିଜ୍ଞାନର ଲକ୍ଷ୍ୟ ଅଟେ । କୌଣସି ଅସାମାଜିକ ବା ଅସଙ୍ଗତ ବ୍ୟବହାରର ପ୍ରକୃତ କାରଣ ଉଦ୍‌ଘାଟନ ନ କରି ପିଲାକୁ ଅଯଥା ଗାଳିଗୁଲଜ କରିବା, ମାଡ଼ ମାରିବା ବା ଧମକ ଦେବା ଯେ ପିତାମାତା ଓ ଗୁରୁଜନମାନଙ୍କର ଚରମ ଅନ୍ୟାୟ ତାହା ଆଧୁନିକ ଶିଶୁ-ମନୋବିଜ୍ଞାନୀମାନେ ସ୍ପଷ୍ଟ ଭାବରେ ଦେଖାଇ ଦେଇଅଛନ୍ତି । ଅନେକ ବାଲ ଅପରାଧ ମୂଳରେ ଯେ ପିତା ମାତାଙ୍କର ସନ୍ତାନ ପ୍ରତି ବ୍ୟବହାର ପ୍ରଚ୍ଛନ୍ନ ଭାବରେ ଦାୟୀ, ତାହା ଅନେକାଂଶରେ ସତ୍ୟ ଅଟେ । ଯେଉଁ ଶିଶୁର ବିଭିନ୍ନ ଆବଶ୍ୟକତା ପରିବାରର ପରିସର ମଧ୍ୟରେ ପୂରଣ ହୋଇ ପାରେନାହିଁ, ଶିଶୁ ନିଜର କୌଣସି ସ୍ୱତନ୍ତ୍ର ଇଚ୍ଛାକୁ ପୂରଣ କରିବାକୁ ପିତାମାତାଙ୍କୁ ଅଳି କଲାବେଳେ ତାକୁ ପ୍ରକୃତ ଅବସ୍ଥା ବୁଝାଇ-ଦିଆନଯାଇ ଯଦି ସର୍ବଦା ତିରସ୍କାର କରାଯାଏ, ଶିଶୁର ହତାଶ ଓ ଅସୁରକ୍ଷିତ ମନ ପରିବାରଠାରୁ ଦୂରେଇଯାଏ ଏବଂ ଅନ୍ୟ କେତେକ ଏହିପରି ହତାଶ ଓ ନିର୍ଯାତିତ ବାଳକ-ମାନଙ୍କ ସହ ମିଶି ସେ ଛୋଟିଏ ଦଳ ଗଠନ କରେ । ଏହି ଦଳର ସଂସ୍ପର୍ଶରେ ଆସି ସେ ନିଜର ବିଭିନ୍ନ ଆବଶ୍ୟକତା ପୂରଣ କରିବାକୁ ଚୋରି ଓ ପକେଟମାରୁ ଇତ୍ୟାଦି କରି ଏକ ଅସାମାଜିକ ବାଳକରେ ପରିଣତ ହୁଏ । ବ୍ୟକ୍ତିଗତ ଭିନ୍ନତା ଦୃଷ୍ଟିରୁ ପରିବାରର ସମସ୍ତ ଶିଶୁକୁ ଏକ ପ୍ରକାରର ବ୍ୟବହାର ନ ଦେଖାଇ, ଏକ ରକମର ପ୍ରଶିକ୍ଷଣ ନ ଦେଇ ସେମାନଙ୍କର ଶକ୍ତି ଓ ଆଗ୍ରହ ତଥା ଆକାଂକ୍ଷା ଅନୁସାରେ ପ୍ରଶିକ୍ଷଣ ଦିଆଯାଏ । କାହାର ସଙ୍ଗୀତ ପାଇଁ ଆଗ୍ରହ ଓ ଶକ୍ତି ଅଛି ତ ଆଉ କାହାର ଚିତ୍ରକଳା ପ୍ରତି, କାହାର ବିଜ୍ଞାନ ପ୍ରତି ଆଗ୍ରହ ଦେଖାଗଲେ ଅନ୍ୟ କାହାର ଗଳ୍ପ, କବିତା ଲେଖିବାର ଯୋଗ୍ୟତା ଅଛି ; କାହାକୁ ବା ମାଟିରେ ବିଭିନ୍ନ ମୂର୍ତ୍ତି ଆଙ୍କିବାକୁ ଭଲ ଲାଗୁଛି । ତେଣୁ ପ୍ରତ୍ୟେକ ଶିଶୁକୁ ତାର ସ୍ୱତନ୍ତ୍ର ଯୋଗ୍ୟତା ଓ ଆଗ୍ରହ ଅନୁଯାୟୀ ସାଧ୍ୟମତେ ଶିକ୍ଷା ଓ ପ୍ରଶିକ୍ଷଣ ଦେବା ଆବଶ୍ୟକ । ଏପରି କଲେ ଦେଶର ଭବିଷ୍ୟତ ନାଗରିକମାନଙ୍କର ଶକ୍ତିର ଉପଯୁକ୍ତ ବିନିଯୋଗ ହୋଇପାରିବ । କୌଣସି ବିଷୟ ଶିକ୍ଷା କରିବାକୁ ଶକ୍ତି ଓ ଯୋଗ୍ୟତା ଥାଇପାରେ ମାତ୍ର ଆଗ୍ରହ ଓ ସୁବିଧା ଅଭାବରୁ ଯୋଗ୍ୟତା ଓ ଶକ୍ତିର ଉପଯୁକ୍ତ ବିକାଶ ହୋଇ ପାରେ ନାହିଁ । ଏପରି କ୍ଷେତ୍ରରେ ବାଳକ ମନରେ କୌଣସି ନିର୍ଦ୍ଦିଷ୍ଟ ଶକ୍ତିର ଉପଯୁକ୍ତ ବିକାଶ ପାଇଁ ଆଗ୍ରହ

ଜାତ କରାଇବା ପିତାମାତାଙ୍କର କର୍ତ୍ତବ୍ୟ ଅଟେ । ପିତା ମାତାଙ୍କର ଏହି କର୍ତ୍ତବ୍ୟ ଶିଶୁପାଇଁ କେତେ ମହତ୍ତ୍ୱପୂର୍ଣ୍ଣ ତାହା ଶିଶୁ ମନୋବିଜ୍ଞାନ ଅଧ୍ୟୟନ କଲେ ସହଜରେ ଅନୁମିତ ହୁଏ ।

ଗୃହର ପରିବେଶ ଓ ଶିଶୁର ବ୍ୟବହାର ମଧ୍ୟରେ କି ସମ୍ବନ୍ଧ ରହିଛି, ତାହା ଶିଶୁ ମନୋବିଜ୍ଞାନ ଅଧ୍ୟୟନ କଲେ ଜଣାଯାଏ । ଯଦି ଗୃହର ପରିବେଶ, ବିଭିନ୍ନ କାର୍ଯ୍ୟ କରିବା ଯଥା : ବିଦ୍ୟାଳୟକୁ ଯାଇ ଶିକ୍ଷା କରିବା, ପିତା ମାତାଙ୍କର ଉପଦେଶ ମାନି ଚଳିବା ଇତ୍ୟାଦି ନିମିତ୍ତ ଯଥେଷ୍ଟ ଅଭିପ୍ରେରଣା ଓ ଆଗ୍ରହ ଶିଶୁ ମନରେ ଜାତ କରାଯାଇନପାରେ, ତେବେ ସମ୍ଭବ ହେଲେ ସେପରି ପରିବେଶକୁ ପରିବର୍ତ୍ତନ କରାଯାଇ ଶିଶୁକୁ ନୂତନ ପରିବେଶରେ ବଢ଼ିବାକୁ ଦିଆଯିବା ଉଚିତ ।

ସ୍ଥୂଳତଃ ବିଭିନ୍ନ ଦୃଷ୍ଟିକୋଣରୁ ଦେଖିବାକୁ ଗଲେ ଶିଶୁର ଶାରୀରିକ, ମାନସିକ, ତଥା ବ୍ୟକ୍ତିତ୍ୱର ବିକାଶକୁ ଉପଯୁକ୍ତ ମାର୍ଗରେ ପରିଚାଳିତ କରିବା ପାଇଁ ପିତା ମାତାଙ୍କୁ ଶିଶୁ ମନୋବିଜ୍ଞାନ ଯଥେଷ୍ଟ ସୂଚନା ଦେଇଥାଏ । ଏ ଦୃଷ୍ଟିରୁ ଶିଶୁ ମନୋବିଜ୍ଞାନର ବ୍ୟାବହାରିକ ଗୁରୁତ୍ୱ ଅପରିହାର୍ଯ୍ୟ ଅଟେ । ଶିଶୁକୁ କିପରି ଭାବରେ ଲାଳନ ପାଳନ କଲେ ତାର ସମସ୍ତ ଅନ୍ତର୍ନିହିତ ଶକ୍ତି ଓ ସ୍ୱତନ୍ତ୍ର ଯୋଗ୍ୟତାଗୁଡ଼ିକର ଇଷ୍ଟତମ ବିକାଶ ହୋଇପାରିବ, ତା'ର ସମସ୍ୟାବହୁଳ ବ୍ୟବହାରର ପ୍ରକୃତ କାରଣ କ'ଣ ହୋଇପାରେ ଏବଂ ଏହାକୁ କିପରି ଭାବରେ ଦୂର କରାଯାଇପାରିବ, ଶିଶୁକୁ କିପରି ଭାବରେ ସାମାଜିକ ଉପଯୋଜନ ପାଇଁ ସକ୍ଷମ କରାଯାଇପାରିବ, ତାର ଆବେଗ, ଚିନ୍ତନ ଓ ବିଚାର ତଥା ସ୍ମରଣ ଶକ୍ତିର କେଉଁ ଉପାୟରେ ଉଚିତ ବିକାଶ କରାଯାଇପାରିବ ଇତ୍ୟାଦି ସମସ୍ୟାଗୁଡ଼ିକର ସମାଧାନ କରିବା ଶିଶୁ ମନୋବିଜ୍ଞାନର ପ୍ରଧାନ ଉଦ୍ଦେଶ୍ୟ ଅଟେ । ଶିଶୁ ମନୋବିଜ୍ଞାନ ଅଧ୍ୟୟନ କରିବାର ଉଦ୍ଦେଶ୍ୟ ସଂକ୍ଷିପ୍ତ ଆକାରରେ ନିମ୍ନରେ ଦିଆଗଲା :-

(୧) 'ଶିଶୁ ବିକାଶ' ଅଧ୍ୟୟନ କଲେ ବ୍ୟକ୍ତିଗତ ଭିନ୍ନତା ଜାଣି ହେବ । ଏହାଫଳରେ ପ୍ରତ୍ୟେକ ବାଳକର ବ୍ୟକ୍ତିତ୍ୱରେ ଥିବା ଅନନ୍ୟସାଧାରଣତା ଓ ତାର ଜୀବନ ପ୍ରତି ଦୃଷ୍ଟିଭଙ୍ଗୀ ତଥା ମନୋଭାବକୁ ଜାଣି ହେବ ।

(୨) 'ଶିଶୁ ବିକାଶ'ର ତତ୍ତ୍ୱ ଓ ନିୟମାବଳୀ ଜାଣିପାରିଲେ ଅନୁବଂଶ, ପରିବେଶ ଓ ବ୍ୟକ୍ତିଗତ ପ୍ରଭାବ ଯୋଗୁଁ ବ୍ୟକ୍ତିଗତ ତଥା ବିକାଶରେ ଯେଉଁସବୁ ପରିବର୍ତ୍ତନ ଘଟେ ତାହା ଲକ୍ଷ୍ୟ କରିହେବ ।

(୩) ଶିଶୁ-ମନୋବିଜ୍ଞାନ ଅଧ୍ୟୟନ କଲେ ପ୍ରତ୍ୟେକ ବ୍ୟକ୍ତିର ବ୍ୟବହାରକୁ ପର୍ଯ୍ୟବେକ୍ଷଣ ତଥା ବ୍ୟାଖ୍ୟା କରିବା ସହଜ ଓ ସୁଗମ ହେବ ।

(୪) 'ଶିଶୁ-ବିକାଶ' ଅଧ୍ୟୟନ ଫଳରେ ଶିକ୍ଷଣ ଓ ଉପଯୋଜନ ପ୍ରକ୍ରିୟାରେ ବାଳକକୁ ଅଧିକ ଉପଯୁକ୍ତ ଓ ଉଚିତ ମାର୍ଗରେ ଉପଦେଶନ ତଥା ନିର୍ଦ୍ଦେଶନା ଦେଇ ହେବ ଏବଂ ଏଥି ନିମିତ୍ତ କେତେଗୁଡ଼ିଏ ପ୍ରାଥମିକ ନିୟମାବଳୀ ମଧ୍ୟ ଗଠନ କରାଯାଇପାରିବ ।

'ଶିଶୁ-ବିକାଶ' ଅଧ୍ୟୟନ କରି କେବଳ କେତେଗୁଡ଼ିଏ ତଥ୍ୟ ଜାଣିବାରେ ଲକ୍ଷ୍ୟ ସୀମିତ ନ ହୋଇ ବାଳକ ବାଳିକାମାନଙ୍କର ବିକାଶକୁ କିପରି ଉପଯୁକ୍ତ ମାର୍ଗରେ ପରିଚାଳିତ କରାଇବାକୁ ହେବ, ସେହି କୌଶଳ ଶିକ୍ଷା କରିବା ସଙ୍ଗେ ସଙ୍ଗେ ଦୂରଦୃଷ୍ଟି ସହିତ ଶିଶୁର ବିଭିନ୍ନ କ୍ରିୟାକଳାପକୁ ନିୟମିତ ପର୍ଯ୍ୟବେକ୍ଷଣ କରାଯିବା ଉଚିତ । କାଳକ୍ରମେ ଏହି ଅଧ୍ୟୟନ ଏବଂ ପର୍ଯ୍ୟବେକ୍ଷଣରୁ ଜାତ ହୋଇଥିବା ଅଭିଜ୍ଞତା ଶିଶୁର ସୁସ୍ଥ ଶାରୀରିକ ଓ ମାନସିକ ବିକାଶ ଦିଗରେ ନିୟୋଜିତ ହୋଇପାରିବ ।

—o—

# ଦ୍ୱିତୀୟ ଅଧ୍ୟାୟ

## ବୃଦ୍ଧି ଓ ବିକାଶ

ସ୍ତ୍ରୀ ଡିମ୍ବକୋଷ ଅଣ୍ଡାଣୁ ଓ ପୁରୁଷ ଡିମ୍ବକୋଷ ଶୁକ୍ରାଣୁର ମିଳନ ଫଳରେ ଅଣ୍ଡାଣୁ ନିଷିକ୍ତ ହେଲେ ଗର୍ଭ ସଞ୍ଚାର ହୁଏ । ଗର୍ଭ ସଞ୍ଚାର ସମୟଠାରୁ ପ୍ରୌଢ଼ାବସ୍ଥା ପର୍ଯ୍ୟନ୍ତ ମାନବର ଅଙ୍ଗ ପ୍ରତ୍ୟଙ୍ଗର ଗଠନ ଓ କ୍ରିୟାକଳାପର ବିକାଶ ଅବିରାମ ଗତିରେ ଚାଲିଥାଏ । ପ୍ରାକ୍ ଜନ୍ମ ଅବସ୍ଥାରେ ଏବଂ ଜନ୍ମ ପରେ ବାଲ୍ୟାବସ୍ଥା ପର୍ଯ୍ୟନ୍ତ ମାନବର ବୃଦ୍ଧି ଓ ବିକାଶର ହାର ଅତ୍ୟନ୍ତ ଦ୍ରୁତ ହୋଇଥାଏ । ପ୍ରାକ୍ ଜନ୍ମ ଅବସ୍ଥାଠାରୁ ପରିପକ୍ୱତା ଲାଭ କରିବା ସମୟ ମଧ୍ୟରେ ଜନ୍ମ ଗୋଟିଏ ଘଟଣା ମାତ୍ର । ବାଲ୍ୟାବସ୍ଥାରେ ବିକାଶର ପ୍ରତିରୂପ ଗଠନ ହୋଇସିବା ପରେ ମଧ୍ୟ ଶାରୀରିକ ଓ ମାନସିକ ଅବସ୍ଥାରେ ପରିବର୍ତ୍ତନ ଘଟେ । କିନ୍ତୁ ଏହି ପରିବର୍ତ୍ତନ ତଥା ବିକାଶର ମାତ୍ରା ଏତେ କମିଯାଏ ଯେ, ତାହା ସହଜରେ ଲକ୍ଷ୍ୟ କରି ହୁଏ ନାହିଁ ।

### ବୃଦ୍ଧି ଓ ବିକାଶ ମଧ୍ୟରେ ପାର୍ଥକ୍ୟ

ବାସ୍ତବ କ୍ଷେତ୍ରରେ ବୃଦ୍ଧି ବିକାଶକୁ ସ୍ୱତନ୍ତ୍ର କରିନପାରିଲେ ମଧ୍ୟ ବୃଦ୍ଧି ଓ ବିକାଶ ପରସ୍ପରଠାରୁ ପୃଥକ୍ । ଏମାନଙ୍କର ସ୍ୱତନ୍ତ୍ର ଅର୍ଥ ରହିଅଛି । ବୃଦ୍ଧି ସାଧାରଣତଃ ପରିମାଣାତ୍ମକ ପରିବର୍ତ୍ତନକୁ ବୁଝାଏ । ଯଥା--ଆକାର ଓ ଗଠନରେ ବୃଦ୍ଧି । ଶିଶୁର ବିଭିନ୍ନ ଅଙ୍ଗ-ପ୍ରତ୍ୟଙ୍ଗର ବୃଦ୍ଧି ହେବା ସଙ୍ଗେ ସଙ୍ଗେ ମସ୍ତିଷ୍କର ବୃଦ୍ଧି ମଧ୍ୟ ଘଟେ । ଏହି ବୃଦ୍ଧି ଫଳରେ ଶିଶୁର ସ୍ମରଣ, ବିଚାର ଓ ଶିକ୍ଷଣ ଶକ୍ତି ପ୍ରଭୃତି ପରିପକ୍ୱତା ଲାଭ କରେ ।

ବିକାଶ ଅନ୍ୟପକ୍ଷରେ ଗୁଣାତ୍ମକ ପରିବର୍ତ୍ତନକୁ ବୁଝାଏ । ମାନବର ବ୍ୟକ୍ତିତ୍ୱରେ ସ୍ୱତନ୍ତ୍ର ବା ବିଶେଷ ପ୍ରକାରର ପରିବର୍ତ୍ତନ ବିକାଶଦ୍ୱାରା ସମ୍ଭବ ହୁଏ । ବିକାଶ ଏକ କ୍ରମିକ ଏବଂ ପ୍ରଗତିଶୀଳ (Progressive) ପରିବର୍ତ୍ତନକୁ ବୁଝାଏ । ଶିଶୁକୁ ପରିପକ୍ୱତା ଆଡ଼କୁ ଅଗ୍ରସର କରାଇବା ପାଇଁ ଶାରୀରିକ ପରିପକ୍ୱତା ସହ ମାନସିକ ପରିପକ୍ୱତା ମଧ୍ୟ ଆବଶ୍ୟକ ଅଟେ । ଏହା ବିକାଶଦ୍ୱାରା ସମ୍ଭବ ହୁଏ ।

ଆଣ୍ଡରସନଙ୍କ ମତରେ ଶରୀରକୁ ଅଧିକ ଲମ୍ବ କରିବା ଓ ଶକ୍ତିରେ ଆଉ ଅଧିକ ଶକ୍ତି ଯୋଗ କରିବା ବିକାଶର ଅର୍ଥ ନୁହେଁ । ଏହା ଅନେକ ଗଠନ ଓ କ୍ରିୟାକୁ ଏକତ୍ରିତ କରିବା ନିମିତ୍ତ ଏକ ଜଟିଳ ପ୍ରକ୍ରିୟା ଅଟେ । ସେ ଆହୁରି କହିଛନ୍ତି ଯେ, ବିକାଶ ଅର୍ଥ ଶରୀରକୁ ବୃଦ୍ଧି କରିବା ବା ଶକ୍ତିକୁ ବଢ଼ାଇବା ନୁହେଁ । ବରଂ ବିକାଶର କାର୍ଯ୍ୟହେଲା ବିଭିନ୍ନ ଗଠନ ପ୍ରଣାଳୀ ଓ କ୍ରିୟାକଳାପର ସହିତ ତଥା ସଂଗଠନ । ଏହି ସହିତ ଯୋଗୁଁ ବିକାଶର

ପରବର୍ତ୍ତୀ ସ୍ଥିତି ତାର ପୂର୍ବବର୍ତ୍ତୀ ସ୍ଥିତି ଉପରେ ନିର୍ଭର କରେ ଏବଂ ଭବିଷ୍ୟତରେ ଯେଉଁ ରୂପାନ୍ତର ବା ପରିବର୍ତ୍ତନ ହେବ ତାକୁ ମଧ୍ୟ ପ୍ରଭାବିତ କରେ । ମୋଟ ଉପରେ ଜୀବନର କଡ଼ା ଭଳି ଏକ ଅବସ୍ଥା, ଅନ୍ୟ ଅବସ୍ଥା ସହିତ ସଂଯୁକ୍ତ ହୋଇଥାଏ ଏବଂ ବିକାଶ ପାଇଁ ପରବର୍ତ୍ତୀ ଅବସ୍ଥା ଉପରେ ସର୍ବଦା ନିର୍ଭର କରେ । ଶାରୀରିକ ଓ ମାନସିକ ବିକାଶ ପାଇଁ ପୂର୍ବ ଅବସ୍ଥା ଉପରେ ନିର୍ଭର କଲେ ମଧ୍ୟ ପ୍ରତ୍ୟେକ ପରବର୍ତ୍ତୀ ଅବସ୍ଥାର ଏକ ସ୍ୱତନ୍ତ୍ର ସ୍ଥିତି ଥାଏ ।

ବୃଦ୍ଧି ଓ ବିକାଶକୁ ତାତ୍ତ୍ୱିକ ଦୃଷ୍ଟିରୁ (theoretically) ପୃଥକ୍ କଲେ ମଧ୍ୟ ବାସ୍ତବ କ୍ଷେତ୍ରରେ ବୃଦ୍ଧି ଓ ବିକାଶ ପରସ୍ପର ସହିତ ଏପରି ଭାବରେ ସଂଲଗ୍ନ ଓ ପରସ୍ପର ଉପରେ ଏପରି ନିର୍ଭରଶୀଳ ଯେ ଏକ ବିନା ଅନ୍ୟର ସ୍ଥିତି ଅସମ୍ଭବ । ମାନବର ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗ ଓ ମନସ୍ତାତ୍ତ୍ୱିକ କ୍ରିୟାକଳାପର ପରିପକ୍ୱତା ପାଇଁ ବୃଦ୍ଧି ଓ ବିକାଶ ଉଭୟଙ୍କର ଅବଦାନ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଅଟେ ।

## ବିକାଶର ନିୟମାବଳୀ

ଶିଶୁର ଶାରୀରିକ ଓ ମାନସିକ ବିକାଶ ବିଶୃଙ୍ଖଳ ଭାବରେ ହୁଏ ନାହିଁ । ଫଳରେ ଏକ ବୟସର ସମସ୍ତ ସାଧାରଣ ଶିଶୁଙ୍କର ଶାରୀରିକ ଓ ମାନସିକ ବିକାଶ ସମ୍ବନ୍ଧରେ ଅନୁମାନ କରିହୁଏ ।

(୧) ଆକାରରେ ପରିବର୍ତ୍ତନ— ବୟସ ବଢ଼ିବା ସଙ୍ଗେ ସଙ୍ଗେ ଶିଶୁର ଓଜନ, ଉଚ୍ଚତା ଓ ଚଉଡ଼ା ଇତ୍ୟାଦି ବୃଦ୍ଧି ଲାଭ କରିଥାଏ ।

ସେହିପରି ଶାରୀରିକ ଗଠନ ଅନ୍ତଃ ଅଙ୍ଗ ପ୍ରତ୍ୟଙ୍ଗର ଆକାରରେ ମଧ୍ୟ ପରିବର୍ତ୍ତନ ହୁଏ । ହାତ, ଗୋଡ଼, କାନ୍ଧ, ଗ୍ରୀବା, ହୃତ୍ପିଣ୍ଡ, ଫୁସଫୁସ୍, ଅନ୍ତ୍ରନଳୀ, ଯକୃତ, ମୂତ୍ରାଶୟ ପ୍ରଭୃତିର ବୃଦ୍ଧି ଓ ବିକାଶ ଘଟେ । ବର୍ଷକୁ ବର୍ଷ ଶିଶୁର ଶିକ୍ଷଣ ; ପ୍ରତ୍ୟକ୍ଷ ପ୍ରକ୍ରିୟା, ସମ୍ବେଦନ, ଚିନ୍ତନ, ବିଚାର, ସୃଜନ, କଳ୍ପନା ଓ ଧୀଶକ୍ତି ଧୀରେ ଧୀରେ ବିକାଶ ଲାଭ କରେ ।

(୨) ଅନୁପାତରେ ପରିବର୍ତ୍ତନ—ପୂର୍ବକାଳରେ ଶିଶୁ ଓ ବୟସ୍କମାନଙ୍କ ମଧ୍ୟରେ କୌଣସି ପ୍ରଭେଦ ଲକ୍ଷ୍ୟକରାନଯାଇ ଶିଶୁକୁ ଏକ କ୍ଷୁଦ୍ର ବୟସ୍କ ବୋଲି ବିଚାର କରାଯାଉଥିଲା । କିନ୍ତୁ କାଳକ୍ରମେ ସର୍ବସାଧାରଣ ହୃଦୟଙ୍ଗମ କଲେ ଯେ, ଶିଶୁର ଶରୀର ଓ ମନ ବୟସ୍କର ଶରୀର ଓ ମନଠାରୁ ସଂପୂର୍ଣ୍ଣ ପୃଥକ୍ ।

ପୁନଶ୍ଚ ବାଳକ ଓ ବାଳିକାମାନଙ୍କର ଅଙ୍ଗ ପ୍ରତ୍ୟଙ୍ଗର ଅନୁପାତ ମଧ୍ୟରେ ଗୁରୁତ୍ୱପୂର୍ଣ୍ଣ ପାର୍ଥକ୍ୟ ରହିଛି । ବିଭିନ୍ନ ଶାରୀରିକ ଅଙ୍ଗପ୍ରତ୍ୟଙ୍ଗ ଯଥା—ମୁଣ୍ଡ, ଗଣ୍ଡି, ଗ୍ରୀବ, ହାତ-ଗୋଡ, ଜଙ୍ଘ, କାନ୍ଧ ପ୍ରଭୃତିର ଅନୁପାତରେ ପରିବର୍ତ୍ତନ ହେଲାପରି ମାନସିକ ବିକାଶର ଅନୁପାତରେ ମଧ୍ୟ ପରିବର୍ତ୍ତନ ଘଟେ । ବାଲ୍ୟାବସ୍ଥାରେ ବାଳକ ଯେଉଁ ଉଦ୍ଭଟ କଳ୍ପନା ଓ ଦିବାସ୍ୱପ୍ନ ମଧ୍ୟରେ ନିଜକୁ ବୁଡ଼ାଇ ରଖିଥାଏ, କାଳକ୍ରମେ ସେହି ଦିବାସ୍ୱପ୍ନ ଓ ଅବାସ୍ତବ କଳ୍ପନା ବାସ୍ତବତା ଆଡ଼କୁ ଗତିକରେ ଏବଂ ଶିଶୁ ରଚନା, ଯୋଜନା ଓ ନୂତନ ନୂତନ ସୃଜନରେ ନିଜର ଚିନ୍ତନ ତଥା କଳ୍ପନାକୁ ନିୟୋଜିତ କରେ । ବାଳକର ଆଗ୍ରହ, ଆକାଂକ୍ଷା ଅଭିଳାଷ ଓ ଧ୍ୟାନରେ ମଧ୍ୟ ପରିବର୍ତ୍ତନ ଦେଖାଦିଏ । ପ୍ରାରମ୍ଭରେ ଆତ୍ମକେନ୍ଦ୍ରିକ ମନୋଭାବ ଯୋଗୁଁ ବାଳକର ଆଗ୍ରହ ନିଜ ଉପରେ ଏବଂ ନିଜର ଜିନିଷପତ୍ର ଉପରେ କେନ୍ଦ୍ରିତ ହୋଇଥାଏ । ଅର୍ଥାତ୍, ବାଳକ ତାର ଖେଳନା, କଣ୍ଢେଇ, ଖାତା, ବହିପତ୍ର, କଲମ, ପେନ୍‌ସିଲ, ଜାମାପଟା ଓ ନିଜେ ସଂଗ୍ରହ କରିଥିବା ଜିନିଷପତ୍ର ଇତ୍ୟାଦି ଉପରେ ଅଧିକ ଧ୍ୟାନ ଦିଏ । ଅତି ସାମାନ୍ୟ ପଦାର୍ଥଟିଏ ହେଲେ ମଧ୍ୟ ଯଦି ସେଥିରୁ କେହିକିଛି ନେଇଯାଏ ବା କିଛି ହଜିଯାଏ, ତେବେ ତାର କ୍ରୋଧ ଓ ଦୁଃଖର ସୀମା ରହେନାହିଁ । ତା ପ୍ରତି ଯଦି କେହି ବିଶେଷ ଧ୍ୟାନ ନ ଦିଅନ୍ତି ସେ କାନ୍ଦି କାନ୍ଦି ଗଡ଼ିଯାଏ । କିନ୍ତୁ ବୟସ, ଶରୀର ଓ ମନର ବୃଦ୍ଧି ଓ ବିକାଶ ସଙ୍ଗେ ସଙ୍ଗେ ବାଳକର ଆଗ୍ରହ ନିଜ ଉପରୁ ଓ ନିଜର ବସ୍ତୁମାନଙ୍କଠାରୁ ସାଙ୍ଗସାଥୀ, ପଡ଼ୋଶୀ, ଭାଇଭଉଣୀ ଓ ଦଳର ସଭ୍ୟମାନଙ୍କର କାର୍ଯ୍ୟକଳାପ ଉପରେ କେନ୍ଦ୍ରିତ ହୁଏ । ଶେଷରେ ଯୌବନାବସ୍ଥାରେ ନିଜକୁ ପରିଷ୍କାରପରିଚ୍ଛନ୍ନ ଓ ରୁଚିକର ଭାବରେ ସଜାଇ ବିପରୀତ ଲିଙ୍ଗର ଧ୍ୟାନ ଆକର୍ଷଣ କରିବାରେ ଆଗ୍ରହ ସୀମିତ ହୁଏ ।

(୩) ପୁରାତନ ଅଙ୍ଗପ୍ରତ୍ୟଙ୍ଗଗୁଡ଼ିକର ଲୋପ—ଶୈଶବାବସ୍ଥାରେ ଯେଉଁ ଥାଇମସ୍ ଗ୍ରନ୍ଥି ଦେଖାଦିଏ, ବୟସର ବୃଦ୍ଧି ସଙ୍ଗେ ସଙ୍ଗେ, ଧୀରେ ଧୀରେ ତାହା ନିଶ୍ଚିହ୍ନ ହୋଇଯାଏ । ସେହିପରି ମସ୍ତିଷ୍କର ପାଦଦେଶରେ ଅବସ୍ଥିତ ପିନିଆଲ ଗ୍ରନ୍ଥି, ବାବିନସ୍କି ଓ ଡାରୱିନିଆନ୍ ପ୍ରତିବର୍ତ୍ତି, ପେଟେଇବା, ଗୁରୁଣ୍ଡିବା ଏବଂ ଶୈଶବାବସ୍ଥାର କେଶ ଓ ଦନ୍ତ ସମୂହ କାଳକ୍ରମେ ଲୋପ ପାଇଯାଏ । ମାନସିକ ବିକାଶ କ୍ଷେତ୍ରରେ ସେହିପରି କେତେଗୁଡ଼ିଏ ଲକ୍ଷଣ ମଧ୍ୟ ଆସ୍ତେ ଆସ୍ତେ ଦୂରୀଭୂତ ହୋଇଯାଏ । ଯଥା—ଅସ୍ପଷ୍ଟ ଭାଷା (Babbling), ବାଲ୍ୟ ଭାଷା, ଭଲ ଭାବରେ ନଭାବି ନ ଚିନ୍ତି ହଠାତ୍ କିଛି କହିଦେବା ବା କରିବାକୁ ଆଗଭର ହେବା, ହଠାତ୍ ଆବେଗକୁ ପ୍ରକାଶ କରିଦେବା ଅଥବା କ୍ଷଣକ ମଧ୍ୟରେ କ୍ରୋଧାନ୍ୱିତ ହୋଇଯିବା ବା କ୍ରନ୍ଦନ କରିବା ଇତ୍ୟାଦି ଆସ୍ତେ ଆସ୍ତେ କମି ଆସେ ।

(୪) ନୂତନ ଅଙ୍ଗପ୍ରତ୍ୟଙ୍ଗର ସୂତ୍ରପାତ—ପାରିପାର୍ଶ୍ୱିକ ଅବସ୍ଥାର ବିଭିନ୍ନ ଉତ୍ପାଦକଗୁଡ଼ିକର ସଂସ୍ପର୍ଶରେ ଆସିବାଦ୍ୱାରା ଏବଂ ଶିକ୍ଷଣ ଓ ପ୍ରଶିକ୍ଷଣ ଯୋଗୁଁ କେତେକ

ମାନସିକ ଲକ୍ଷଣ ଦୃଷ୍ଟିଗୋଚର ହୁଏ । ଏତଦ୍‌ବ୍ୟତୀତ ଜନ୍ମ ସମୟରେ ସମ୍ପୂର୍ଣ୍ଣ ପ୍ରକାଶ ପାଇ ନଥିବା କେତେକ ଅଙ୍ଗ ପ୍ରତ୍ୟଙ୍ଗ ମଧ୍ୟ ବିକଶିତ ହୁଏ । ଯଥା – ପ୍ରଥମ ଓ ଦ୍ୱିତୀୟ ଦନ୍ତ, ଯୌନ ସମ୍ବନ୍ଧୀୟ ପ୍ରାଥମିକ ଓ ମାଧ୍ୟମିକ ଲକ୍ଷଣ ଇତ୍ୟାଦି ଦେଖାଯାଏ । ମାନସିକ ଲକ୍ଷଣ–ମାନଙ୍କ ମଧ୍ୟରେ କୌତୂହଳ, ଯୌନ ଲିପ୍‌ସା, ଧର୍ମବିଶ୍ୱାସ, ଜ୍ଞାନ, ନୈତିକ ମାନ, ବିଭିନ୍ନ ଭାଷା ଶିକ୍ଷା କରିବାର ସ୍ପୃହା ଓ ଆଗ୍ରହ ଇତ୍ୟାଦିର ବିକାଶ ଘଟେ । କେତେକ ପୁରାତନ ଶାରୀରିକ ଓ ମାନସିକ ଲକ୍ଷଣ ନଷ୍ଟ ହେବା ସଙ୍ଗେ ସଙ୍ଗେ କେତେକ ନୂତନ ଲକ୍ଷଣ ଦେଖାଦିଏ । ଏହି କାର୍ଯ୍ୟ ଏକ ସଙ୍ଗରେ ସମ୍ପନ୍ନ ହୁଏ ।

## ବୃଦ୍ଧି ଓ ବିକାଶକୁ ପ୍ରଭାବିତ କରୁଥିବା ଉପାଦାନଗଣ

ବହୁ ଅଧ୍ୟୟନ ଓ ଗବେଷଣାର ଫଳାଫଳରୁ ଜଣାଯାଏ ଯେ ମାନବର ବୃଦ୍ଧି ଓ ବିକାଶ ତାର ଅନୁବଂଶ ଓ ପରିବେଶର ଉପାଦାନମାନଙ୍କଦ୍ୱାରା ପ୍ରଭାବିତ ଓ ନିୟନ୍ତ୍ରିତ ହୁଏ । ଅନୁବଂଶ ଓ ପରିବେଶ ମାନବର ବୃଦ୍ଧି ଓ ବିକାଶରେ ଯେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରନ୍ତି ଏଥିରେ ସନ୍ଦେହର ଅବକାଶ ନାହିଁ ।

ପରିବେଷ୍ଟନୀ ଓ ପାରିପାର୍ଶ୍ୱିକ ଅବସ୍ଥାକୁ ସମାନ ରଖି ଦୁଇଜଣଙ୍କର ବ୍ୟକ୍ତିତ୍ୱରେ ଭିନ୍ନତା ଲକ୍ଷ୍ୟ କରାଗଲେ ତାହା ଅନୁବଂଶର ପ୍ରଭାବର ଫଳାଫଳ ବୋଲି କୁହାଯାଏ । ବ୍ୟକ୍ତିତ୍ୱରେ ଏହି ପ୍ରକାରର ପାର୍ଥକ୍ୟ ଉଭୟଙ୍କର ଜନନକୋଷିକା ଓ ଜନମିକାମାନଙ୍କରେ ଭିନ୍ନତା ଯୋଗୁଁ ସମ୍ଭବ ହୋଇଥାଏ । ପ୍ରତ୍ୟେକ ଶୁକ୍ରାଣୁ ଓ ଅଣ୍ଡାଣୁ ମଧ୍ୟରେ ଜନନକୋଷିକା ରହିଥାନ୍ତି । ଏହା ଏକରକମର ତରଳ ରାସାୟନିକ ପଦାର୍ଥରେ ଗଠିତ ଏବଂ ଏଥିରେ ଥିବା ଜନମିକାମାନଙ୍କ ମଧ୍ୟରେ ପିତାମାତା ଓ ପୂର୍ବପୁରୁଷମାନଙ୍କର ଲକ୍ଷଣମାନ ରହିଥାଏ । ତେଣୁ ଜନମିକାକୁ ଅନୁବଂଶର ବାହକ ବୋଲି କୁହାଯାଏ । ଏହି ଜନମିକାମାନଙ୍କ ଦ୍ୱାରା ପିତାମାତା ଓ ପୂର୍ବପୁରୁଷମାନଙ୍କର ଲକ୍ଷଣାବଳୀ ଶିଶୁ ନିକଟକୁ ପ୍ରେରିତ ହୁଏ । ବିଶେଷତଃ ଶରୀରର ଆକାର ଓ ଗଠନ ପ୍ରଣାଳୀ, ନାକର ଆକାର, ଉଚ୍ଚତା, ଚର୍ମର ବର୍ଣ୍ଣ, ଧୀଶକ୍ତି, କେତେକ ସ୍ୱତନ୍ତ୍ର ଓ ବିଶେଷ ପ୍ରକାରର ଯୋଗ୍ୟତା, ଯଥା : ସଙ୍ଗୀତ ଗାନ କରିବା ପାଇଁ ଉପଯୁକ୍ତ କଣ୍ଠ, ବିଭିନ୍ନ ଯାନ୍ତ୍ରିକ ଯୋଗ୍ୟତା ଇତ୍ୟାଦି ବଂଶାନୁସୃତ ଲକ୍ଷଣ ଅଟେ । ଏହି ଲକ୍ଷଣଗୁଡ଼ିକର ଉପଯୁକ୍ତ ବିକାଶ, ଜନ୍ମପୂର୍ବ ଓ ଜନ୍ମପର ପରିବେଶର ପ୍ରକୃତି ଉପରେ ନିର୍ଭର କରେ । ବିଭିନ୍ନ ଅର୍ଜିତ ଲକ୍ଷଣ, ଯଥା : ସାଧୁତା, ସତ୍ୟବାଦିତା, ହିଂସ୍ର ଅଥବା ନମ୍ର, ବିନୟୀ ସ୍ୱଭାବ, ପ୍ରଭାବୀ ବା ଅପ୍ରଭାବୀ ମନୋଭାବ, ସାମାଜିକତା ବା ଅସାମାଜିକତା ଇତ୍ୟାଦି ବିଶେଷ ଭାବରେ ପରିବେଶ ସମ୍ଭୂତ ହେଲେ ମଧ୍ୟ ଅନୁବଂଶ ଓ ପରିବେଶର ପାରସ୍ପରିକ ପ୍ରକ୍ରିୟାର ବିକାଶ ଉପରେ ଏହାର ବିକାଶ ନିର୍ଭର କରେ । କିନ୍ତୁ କେଉଁ ଉପାଦାନର ପ୍ରଭାବ ବିକାଶ ଉପରେ କେତେ ଅଧିକ ତାହା ସଠିକ୍ ଭାବରେ କହିବା ସମ୍ଭବ ନୁହେଁ । ମାନବର ବିକାଶକୁ ପ୍ରଭାବିତ କରୁଥିବା କେତେଗୁଡ଼ିଏ ଉପାଦାନ ନିମ୍ନରେ ଦିଆଗଲା ।

ଖାଦ୍ୟ—ଗର୍ଭ ସଞ୍ଚାର ହେଲା ପରେ ଭ୍ରୂଣ ଜରାୟୁରେ ଅବସ୍ଥାପିତ ହୋଇ ମାତାଠାରୁ ରକ୍ତ ଗ୍ରହଣ କରି ପରଜୀବୀ ଭାବରେ ବଞ୍ଚିରହେ ଏବଂ ଦ୍ରୁତ ଗତିରେ ବିକାଶ ଲାଭ କରେ । ଡିମ୍ବାବସ୍ଥାରେ ଏହା ମାତାଠାରୁ କୌଣସି ଖାଦ୍ୟ ପଦାର୍ଥ ନ ପାଇ ନିଜର ଖାଦ୍ୟ ଉପରେ ନିର୍ଭର କରୁଥିବାରୁ ଏହି ଅବସ୍ଥାରେ ଡିମ୍ବର କୌଣସି ବୃଦ୍ଧି ବା ବିକାଶ ହୁଏ ନାହିଁ । କିନ୍ତୁ ଭ୍ରୂଣାବସ୍ଥାଠାରୁ ଜନ୍ମ ସମୟ ପର୍ଯ୍ୟନ୍ତ ସନ୍ତାନ ନିଜର ବୃଦ୍ଧି ଓ ବିକାଶ ପାଇଁ ଗର୍ଭନାଳୀ ମାଧ୍ୟମରେ ମାତାଠାରୁ ରକ୍ତ ଓ ଖାଦ୍ୟ ପଦାର୍ଥ ସଂଗ୍ରହ କରେ । ତେଣୁ ଗର୍ଭାବସ୍ଥାରେ ମାତା ଉଭୟ ସନ୍ତାନଓ ନିଜ ପାଇଁ ଉପଯୁକ୍ତ ପୁଷ୍ଟିସାର ଓ ଜୀବନୀକାପୂର୍ଣ୍ଣ ଖାଦ୍ୟ ଖାଇବା ଆବଶ୍ୟକ । ଅନେକ ଗର୍ଭବତୀ ମାତା ଖାଦ୍ୟାଭାବରୁ ଅତି ଦୁର୍ବଳ ଶିଶୁ ପ୍ରସବ କରିବା ସଙ୍ଗେ ସଙ୍ଗେ ନିଜେ ମଧ୍ୟ ଅତିଶୟ ଦୁର୍ବଳ ହୋଇ ନାନା ରୋଗରେ ଆକ୍ରାନ୍ତ ହୁଅନ୍ତି । କେହି କେହି ରକ୍ତ ଅଭାବରୁ ମୃତ୍ୟୁ ବରଣ କରନ୍ତି । ଆଉ କେତେକ ନିଜର ଦୁର୍ବଳ ସ୍ୱାସ୍ଥ୍ୟ ଯୋଗୁଁ ନବଜାତ ଶିଶୁକୁ ଦୁଗ୍ଧ ଯୋଗାଇପାରନ୍ତି ନାହିଁ । ଫଳରେ ଶିଶୁକୁ ବାହାରର ଦୁଗ୍ଧ ଉପରେ ନିର୍ଭର କରି ବୃଦ୍ଧି ଲାଭ କରିବାକୁ ପଡ଼େ । କେତେକ କ୍ଷେତ୍ରରେ ଏହି ଦୁଗ୍ଧ ଶିଶୁ ପାଇଁ ଅନୁପଯୁକ୍ତ ହୋଇଥିବାରୁ ଶିଶୁ ବିଭିନ୍ନ ପ୍ରକାରର ଝାଡ଼ା ରୋଗରେ ଆକ୍ରାନ୍ତ ହୁଏ । ପ୍ରାକ୍ ଜନ୍ମ ଅବସ୍ଥାରେ ଉପଯୁକ୍ତ ଖାଦ୍ୟ ନ ମିଳିଲେ ଶିଶୁର ଅଙ୍ଗ ପ୍ରତ୍ୟଙ୍ଗର ଆବଶ୍ୟକୀୟ ଗଠନ ହୋଇପାରେ ନାହିଁ ।

ଗର୍ଭବତୀ ମାତା ପୁଷ୍ଟିକର ଖାଦ୍ୟ ଖାଇବା ଉଚିତ । ପ୍ରୋଟିନ, ଶ୍ୱେତସାର ଜୀବନୀକା ଓ ଲୌହ ସମ୍ବଳିତ ଖାଦ୍ୟ ନ ଖାଇଲେ ଶିଶୁଠାରେ ବେରି ବେରି ରୋଗ, ଅଣ୍ଠୁଗଣ୍ଠି ରୋଗ, ଦାନ୍ତ ଓ ଚର୍ମ ରୋଗ ହୁଏ ଏବଂ ଖାଦ୍ୟରେ ଲବଣର ଅଭାବ ହେଲେ ଶରୀରର ହାଡ଼ର ଉପଯୁକ୍ତ ବୃଦ୍ଧି ହୁଏ ନାହିଁ । ଫଳରେ ରିକେଟ୍ ରୋଗ ହୁଏ । ରିକେଟ୍ ରୋଗ ହେଲେ ଅଣ୍ଟା ନଇଁଯାଏ, ଦାନ୍ତ ଅଙ୍କା ବଙ୍କା ହୋଇ ଉଠେ । ଛାତି ସମତଳ ହୋଇଯାଏ ଏବଂ ତଳ ପେଟର ଅଧୋଗହ୍ୱର ବିକଳାଙ୍ଗ ହୋଇଯାଏ ।

ଜନ୍ମ ପରେ ଶୈଶବ ତଥା ବାଲ୍ୟାବସ୍ଥାରେ ଶିଶୁର ବୃଦ୍ଧି ଓ ବିକାଶ ଦ୍ରୁତ ଗତିରେ ହେଉଥିବାରୁ ଉତ୍ତମ ଖାଦ୍ୟର ପ୍ରୟୋଜନ ଯଥେଷ୍ଟ ଅଧିକ । ଖାଦ୍ୟର ଗୁଣ ଉପରେ ବିକାଶର ମାତ୍ରା ନିର୍ଭର କରେ, ପରିମାଣ ଉପରେ ନୁହେଁ । ଉପଯୁକ୍ତ ପରିମାଣରେ ଦୁଗ୍ଧ, ଅଣ୍ଡା, ଫଳ, ମାଛ, ମାଂସ, ପରିବା ସିଝା ଇତ୍ୟାଦି ଶିଶୁକୁ ଖାଇବାକୁ ଦିଆନଗଲେ ତାର ସୁସ୍ଥ ବିକାଶ ବାଧାପ୍ରାପ୍ତ ହୁଏ । ଏ ଦୃଷ୍ଟିରୁ ପ୍ରତ୍ୟେକ ମାତା ଗର୍ଭବତୀ ଅବସ୍ଥାରେ ନିଜର ଖାଦ୍ୟ ପ୍ରତି ଓ ପ୍ରସବ ପରେ ନିଜର ଓ ଶିଶୁର ଖାଦ୍ୟ ପ୍ରତି ଦୃଷ୍ଟି ଦେବା ଅତ୍ୟନ୍ତ ପ୍ରୟୋଜନ । ଏହା ମନେ ରଖିବା ଉଚିତ ଯେ, ଶରୀରର ମନ ସହିତ ନିବିଡ଼ ସମ୍ବନ୍ଧ ଥିବାରୁ ଶାରୀରିକ ବିକାଶର ଗୁରୁତ୍ୱପୂର୍ଣ୍ଣ ପ୍ରଭାବ ମାନସିକ ବିକାଶ ଉପରେ ପଡ଼େ । ପୁନଶ୍ଚ ଶାରୀରିକ ବିକାଶ ଉପଯୁକ୍ତ ସୁଷମ ଖାଦ୍ୟ ଉପରେ ନିର୍ଭର କରେ ।

**ମୁକ୍ତବାୟୁ ଓ ସୂର୍ଯ୍ୟାଲୋକ**—ଉନ୍ନତ ଶାରୀରିକ ଓ ମାନସିକ ବିକାଶ ପାଇଁ ବିଶୁଦ୍ଧ ବାୟୁ ଓ ସୂର୍ଯ୍ୟାଲୋକ ଯାତାୟାତ କରୁଥିବା ସ୍ଥାନମାନଙ୍କରେ ଶିଶୁକୁ ରଖିବା ଉଚିତ। ବାୟୁ ଓ ଆଲୋକ ଯାତାୟାତ କରୁନଥିବା ସ୍ଥାନରେ ବାସ କଲେ ଅନେକ କ୍ଷେତ୍ରରେ ଶିଶୁର ସ୍ୱାସ୍ଥ୍ୟହାନି ଘଟେ ଏବଂ ବିଭିନ୍ନ ସହଜାତ ପ୍ରବୃତ୍ତି ଅର୍ଜିତ ଓ ଅନାର୍ଜିତ ଲକ୍ଷଣଗୁଡ଼ିକର ଇପ୍ସିତମ ବିକାଶ ହୋଇପାରେ ନାହିଁ।

**ପ୍ରକ୍ଷୋଭ**—ସାମାଜିକ ତଥା ବ୍ୟକ୍ତିଗତ ଉପଯୋଜନ ପାଇଁ ଶିଶୁର ବିଭିନ୍ନ ପ୍ରକ୍ଷୋଭମାନଙ୍କର ଉପଯୁକ୍ତ ବିକାଶ ଆବଶ୍ୟକ। ବ୍ୟକ୍ତିତ୍ୱକୁ ସ୍ୱାଭାବିକ ଓ ସୁସ୍ଥ କରି ଗଢ଼ିବାକୁ ହେଲେ ଶିଶୁର ପ୍ରକ୍ଷୋଭର ବିକାଶ ଓ ପ୍ରକାଶ ଉପଯୁକ୍ତ ମାର୍ଗରେ ହେବା ଦରକାର ; ଯେପରିକି ପିଲାର କାନ୍ଦ ବା ଅଳିଅର୍ଦ୍ଦଳିରୁ ରକ୍ଷା ପାଇବାପାଇଁ ପିତାମାତା ଯଦି ସର୍ବଦା ଶିଶୁକୁ ଭୟଭୀତ କରି ଚୁପ କରାଇବାକୁ ଚେଷ୍ଟା କରନ୍ତି, ଅଥବା କଠୋର ଶୃଙ୍ଖଳା ମଧ୍ୟରେ ଶିଶୁକୁ ବଢ଼ାଇ କୌଣସି ପ୍ରକ୍ଷୋଭ ପ୍ରକାଶ କରୁଥିବା ବେଳେ ହଠାତ୍ ଦବାଇଦିଅନ୍ତି, ସେ ତାର ପ୍ରକ୍ଷୋଭଗୁଡ଼ିକୁ ଉପଯୁକ୍ତ ମାର୍ଗରେ ପ୍ରକାଶ କରିପାରେ ନାହିଁ। ଯଦି ଏହିପରି ଭାବରେ ବାରମ୍ବାର ଶିଶୁର ପ୍ରକ୍ଷୋଭଗୁଡ଼ିକୁ ପ୍ରକାଶ କରିବାକୁ ସୁଯୋଗ ଦିଆନଯାଇ ଅବଦମନ କରାଯାଏ, ପରେ ସୁଯୋଗ ମିଳିଲେ ଶିଶୁର ଅବଚେତନ ମନରେ ଦବି ରହିଥିବା ଏହି ଆବେଗଗୁଡ଼ିକ ଆଗ୍ନେୟଗିରିର ଉତ୍ତପ୍ତ ଲାଭା ପରି ପଦାକୁ ବାହାରି ଆସେ। ଫଳରେ ସମାଜରେ ନାନାପ୍ରକାରର ବିଭ୍ରାଟ ଦେଖାଯାଏ।

ବାସ୍ତବ କ୍ଷେତ୍ରରେ ଦେଖାଯାଇଥାଏ ଯେ ଯେଉଁ ଶିଶୁମାନେ ବାଲ୍ୟାବସ୍ଥାରେ ପିତା-ମାତାଙ୍କର ଆଜ୍ଞା ପାଳନ କରି ଅତି ଶାନ୍ତଶିଷ୍ଟ ବ୍ୟବହାର ଦେଖାନ୍ତି, ସେମାନେ ସାଧାରଣତଃ କିଶୋର ଓ ପ୍ରାକ୍ ଯୌବନାବସ୍ଥାରେ ଭୀଷଣ ଦୁଷ୍ଟ ଓ ବିଦ୍ରୋହୀ ହୁଅନ୍ତି। ଏହାର କାରଣ ହେଲା ବିଭିନ୍ନ ପ୍ରକ୍ଷୋଭଗୁଡ଼ିକୁ ବାଲ୍ୟାବସ୍ଥାରେ ଅତ୍ୟଧିକ ଅବଦମିତ କରିବାର କୁପ୍ରତିକ୍ରିୟା।

ଶିଶୁକୁ ନିଜର କେତେକ କାର୍ଯ୍ୟ ସାଧ୍ୟମତେ କରିବାର ସୁଯୋଗ ନ ଦେଇ ଅତ୍ୟଧିକ ସ୍ନେହ ଯୋଗୁଁ ହେଉ ବା ଅନ୍ୟ କେଉଁ କାରଣରୁ ହେଉ, ଅତି-ସଂରକ୍ଷଣ କଲେ ଏବଂ ସର୍ବଦା ଅନ୍ୟ ଉପରେ ନିର୍ଭର କରି ଚାଲିବାର ପ୍ରଶ୍ରୟ ଦିଆଗଲେ, ତା'ର ସାଧାରଣ କ୍ରିୟାକଳାପକୁ ସର୍ବଦା ସୀମାବଦ୍ଧ କରାଗଲେ, ତା'ର ବୃଦ୍ଧି ଓ ବିକାଶ ବିକଳାଙ୍ଗ ହୋଇଯାଏ। ସେ ନିଜକୁ ଅତ୍ୟନ୍ତ ଅସହାୟ ଓ ନିସ୍ୱ ମନେକରେ ଏବଂ ଅସୁରକ୍ଷା ମନୋଭାବ ତାକୁ ପ୍ରତି ମୁହୂର୍ତ୍ତରେ ଆନ୍ଦୋଳିତ କରେ। ପିଲାଦିନରୁ ଯଦି ଶିଶୁକୁ ଅତି ଭୟାକ୍ରାନ୍ତ କରି ବଢ଼ାଯାଏ, ଅର୍ଥାତ୍ ପିତାମାତା ବା ଶିଶୁର ନିକଟତମ ସମ୍ପର୍କରେ ଆସୁଥିବା ବ୍ୟକ୍ତିମାନେ ଯଦି ଭୟାଳୁ ହୋଇଥାନ୍ତି ବା କୌଣସି କାରଣରୁ ଶିଶୁକୁ ସର୍ବଦା ଭୟଭୀତ କରାନ୍ତି, ପିଲା ଭୟାଳୁ

ହୁଏ ଏବଂ ଭବିଷ୍ୟତ ଜୀବନରେ କୌଣସି ସାହସିକ କାର୍ଯ୍ୟ କରିବାକୁ ଆଗଭର ହୁଏନାହିଁ । ଯେପରିକି ଝିଟିପିଟି, ମୂଷା, ବେଙ୍ଗ ଓ ସାପକୁ ଦେଖି ଡରିବା, ଚକ୍ମକ୍, ଘଡ଼ଘଡ଼ି ମାରିଲେ ଘର ଭିତରେ ଲୁଚିବା, ଅହିଂସ୍ର ପଶୁ ପକ୍ଷୀ; ଯଥା : ଗାଈ, ଛେଳି, ବିଲେଇ, କୁକୁଡ଼ା ଇତ୍ୟାଦିଙ୍କୁ ଡରିବା, ରାସ୍ତାରେ ଏକୁଟିଆ ଯାତାୟାତ କରିବା ବା ଅନ୍ଧାର ଘରେ ଏକଲା ରହିବାକୁ ଭୟ ପାଇବା ଇତ୍ୟାଦି । ବାଲ୍ୟାବସ୍ଥାର ଏହି ସବୁ ଲକ୍ଷଣ ଯଦି ଯୌବନ ଓ ପ୍ରୌଢ଼ାବସ୍ଥାକୁ ରହିଯାଏ, ଜୀବନରେ କୌଣସି ସାହସିକ ପଦକ୍ଷେପ ନେବାକୁ ବ୍ୟକ୍ତି ଅସମର୍ଥ ହୁଏ । ଫଳରେ ତାର ମନରେ ନ୍ୟୂନଭାବ ଜାତ ହୁଏ ।

**ଆଘାତ ଓ ରୋଗ**—କୌଣସି ଅସୁବିଧା ଯୋଗୁଁ ସ୍ୱାଭାବିକ ପ୍ରସବ ନ ହେଲେ ଅସ୍ତ୍ରୋପଚାର କରାଯାଇ ପ୍ରସବ କରାଯାଏ । ଅସ୍ତ୍ରୋପଚାର ସମୟରେ ଶିଶୁର ମସ୍ତିଷ୍କରେ ଆଘାତ ଲାଗିଲେ ଶିଶୁର ସାଧାରଣ ବିକାଶ ବିଶେଷକରି ମସ୍ତିଷ୍କର ଉପଯୁକ୍ତ ବିକାଶ ବ୍ୟାହତ ହୁଏ ।

ବରାବର ଅସୁସ୍ଥ ରହିଲେ ବା ରୋଗଦ୍ୱାରା ଆକ୍ରାନ୍ତ ହେଲେ ଶିଶୁର ବୃଦ୍ଧି ଓ ବିକାଶ ଶିଥିଳ ହୁଏ । ଦେଖାଯାଇଛି ଯେ, ଝାଡ଼ା, ଜର ପ୍ରଭୃତି ରୋଗଦ୍ୱାରା ବାରମ୍ବାର ଆକ୍ରାନ୍ତ ହେଉଥିବା ଶିଶୁ ଠିକ୍ ସମୟରେ ଚାଲିପାରେ ନାହିଁ ବା କଥା କହିପାରେ ନାହିଁ । କାରଣ କ୍ରମାଗତ ଅସୁସ୍ଥତା ଯୋଗୁଁ ଶିଶୁର ଅଙ୍ଗ ପ୍ରତ୍ୟଙ୍ଗ ପରିପକ୍ୱତା ଲାଭ କରିପାରେ ନାହିଁ ।

**ଜାତିଗତ ପ୍ରଭେଦ**— ଭିନ୍ନ ଭିନ୍ନ ଜାତିର ଶିଶୁମାନଙ୍କର ବିକାଶରେ ଭିନ୍ନତା ପରିଲକ୍ଷିତ ହୁଏ । ଯେପରି କି ଭୂମଧ୍ୟସାଗର ଅଞ୍ଚଳରେ ବାସ କରୁଥିବା ଶିଶୁମାନଙ୍କର ବୃଦ୍ଧି ଓ ବିକାଶ ଉତ୍ତର ଇଉରୋପରେ ବାସ କରୁଥିବା ଶିଶୁମାନଙ୍କଠାରୁ ଚଞ୍ଚଳ ହୋଇଥାଏ । ସମାନ ଧରଣର ସାମାଜିକ ଓ ଅର୍ଥନୈତିକ ସ୍ଥିତିରେ ନିଗ୍ରୋ ଓ ଶ୍ୱେତାଙ୍ଗ ଶିଶୁମାନଙ୍କର ବିକାଶ ତୁଳନା କଲେ ସେଥିରେ ପାର୍ଥକ୍ୟ ଦୃଷ୍ଟିଗୋଚର ହୁଏ । ଜୀବନର ଦ୍ୱିତୀୟ ବର୍ଷରେ ଶ୍ୱେତାଙ୍ଗ ଶିଶୁମାନେ ନିଗ୍ରୋଙ୍କଠାରୁ ଅଧିକ ବିକାଶର ସୂଚନା ଦେଇଥିବାର ପାସ୍‌ମୋନିକ୍ ଏବଂ କ୍ନୋବେଚ୍‌ଙ୍କର ଅଧ୍ୟୟନରୁ ଜଣାଯାଇଛି ।

**ସଂସ୍କୃତି** —ଜନ୍ମର ଠିକ୍ ପରେ ପରେ ସଂସ୍କୃତିର କୌଣସି ପ୍ରଭାବ ଶିଶୁର ବିକାଶ ଉପରେ ପଡ଼ିନଥାଏ । ତେଣୁ ଶୈଶବାବସ୍ଥାରେ ବିକାଶର ଲକ୍ଷଣ ପ୍ରାୟ ସବୁ ଶିଶୁଙ୍କ ପାଇଁ ସମାନ ହୋଇଥାଏ । ୪।୫ ବର୍ଷ ବୟସରେ ଶିଶୁ ପ୍ରାରମ୍ଭିକ ଶିକ୍ଷଣ ପ୍ରକ୍ରିୟା ମଧ୍ୟଦେଇ ଗତି କଲାବେଳେ ସଂସ୍କୃତି ତାର ବିକାଶକୁ ପ୍ରଭାବିତ କରିବାକୁ ଆରମ୍ଭ କରେ । ଶିଶୁର ବିକାଶ ଉପରେ ସଂସ୍କୃତିର ପ୍ରଭାବ ସମ୍ବନ୍ଧରେ ଡେନିସଙ୍କର ଅଧ୍ୟୟନ ଉଲ୍ଲେଖଯୋଗ୍ୟ । କେତେକ ହପି ଭାରତୀୟ ଓ ଆମେରିକୀୟ ଶିଶୁଙ୍କର ବ୍ୟବହାର ଓ ବିକାଶ ତୁଳନା କରି ସେ ଏହା ଉପରେ ସଂସ୍କୃତିର ପ୍ରଭାବ ପର୍ଯ୍ୟବେକ୍ଷଣ କରିଥିଲେ । ଏହି ଅଧ୍ୟୟନର ଫଳାଫଳରୁ

ଜଣାଯାଏ ଯେ, ସଂସ୍କୃତିରେ ପ୍ରଭେଦ ଥିଲେ ମଧ୍ୟ ଉଭୟ ଜାତିର ଶିଶୁମାନଙ୍କଠାରେ ସମାନ ଧରଣର ସାମାଜିକ ଓ ପେଶୀୟ ପ୍ରତିକ୍ରିୟା ଦେଖାଯାଏ । ଅର୍ଥାତ୍ ସଂସ୍କୃତିର କୌଣସି ପ୍ରଭାବ ଡେନିସ୍ ଶିଶୁର ବିକାଶ ଉପରେ ଲକ୍ଷ୍ୟ କରିପାରିନଥିଲେ । କିନ୍ତୁ ଶିଶୁର ଶାରୀରିକ ଓ ମାନସିକ ବିକାଶ ଉପରେ ସଂସ୍କୃତିର ପ୍ରକୃତ ପ୍ରଭାବ ଜାଣିବା ନିମନ୍ତେ ଅଧିକ ଅଧ୍ୟୟନ, ଗବେଷଣା ଓ ପର୍ଯ୍ୟବେକ୍ଷଣର ଆବଶ୍ୟକତା ରହିଅଛି ।

**ପରିବାରରେ ଶିଶୁର ସ୍ଥାନ**—ବିଭିନ୍ନ ଅଧ୍ୟୟନର ଫଳାଫଳରୁ ପ୍ରମାଣିତ ହୋଇଛି ଯେ ପରିବାରର ପ୍ରଥମ ଶିଶୁ ଅପେକ୍ଷା ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ଶିଶୁଙ୍କର ଶାରୀରିକ ଓ ମାନସିକ ବିକାଶ ଅପେକ୍ଷାକୃତ ଚଞ୍ଚଳ ହୋଇଥାଏ । ଶାରୀରିକ ଓ ମାନସିକ ବିକାଶରେ ପରିବାରରେ ଶିଶୁର ସ୍ଥାନର ପ୍ରଭାବ ଦର୍ଶାଇବାକୁ ଯାଇ ବିଭିନ୍ନ ମନସ୍ତତ୍ତ୍ୱବିଦ୍-ମାନେ ମତ ଦେଇଅଛନ୍ତି ଯେ, ବୌଦ୍ଧିକ ବିକାଶରେ କୌଣସି ଉଲ୍ଲେଖନୀୟ ତାରତମ୍ୟ ଯୋଗୁଁ ଏହା ହୋଇନଥାଏ । ମାତ୍ର ପ୍ରଥମ ଶିଶୁ ସହ ମିଳାମିଶା, ଖେଳାଖେଳି ଓ କଥାବାର୍ତ୍ତା କରିବାକୁ ଅନ୍ୟ କେହି ସହୋଦର ନ ଥିବାରୁ ପିଲା ବିଭିନ୍ନ କଥା କହିବାର ସୁବିଧା ସୁଯୋଗ ପାଏ ନାହିଁ । ପିତା ମାତା ବି ଏତ ଶିଶୁ ସହିତ ଏତେଟା ସମୟ କଟାଇବାର ସୁଯୋଗ ପାଆନ୍ତି ନାହିଁ । ଫଳରେ ଶିଶୁର ଭାଷା, ଚଳନ ଓ ଶିକ୍ଷଣ ପ୍ରଭୃତିର ଯଥେଷ୍ଟ ବିକାଶ ହୋଇପାରେ ନାହିଁ ।

ଦ୍ୱିତୀୟତଃ ଏକଶିଶୁବିଶିଷ୍ଟ ପରିବାରରେ ପିତା ମାତାଙ୍କର ଶିଶୁ ପ୍ରତି ଅତ୍ୟଧିକ ଦୃଷ୍ଟି, ସ୍ନେହ ମମତା ଓ ଅତି ସଂରକ୍ଷଣତା ତାର ଆତ୍ମନିର୍ଭରଶୀଳତାକୁ ଦବାଇ ଦିଏ ଏବଂ ଅନ୍ୟ ଦ୍ୱାରା ତାର କାର୍ଯ୍ୟଗୁଡ଼ିକ ସମ୍ପନ୍ନ ହୋଇଯାଉଥିବାରୁ ତାର ଅଙ୍ଗପ୍ରତ୍ୟଙ୍ଗ ଓ ମସ୍ତିଷ୍କର ଉପଯୁକ୍ତ ବ୍ୟାୟାମ ହୁଏ ନାହିଁ । ଫଳରେ ତାର ବୃଦ୍ଧି ଓ ବିକାଶ ଶିଥିଳ ହୁଏ ।

ଏହି ସବୁ କାରଣରୁ ପରିବାରର ପ୍ରଥମ ଶିଶୁ ଅପେକ୍ଷା ଦ୍ୱିତୀୟ ଓ ତୃତୀୟ ଶିଶୁ-ମାନଙ୍କର ତ୍ୱରିତ ଶାରୀରିକ ଓ ମାନସିକ ବିକାଶ ହୁଏ ।

**ଅନ୍ତଃସ୍ରାବୀ ଗ୍ରନ୍ଥି**—କେତେକ ଅନ୍ତଃସ୍ରାବୀ ଗ୍ରନ୍ଥି ବ୍ୟକ୍ତିର ଶାରୀରିକ ଓ ମାନସିକ ବିକାଶକୁ ପ୍ରାକ୍ ଜନ୍ମପର ପର୍ଯ୍ୟାୟରେ ପ୍ରଭାବିତ କରନ୍ତି । ଏହି ଅନ୍ତଃସ୍ରାବୀ ଗ୍ରନ୍ଥି-ମାନଙ୍କର କାର୍ଯ୍ୟ ଯୋଗୁଁ ବାଳକର ବ୍ୟବହାରରେ ବହୁଳ ପରିବର୍ତ୍ତନ ଦୃଷ୍ଟିଗୋଚର ହୁଏ । ଉଦାହରଣ ସ୍ୱରୂପ, ଅନ୍ତଃସ୍ରାବୀ ଗ୍ରନ୍ଥିରୁ ଅତ୍ୟଧିକ ରସ ନିର୍ଗତ ହେବାଦ୍ୱାରା କେହି କେହି ଅତ୍ୟଧିକ ମୋଟା ବା ଗେଡ଼ା ହେଲେ ଅନ୍ୟ ପିଲାର ଆଗରେ ତାର ନ୍ୟୂନ ମନୋଭାବ ଜାତ ହୁଏ ।

ପାରା-ଥାଇ-ରଏଡ଼ ଗ୍ରନ୍ଥିରୁ ନିର୍ଗତ ହେଉଥିବା ରସ ରକ୍ତରେ ଲବଣର ସ୍ତରକୁ ନିୟନ୍ତ୍ରଣ କରେ । ଏହି ଅନ୍ତଃସ୍ରାବୀ ଗ୍ରନ୍ଥିଗୁଡ଼ିକରୁ ଉପଯୁକ୍ତ ପରିମାଣରେ ରସ ନିର୍ଗତ ନ ହେଲେ ହାଡ଼ର ତ୍ରୁଟିପୂର୍ଣ୍ଣ ବିକାଶ ହୁଏ ଏବଂ ମାଂସପେଶୀଗୁଡ଼ିକ ଅତ୍ୟଧିକ ଉତ୍ତେଜିତ ହୋଇପଡ଼ନ୍ତି । ଜରାୟୁରେ ବୃଦ୍ଧି ଲାଭ କରୁଥିବା ସମୟରେ ଆଇରକ୍ସିନ୍‌ର ଅଭାବ ହେଲେ,

ବୃଦ୍ଧି ଲାଭ କରୁଥିବା ଶିଶୁର ଶାରୀରିକ ଓ ମାନସିକ ବିକାଶ ବ୍ୟାହତ ହୁଏ ଏବଂ ବିକଳାଙ୍ଗ ବା ଜଡ଼ମତି ଶିଶୁ ଜନ୍ମ ଲାଭ କରେ । ସେହିପରି ଯୌନଗ୍ରନ୍ଥିଗୁଡ଼ିକ ଉପଯୁକ୍ତ ଭାବରେ ସକ୍ରିୟ ନ ହେଲେ ଯୌବନାବସ୍ଥା ଡେରିରେ ପ୍ରାପ୍ତ ହୁଏ । ଅନ୍ୟ ପକ୍ଷରେ ଗ୍ରନ୍ଥିଗୁଡ଼ିକ ଅତ୍ୟଧିକ ସକ୍ରିୟ ହେଲେ ଯୌନ ଅଙ୍ଗଗୁଡ଼ିକର ବିକାଶ ଚଞ୍ଚଳ ହୁଏ । ଫଳରେ ନିଶ ଦାଢ଼ି ପ୍ରଭୃତି ବୟସ ତୁଳନାରେ ଶୀଘ୍ର ଉଠିଥାଏ ।

ଲିଙ୍ଗ—ଶିଶୁର ଶାରୀରିକ ଓ ମାନସିକ ବିକାଶ ତାର ଲିଙ୍ଗଦ୍ୱାରା ପ୍ରଭାବିତ ହେବାର ପ୍ରମାଣ ମିଳିଛି । ପର୍ଯ୍ୟବେକ୍ଷଣରୁ ଜଣାଯାଏ ଯେ ଜନ୍ମ ସମୟରେ ବାଳକମାନେ ବାଳିକାମାନଙ୍କଠାରୁ ସାମାନ୍ୟ ବଡ଼ ହୋଇଥାନ୍ତି । କିନ୍ତୁ ଜନ୍ମର ପରବର୍ତ୍ତୀ ଅବସ୍ଥାମାନଙ୍କରେ ବାଳିକାମାନେ କ୍ଷିପ୍ରଗତିରେ ବୃଦ୍ଧି ଲାଭ କରି ବାଳକମାନଙ୍କ ଅପେକ୍ଷା ଶୀଘ୍ର ପରିପକ୍ୱତା ଲାଭ କରନ୍ତି । ୯ ଠାରୁ ୧୬ ବର୍ଷ ବୟସ ଭିତରେ ବାଳିକାମାନେ ସେହି ବୟସର ବାଳକମାନଙ୍କଠାରୁ ବଡ଼ ଦେଖାଯାଆନ୍ତି । ବାଳକମାନଙ୍କ ଅପେକ୍ଷା ହାରାହାରି ୧ ବର୍ଷ ବୟସ ପୂର୍ବରୁ ବାଳିକାମାନେ ଯୌନ ପରିପକ୍ୱତା ଲାଭ କରନ୍ତି ।

ମାନସିକ ବିକାଶ କ୍ଷେତ୍ରରେ ମଧ୍ୟ ବାଳିକାମାନଙ୍କର ପରିପକ୍ୱତା ବାଳକମାନଙ୍କଠାରୁ ଚଞ୍ଚଳ ହୋଇଥାଏ । କେତେକ ଅଧ୍ୟୟନର ତଥ୍ୟରୁ ଜଣାଯାଏ ଯେ, ବାଳିକାମାନଙ୍କର ବାଗ୍ ବିକାଶ ବାଳକମାନଙ୍କଠାରୁ ଚଞ୍ଚଳ ହୁଏ ।

ଧୀ ଶକ୍ତି—ଧୀ ଶକ୍ତି ଓ ବିକାଶ ମଧ୍ୟରେ ସହସମ୍ବନ୍ଧ ରହିଛି । ଶିଶୁର ଧୀ ଶକ୍ତି ତାର ବୃଦ୍ଧି ଓ ବିକାଶର ମାନଦଣ୍ଡ ଅଟେ । ଧୀମାନ୍ ଶିଶୁ ସାଧାରଣତଃ ସ୍ୱାସ୍ଥ୍ୟବାନ ହୋଇଥାଏ । ଅପର ପକ୍ଷରେ ଜଡ଼ ବା ମୂଢ଼ମତି ଶିଶୁମାନଙ୍କର ବିକାଶ ଧୀର ଓ ମନ୍ଥର ଗତିରେ ହୋଇଥାଏ । ଚାଲିବା, କଥା କହି ଶିଖିବା ଓ ବିଭିନ୍ନ କ୍ରିୟାକଳାପ ମାନବର ଧୀ ଶକ୍ତି ଉପରେ ନିର୍ଭର କରେ । ଧୀ ଶକ୍ତି ସହିତ ବୃଦ୍ଧି ଓ ବିକାଶର କି ପ୍ରକାର ସକାସ୍ତ ସହ ସମ୍ବନ୍ଧ ରହିଛି, ତାହା ନିମ୍ନୋକ୍ତ ଉପାତ୍ତ (Data) ରୁ ଜଣାଯାଏ ।

| ବୃଦ୍ଧି | କଥା କହିବାର ହାରାହାରି ବୟସ | ଚାଲିବାର ହାରାହାରି ବୟସ |
|---|---|---|
| ଧୀମାନ୍ | ୧୧ ମାସ | ୧୩ ମାସ |
| ସାଧାରଣ ବା ସାମାନ୍ୟ ବୃଦ୍ଧି | ୧୬ ମାସ | ୧୪ ମାସ |
| କ୍ଷୀଣମତି | ୩୪ ମାସ | ୨୨ ମାସ |
| ଉଚ୍ଚ ଧରଣର ଜଡ଼ମତି | ୫୧ ମାସ | ୩୦ ମାସ |
| ନିମ୍ନ ଧରଣର ଜଡ଼ମତି | ମୋଟେ କଥା କହିପାରୁ ନଥିବ | ମୋଟେ ଚାଲିପାରୁ ନଥିବ |

## ଶିଶୁ ଅଧ୍ୟୟନ ବିଧି

ମନୋବିଜ୍ଞାନର ଅନ୍ୟାନ୍ୟ ଶାଖାମାନଙ୍କ ଭଳି ଶିଶୁମାନଙ୍କର ବାହ୍ୟ ଓ ଆଭ୍ୟନ୍ତରୀଣ ବ୍ୟବହାର ଅଧ୍ୟୟନ ପାଇଁ କେତେଗୁଡ଼ିଏ ପଦ୍ଧତିର ଆଶ୍ରୟ ନିଆଯାଇଛି । କାଳକ୍ରମେ ଶିଶୁ ମନୋବିଜ୍ଞାନର ପରିଭାଷା, ଧାରଣା ଓ ଲକ୍ଷ୍ୟରେ ପରିବର୍ତ୍ତନ ହେବା ସଙ୍ଗେ ସଙ୍ଗେ ବିଧିରେ ମଧ୍ୟ ପରିବର୍ତ୍ତନ ଘଟିଅଛି । ପୂର୍ବରୁ ଶିଶୁ ଅଧ୍ୟୟନରେ ବ୍ୟବହୃତ ହେଉଥିବା କେତେକ ପ୍ରଣାଳୀ ସଠିକ ବିଶ୍ୱାସଯୋଗ୍ୟ ଓ ବୈଧ ହୋଇନଥିବାରୁ ସେଗୁଡ଼ିକ ଆଧୁନିକ ମନସ୍ତତ୍ତ୍ୱବିତ୍‌ମାନେ ପରିତ୍ୟାଗ କରିଅଛନ୍ତି ।

ଶିଶୁର ବାହ୍ୟ ଓ ଆଭ୍ୟନ୍ତରୀଣ ବ୍ୟବହାର ଅଧ୍ୟୟନ ପାଇଁ ନିମ୍ନଲିଖିତ ବିଧିମାନ ବ୍ୟବହାର କରାଯାଇଛି ।

(୧) ଆତ୍ମନିଷ୍ଠ ବା ଅବୈଜ୍ଞାନିକ ବିଧି ।

(୨) ବସ୍ତୁନିଷ୍ଠ ବା ବୈଜ୍ଞାନିକ ବିଧି ।

ଶିଶୁ ବିକାଶର ସମସ୍ତ ସମସ୍ୟାଗୁଡ଼ିକୁ ପ୍ରୟୋଗାତ୍ମକ ବା ବୈଜ୍ଞାନିକ ବିଧିରେ ଅଧ୍ୟୟନ କରିବା ସମ୍ଭବ ନୁହେଁ । ତେଣୁ କେତେକ କ୍ଷେତ୍ରରେ ଅବୈଜ୍ଞାନିକ ବିଧିର ମଧ୍ୟ ଆଶ୍ରୟ ନିଆଯାଇଥାଏ ।

ଆତ୍ମନିଷ୍ଠ ବିଧି—ଶିଶୁ ମନୋବିଜ୍ଞାନର ବିଜ୍ଞାନସମ୍ମତ ବିକାଶ ହେବା ପୂର୍ବରୁ ଊନବିଂଶ ଶତାବ୍ଦୀରେ ଶିଶୁ ଅଧ୍ୟୟନ ପାଇଁ ଯେଉଁ ଆତ୍ମନିଷ୍ଠ ପ୍ରଣାଳୀଗୁଡ଼ିକ ବହୁଳ ଭାବରେ ବ୍ୟବହାର କରାଯାଉଥିଲା, ତାହା ନିମ୍ନରେ ଦିଆଗଲା ।

### ବି-ପ୍ରୟୋଗ କଳ୍ପନା (Anecdotal Method)

ସମସ୍ତ ଶିଶୁ-ବିକାଶ ଅଧ୍ୟୟନ ବିଧିମାନଙ୍କ ମଧ୍ୟରେ ଏହା ପୁରାତନ ଓ ସହଜ । ଆରିଷ୍ଟୋଟଲ୍ ଓ ପ୍ଲେଟୋ ପ୍ରଭୃତି ଦାର୍ଶନିକମାନେ ଶିଶୁର ଅଧ୍ୟୟନ ପାଇଁ ଏହି ବିଧିକୁ ବ୍ୟବହାର କରୁଥିଲେ । ନିଜର ଅଭିଜ୍ଞତା ଓ ମନୋଭାବ ଉପରେ ଭିତ୍ତି କରି ଶିଶୁର କ୍ରିୟାକଳାପ ଓ ବ୍ୟବହାରକୁ ତାତ୍ତ୍ୱିକ ଭାବରେ ପର୍ଯ୍ୟବେକ୍ଷଣ କରୁଥିଲେ ।

କିନ୍ତୁ ଏହିପରି ପକ୍ଷପାତ ମନୋଭାବ ନେଇ ଶିଶୁକୁ ଅଧ୍ୟୟନ କରିବାଦ୍ୱାରା ଉଚିତ ଓ ସଠିକ୍ ତଥ୍ୟ ମିଳିବା ପରିବର୍ତ୍ତେ ବିଭ୍ରାନ୍ତିକର ତଥ୍ୟ ମିଳିଥାଏ । କୌଣସି ଆତ୍ମନିଷ୍ଠ ମନୋଭାବ ବା ବ୍ୟକ୍ତିଗତ ଅନୁଭବଦ୍ୱାରା ପ୍ରଭାବିତ ହୋଇ, ବିଭିନ୍ନ ଅବସ୍ଥାକୁ ନିୟନ୍ତ୍ରଣ ନ କରି, ପ୍ରକୃତ ପରିସ୍ଥିତିରେ ନିରପେକ୍ଷ ଭାବରେ ଶିଶୁକୁ ପର୍ଯ୍ୟବେକ୍ଷଣ ନ କରି, ଶିଶୁର ଶାରୀରିକ ଓ ମାନସିକ ବିକାଶ ସମ୍ବନ୍ଧରେ ବିଭିନ୍ନ ମତ ବ୍ୟକ୍ତ କଲେ ତାହା ଅବୈଜ୍ଞାନିକ ଓ ମୂଲ୍ୟହୀନ

ହେବାର ଆଶଙ୍କା ଥାଏ ଏବଂ ଏହି ତଥ୍ୟ ଉପରେ ପର୍ଯ୍ୟବସିତ ମତବାଦ ସଠିକ ନିର୍ଭର-ଯୋଗ୍ୟ ଓ ବୈଧ ନ ହେବାର ସମ୍ଭାବନା ଥାଏ । ବି-ପ୍ରୟୋଗ କଳ୍ପନା ପଦ୍ଧତିରେ ଶିଶୁର ଆଚରଣ ଓ ବ୍ୟବହାରକୁ ବସ୍ତୁନିଷ୍ଠ ଉପାୟରେ ଲିପିବଦ୍ଧ କରାଯାଇପାରେ ନାହିଁ । ସ୍ୱଳ୍ପ ବିଷୟୀମାନଙ୍କଠାରୁ ସଂଗୃହୀତ ତଥ୍ୟକୁ ସାଧାରଣୀକରଣ କରାଯିବାଦ୍ୱାରା କାଳକ୍ରମେ ଏହି ବିଧିରେ ବହୁ ତ୍ରୁଟି ପରିଲକ୍ଷିତ ହେଲା । ଶିଶୁର ବିକାଶକୁ ପ୍ରତ୍ୟକ୍ଷ ଭାବରେ ପର୍ଯ୍ୟବେକ୍ଷଣ ନ କରି ପିତାମାତାଙ୍କ ସ୍ମରଣ ଶକ୍ତିରୁ ତଥ୍ୟ ସଂଗ୍ରହ କରାଯାଇଥିବାରୁ ଏହା କାଳକ୍ରମେ ଶିଶୁ ବିକାଶ ଅଧ୍ୟୟନ ପାଇଁ ଗ୍ରହଣୀୟ ହେଲା ନାହିଁ ।

ବି-ପ୍ରୟୋଗ କଳ୍ପନା ପଦ୍ଧତିର କିଛି ଐତିହାସିକ ମୂଲ୍ୟ ଥାଇପାରେ । କିନ୍ତୁ ବୈଜ୍ଞାନିକ ଦୃଷ୍ଟିକୋଣରୁ ଏହା ମୂଲ୍ୟହୀନ ଅଟେ ।

ଘଟଣାବୃତ୍ତ ବିଧି—ଏହି ପ୍ରଣାଳୀ ଅନୁସାରେ ଶିଶୁର ବ୍ୟବହାର ଓ ଜୀବନର ଘଟଣାବଳୀକୁ ପ୍ରକୃତ ଅବସ୍ଥାରେ ପର୍ଯ୍ୟବେକ୍ଷଣ କରି ସଂକ୍ଷେପରେ ଲିପିବଦ୍ଧ କରାଯାଏ । ଫଳରେ ଭବିଷ୍ୟତରେ ଶିକ୍ଷକ ବା ପିତାମାତାଙ୍କୁ ଶିଶୁର ଅତୀତର କ୍ରିୟାକଳାପ ତଥା ଅଭିଜ୍ଞତାକୁ ବିଶ୍ଳେଷଣ କରି ତାହାର ବ୍ୟକ୍ତିତ୍ୱକୁ ପର୍ଯ୍ୟାଲୋଚନା କରିବା ବା ତାର ଅସ୍ୱାଭାବିକ ବ୍ୟବହାରର ପ୍ରକୃତ କାରଣ ଅନୁଧ୍ୟାନ କରିବାପାଇଁ ସୁବିଧା ହୁଏ ।

ଶିଶୁର ବ୍ୟବହାର ପର୍ଯ୍ୟବେକ୍ଷଣ କରି ତାର ସାଧାରଣ କ୍ରିୟାକଳାପ ଓ ସ୍ୱଭାବ ସମ୍ବନ୍ଧରେ ମୋଟାମୋଟି ଧାରଣ କରାଯାଏ । ଏହି ପ୍ରାସଙ୍ଗିକ ପର୍ଯ୍ୟବେକ୍ଷଣ ଅନେକ ସମୟରେ ଗବେଷଣାରେ ସାହାଯ୍ୟ କରିଥାଏ ।

ଆଧୁନିକ ଯୁଗରେ ଶିଶୁର ବ୍ୟବହାର ପର୍ଯ୍ୟବେକ୍ଷଣ କରିବା ପାଇଁ ଏକମୁଖୀ ଦର୍ଶନ ପରଦା ବ୍ୟବହାର କରାଯାଏ ।

ଏହାକୁ ବ୍ୟବହାର କଲେ ପର୍ଯ୍ୟବେକ୍ଷକଙ୍କର ଉପସ୍ଥିତିଦ୍ୱାରା ଶିଶୁର ସ୍ୱାଭାବିକ ବ୍ୟବହାର ବ୍ୟାହତ ହୁଏ ନାହିଁ । ମାତ୍ର ଶିଶୁର ବ୍ୟବହାର ପର୍ଯ୍ୟବେକ୍ଷଣ କଲାବେଳେ ପର୍ଯ୍ୟବେକ୍ଷକ ନିଜର ବ୍ୟବହାର ଓ ଶିଶୁର ବ୍ୟବହାର ପ୍ରତି ଦୃଷ୍ଟି ଦେଇ ଉଭୟେ ଉଭୟ-ଙ୍କର ବ୍ୟବହାରକୁ କିପରି ଭାବରେ ପ୍ରଭାବିତ କରୁଅଛନ୍ତି, ସେଥିପ୍ରତି ଲକ୍ଷ୍ୟ ରଖିବା ଆବଶ୍ୟକ । ପର୍ଯ୍ୟବେକ୍ଷକମାନେ ନିଜର ମନୋଭାବକୁ ପ୍ରକ୍ଷେପ କରିବା ବା ନିଜର ଦୃଷ୍ଟିକୋଣରୁ ସେଗୁଡ଼ିକୁ ବ୍ୟାଖ୍ୟା କରିବା ଅନୁଚିତ ।

ଉପରୋକ୍ତ ଦୋଷ ତ୍ରୁଟି ସତ୍ତ୍ୱେ ଅନ୍ୟ ଉପାୟରେ ଯେଉଁସବୁ ଖବର ସଂଗ୍ରହ କରିବା ସମ୍ଭବ ହୁଏ ନାହିଁ, ଘଟଣାବୃତ୍ତ ବିଧିଦ୍ୱାରା ତାହା ସମ୍ଭବ ହୋଇଥାଏ । ଘଟଣାବୃତ୍ତ ବିଧିର ଏହା ଏକ ପ୍ରଧାନ ଗୁଣ ।

ବସ୍ତୁନିଷ୍ଠ ବା ବୈଜ୍ଞାନିକ ବିଧି—ଆତ୍ମନିଷ୍ଠ ବିଧିଗୁଡ଼ିକର ଦୋଷତ୍ରୁଟି ଯୋଗୁ ଆଧୁନିକ ଶିଶୁ-ଅଧ୍ୟୟନକାରୀଙ୍କଦ୍ୱାରା କେତେକ ବୈଜ୍ଞାନିକ ବିଧିର ସୂତ୍ରପାତ ହେଲା ।

ବୈଜ୍ଞାନିକ ବିଧିଗୁଡ଼ିକ ସାଧାରଣତଃ ପ୍ରତ୍ୟକ୍ଷ ପର୍ଯ୍ୟବେକ୍ଷଣ ଓ ପରୀକ୍ଷା ଉପରେ ନିର୍ଭର କରେ । ପର୍ଯ୍ୟବେକ୍ଷଣର ଫଳାଫଳ ନିୟମ ଅନୁଯାୟୀ ଲିପିବଦ୍ଧ କରାଯାଏ । ଗୋଟିଏ ବ୍ୟତୀତ ଅନ୍ୟ ସମସ୍ତ ପରିବର୍ତ୍ତୀ (Variable) ମାନଙ୍କୁ ନିୟନ୍ତ୍ରିତ କରି ପରୀକ୍ଷାଗାରରେ ତଥ୍ୟ ସଂଗ୍ରହ କରାଯାଏ । ଏହି ବିଧିଦ୍ୱାରା ପୂର୍ବ ନିୟନ୍ତ୍ରିତ ପରିବର୍ତ୍ତୀମାନଙ୍କୁ ପୁନରାବୃତ୍ତି କରି ଆଉଥରେ ପରୀକ୍ଷା କରାଯାଇପାରେ ଏବଂ ପୂର୍ବ ଫଳରେ ବୈଧତା ମଧ୍ୟ ପରୀକ୍ଷା କରାଯାଇପାରେ ।

କେତେଗୁଡ଼ିଏ ଅତ୍ୟନ୍ତ ଦରକାରୀ ଓ ବହୁଳ ଭାବରେ ପ୍ରୟୋଗ ହେଉଥିବା ବସ୍ତୁନିଷ୍ଠ ବିଧି ନିମ୍ନରେ ପ୍ରଦତ୍ତ ହେଲା ।

ଆତ୍ମକଥା ବିଧି—ଜର୍ମାନର ଶରୀରବିଜ୍ଞାନବିତ୍ ପ୍ରେୟର ୧୮୮୨ ମସିହାରେ ଏହି ବିଧି ପ୍ରବର୍ତ୍ତନ କରିଥିଲେ । ସେ ତାଙ୍କ ଶିଶୁର ପ୍ରଥମ ୩ ବର୍ଷର ପ୍ରତ୍ୟେକ କ୍ରିୟାକୁ ପର୍ଯ୍ୟବେକ୍ଷଣ କରି ଫଳାଫଳ ଲିପିବଦ୍ଧ କରିଥିଲେ । ଏହି ପଦ୍ଧତି ଅନୁସାରେ ଶିଶୁର ବିଭିନ୍ନ କ୍ରିୟାକଳାପ, ତାର ଶାରୀରିକ ଓ ମାନସିକ ବିକାଶ ସମ୍ବନ୍ଧରେ ବିଭିନ୍ନ ତଥ୍ୟ ଲିପିବଦ୍ଧ କରାଯାଏ । ପରୀକ୍ଷାରୁ ମିଳିଥିବା ଫଳାଫଳ ସହିତ ଏହି ତଥ୍ୟକୁ ତୁଳନା କରାଯାଇପାରେ ଏବଂ ପରିଶେଷରେ କେତେକ ସିଦ୍ଧାନ୍ତ ଗ୍ରହଣ କରାଯାଏ ।

ଏହି ପଦ୍ଧତି ଅନୁସାରେ ଶିଶୁ ବିକାଶ ସମ୍ବନ୍ଧରେ କୌଣସି ସିଦ୍ଧାନ୍ତ ଗ୍ରହଣ କରିବା ପୂର୍ବରୁ ଅନେକ ଶିଶୁଙ୍କର କ୍ରିୟାକଳାପ ପର୍ଯ୍ୟବେକ୍ଷଣ କରାଯାଏ । ଆତ୍ମକଥା ବିଧିରେ ଶିଶୁକୁ ପରୀକ୍ଷାଗାରରେ ପରୀକ୍ଷା ନକରି ସ୍ୱାଭାବିକ ପରିବେଶ ମଧ୍ୟରେ ପର୍ଯ୍ୟବେକ୍ଷଣ କରାଯାଉଥିବାରୁ ତାର କ୍ରିୟାକଳାପ ଓ ବ୍ୟବହାରରେ କୃତ୍ରିମତା ଲକ୍ଷ୍ୟ କରାଯାଏ ନାହିଁ । ନବଜାତ ଓ ଅତି କ୍ଷୁଦ୍ର ଶିଶୁଙ୍କର ବିଭିନ୍ନ କ୍ରିୟାକଳାପ ପରୀକ୍ଷାଗାରରେ ପର୍ଯ୍ୟବେକ୍ଷଣ କରିବା ସମ୍ଭବ ହେଉନଥିବାରୁ ଏହି ପଦ୍ଧତି ସାହାଯ୍ୟରେ ସ୍ୱାଭାବିକ ପରିବେଶରେ ଗୃହ ମଧ୍ୟରେ ପର୍ଯ୍ୟବେକ୍ଷଣ କରାଯାଏ ।

ଘଟଣାବୃତ୍ତ ବିଧି ସଦୃଶ ଆତ୍ମକଥା ବିଧିରେ ବିସ୍ମରଣଜନିତ ପ୍ରମାଦ ପରିଲକ୍ଷିତ ହୁଏ ନାହିଁ । କାରଣ ଶିଶୁର ବ୍ୟବହାରକୁ ପର୍ଯ୍ୟବେକ୍ଷଣ କରିବାକ୍ଷଣି ଲିପିବଦ୍ଧ କରାଯାଏ ଏବଂ ପ୍ରାପ୍ତ ଉପାତ୍ତକୁ ପରିସଂଖ୍ୟାନ ପଦ୍ଧତିରେ ଫଳାଫଳରେ ପରିଣତ କରାଯାଏ । ଆତ୍ମକଥାବିଧି ଅବିଚ୍ଛିନ୍ନ ଓ ସଙ୍ଗଠିତ ପର୍ଯ୍ୟବେକ୍ଷଣରେ ସାହାଯ୍ୟ କରେ । ଅଳ୍ପ ସମୟ ପାଇଁ ଶିଶୁକୁ ପର୍ଯ୍ୟବେକ୍ଷଣ କରି ତାର ବ୍ୟବହାର ସମ୍ବନ୍ଧରେ ଯେଉଁ ତଥ୍ୟ ମିଳିପାରେ ନାହିଁ, ବହୁକାଳ ଧରି ଶିଶୁକୁ ଏହି ବିଧିରେ ପର୍ଯ୍ୟବେକ୍ଷଣ କରାଯାଉଥିବାରୁ ସେ ସବୁ ତଥ୍ୟ ମିଳିଥାଏ ।

ଦୋଷ—ଶିଶୁ ଅଧ୍ୟୟନରେ ଆତ୍ମ କଥା ବିଧିରେ ଯଥେଷ୍ଟ ଉପଯୋଗିତା ଥିଲେ ମଧ୍ୟ ଏଥିରେ କେତେଗୁଡ଼ିଏ ତ୍ରୁଟି ପରିଲକ୍ଷିତ ହୁଏ ।

ସାଧାରଣତଃ ଉଚ୍ଚ ଆର୍ଥିକ ଓ ସାମାଜିକ ସ୍ତରରେ ଶିକ୍ଷିତ ପିତାମାତାଙ୍କୁ ସେମାନଙ୍କର ବ୍ୟବହାର ପର୍ଯ୍ୟବେକ୍ଷଣ କରି ଲିପିବଦ୍ଧ କରିବାର ଦାୟିତ୍ୱ ଦିଆଯାଉଥିବାରୁ କେବଳ ଉଚ୍ଚ

ପରିବାରର ପିଲାଙ୍କର ଶାରୀରିକ ଓ ମାନସିକ ବିକାଶ ଲିପିବଦ୍ଧ କରାଯାଏ । ଏହା ନିଶ୍ଚିତ ଭାବରେ ନିମ୍ନ ଅଶିକ୍ଷିତ ପରିବାରର ଶିଶୁମାନଙ୍କଠାରୁ ଉନ୍ନତ ହୋଇଥାଏ । ଉଚ୍ଚ ପରିବାରର ଶିଶୁମାନଙ୍କର କ୍ରିୟାକଳାପକୁ ମଧ୍ୟବିତ୍ତ ଓ ନିମ୍ନ ସାମାଜିକ ଆର୍ଥିକ ସ୍ଥିତିର ଶିଶୁଙ୍କର ବ୍ୟବହାରର ମାନକ ଗ୍ରହଣ କରି ତୁଳନା କଲେ ତାହା ପ୍ରମାଦପୂର୍ଣ୍ଣ ଓ ଅନୁପଯୁକ୍ତ ହୁଏ । ସାଧାରଣତଃ ପିତାମାତା ନିଜ ଶିଶୁପ୍ରତି ସ୍ନେହଭାବାପନ୍ନ ହୋଇ କେବଳ ତାର ଉତ୍ତମ କ୍ରିୟାକଳାପଗୁଡ଼ିକୁ ଲିପିବଦ୍ଧ କରିବା ଫଳରେ ତାର କ୍ରିୟାକଳାପ ସମ୍ବନ୍ଧରେ ଉଚିତ ତଥ୍ୟ ଉଦ୍‌ଘାଟିତ ହୋଇପାରେ ନାହିଁ ଏବଂ ଏହି ଉପାତ୍ତ ପ୍ରମାଦପୂର୍ଣ୍ଣ ହେବାର ଯଥେଷ୍ଟ ସମ୍ଭାବନା ଥାଏ । ଆତ୍ମକଥା ବିଧି ଅତ୍ୟନ୍ତ ସମୟସାପେକ୍ଷ ଅଟେ । ପିତାମାତାଙ୍କର ପର୍ଯ୍ୟବେକ୍ଷଣରେ ପକ୍ଷପାତିତା ରହୁଥିବାରୁ ଏହା ଅଧିକାଂଶ କ୍ଷେତ୍ରରେ ବସ୍ତୁନିଷ୍ଠ ହୋଇପାରେ ନାହିଁ ଏବଂ ଉପାତ୍ତ ପ୍ରମାଦପୂର୍ଣ୍ଣ ହେବାର ଯଥେଷ୍ଟ ସମ୍ଭାବନା ଥାଏ । ଉପରୋକ୍ତ ଦୋଷତ୍ରୁଟି ସତ୍ତ୍ୱେ ଆତ୍ମକଥା ବିଧିକୁ ବୁଦ୍ଧି, ବିଚାର ଓ ନିରପେକ୍ଷତା ସହ ପ୍ରୟୋଗ କଲେ ଏବଂ ଅନ୍ୟ ପ୍ରଣାଳୀମାନଙ୍କ ସହିତ ସାହାଯ୍ୟକାରୀ ବା ସପୂରକ ବିଧିରୂପେ ପ୍ରୟୋଗ କଲେ ଉପଯୁକ୍ତ ଫଳ ମିଳିଥାଏ ।

## ପ୍ରୟୋଗାତ୍ମକ ବିଧି

ଉଇଲିୟମ ଉଣ୍ଡ ୧୮୭୯ ଖ୍ରୀ. ଅ.ରେ ସର୍ବପ୍ରଥମେ ପ୍ରୟୋଗାତ୍ମକ ବିଧି ପ୍ରୟୋଗ କରିଥିଲେ । ଏହାକୁ ଆତ୍ମକଥା ବିଧିରେ ଏକ ଉନ୍ନତ ଏବଂ ମାର୍ଜିତ ରୂପ ବୋଲି କୁହାଯାଇପାରେ । ଶିଶୁର ବିଭିନ୍ନ କ୍ରିୟାକଳାପ ଅଧ୍ୟୟନ କରିବାପାଇଁ ଏହା ସର୍ବୋତ୍କୃଷ୍ଟ ବିଧି ଅଟେ । ଏହି ବିଧିରେ ପ୍ରୟୋଗକାରୀ ପରିବେଶକୁ ନିୟନ୍ତ୍ରଣ କରିବାପାଇଁ ସକ୍ରିୟ ଅଂଶ ଗ୍ରହଣ କରେ । ପରିବେଶକୁ ନିୟନ୍ତ୍ରଣ କରି ଏକ ସମୟରେ ଦଳ ଦଳ ଶିଶୁଙ୍କର ବିଭିନ୍ନ କ୍ରିୟାକଳାପ ବୈଜ୍ଞାନିକ ପଦ୍ଧତିରେ ପରୀକ୍ଷାଶାଳାରେ ପର୍ଯ୍ୟବେକ୍ଷଣ କରି ଲିପିବଦ୍ଧ କରାଯାଏ । ଏହି ବିଧିରେ ଅନ୍ୟ ସମସ୍ତ ପରିବର୍ତ୍ତୀଙ୍କୁ ନିୟନ୍ତ୍ରିତ କରି କେବଳ ସ୍ୱାଧୀନ ପରିବର୍ତ୍ତୀର ପ୍ରଭାବ ବିଷୟୀର କ୍ରିୟାକଳାପ ଉପରେ ଲକ୍ଷ୍ୟ କରାଯାଏ । ଉଦାହରଣ ସ୍ୱରୂପ, ୧୦ ବର୍ଷ ବୟସର ସମସାମାଜିକ ଆର୍ଥିକ ସ୍ଥିତିର ୫୦୦ ଜଣ ବାଳକ ୫୦୦ ଜଣ ବାଳିକାଙ୍କୁ ନେଇ ସେମାନଙ୍କର ଧୀଶକ୍ତି ପରୀକ୍ଷା କରାଗଲା । ଏଠାରେ ସମସ୍ତ ପରିବର୍ତ୍ତୀଗୁଡ଼ିକୁ ନିୟନ୍ତ୍ରଣ କରାଯାଇ କେବଳ ଲିଙ୍ଗକୁ ସ୍ୱାଧୀନ ପରିବର୍ତ୍ତୀ (independent variable) ହିସାବରେ ରଖାଯାଇ ଧୀଶକ୍ତି ଉପରେ ଲିଙ୍ଗର କୌଣସି ପ୍ରଭାବ ଅଛି କି ନାହିଁ ଅଧ୍ୟୟନ କରାଗଲା ।

## ୱାଟ୍‌ସନ୍‌ଙ୍କ ପରୀକ୍ଷା

ପ୍ରଥମଥର ପାଇଁ ଆମେରିକାରେ ଜେ. ବି. ୱାଟ୍‌ସନ୍ ପ୍ରୟୋଗାତ୍ମକ ବିଧିରେ ଶିଶୁର ଆବେଗ ଅଧ୍ୟୟନ କରିଥିଲେ । ଏହି ପଦ୍ଧତିରେ ଆଲ୍‌ବର୍ଟ ନାମକ ଶିଶୁଠାରେ ସେ ଭୟ

ଉଦ୍ରେକ କରାଇପାରିଥିଲେ । ଆଲବର୍ଟ ପାଖରେ ଗୋଟିଏ ଧଳା ଠେକୁଆ ଆଣି ରଖାଗଲା । ଉଚ୍ଚ ଶବ୍ଦକୁ ପିଲମାନେ ଭୟ କରୁଥିବାରୁ ଯେତେବେଳେ ସେ ଠେକୁଆକୁ ଧରିବାକୁ ଉଦ୍ୟତ ହେଲା, ଖୁବ୍ ଜୋର୍‌ରେ ପଛରୁ ଶବ୍ଦ କରାଗଲା । ଯେତେଥର ଆଲବର୍ଟ ଧଳା ଠେକୁଆକୁ ଧରିବାକୁ ଉଦ୍ୟତ ହେଲା, ସେତେଥର ପଛରୁ ଖୁବ୍ ଜୋର୍‌ରେ ଶବ୍ଦ କରାଗଲା । କିଛିଥର ଏହିପରି କରିବାପରେ ଦେଖାଗଲା ଯେ, ଆଲବର୍ଟ ଧଳା ଠେକୁଆର ଉପସ୍ଥିତି ସହିତ ଉଚ୍ଚ ଶବ୍ଦକୁ ସମ୍ବନ୍ଧିତ କରି ଧଳା ଠେକୁଆ ଦେଖିବା ମାତ୍ରେ ଉଚ୍ଚଶବ୍ଦ ଶୁଣିବାର ଆଶଙ୍କା କରି ଠେକୁଆପ୍ରତି ଭୟ ପ୍ରଦର୍ଶନ କରିବାକୁ ଆରମ୍ଭ କଲା । ପ୍ରକୃତରେ ସେ ଆରମ୍ଭରେ ଠେକୁଆକୁ ଡରୁନଥିଲା । କେବଳ ଉଚ୍ଚ ଶବ୍ଦକୁ ଡରୁଥିଲା । କିନ୍ତୁ ବର୍ତ୍ତମାନ ଉଚ୍ଚ ଶବ୍ଦ ମାଧ୍ୟମରେ ଠେକୁଆ ପ୍ରତି ଭୟ ତା ମନରେ ଜାତ କରାଯାଇପାରିଲା ।

ପ୍ରୟୋଗାତ୍ମକ ବିଧିର କୃତ୍ରିମତା ଦୂର କରିବା ପାଇଁ ଗେସେଲ ଏକମୁଖୀ ଦର୍ଶନ ପରଦା ଓ ଚଳଚ୍ଚିତ୍ର ଫଟୋ କ୍ୟାମେରା ବ୍ୟବହାର କରି ଶିଶୁର ସ୍ୱାଭାବିକ କ୍ରିୟାକଳାପ ଲକ୍ଷ୍ୟ କରିବାପାଇଁ ଚେଷ୍ଟା କରିଥିଲେ । ଏହାଛଡ଼ା ପ୍ରାଟ୍, ନେଲସନ୍ ଓ ସନ୍ (୧୯୩୦) ଶିଶୁର ବ୍ୟବହାର ପର୍ଯ୍ୟବେକ୍ଷଣ କରିବାପାଇଁ Isolation Cabinet ନିର୍ମାଣ କରିଥିଲେ । ଏହି ଯନ୍ତ୍ରରେ ଉତ୍ତାପ, ଆଲୋକ ଓ ଶବ୍ଦକୁ ଆବଶ୍ୟକତା ଅନୁସାରେ ନିୟନ୍ତ୍ରିତ କରାଯାଇଥାଏ ।

### ଗୁଣ

ନିୟନ୍ତ୍ରିତ ସ୍ଥିତିରେ ଦଳ ଦଳ ଶିଶୁଙ୍କୁ ଏକ ସମୟରେ ପରୀକ୍ଷଣ କରାଯାଉଥିବାରୁ ଅଳ୍ପକାଳ ମଧ୍ୟରେ ବହୁ ତଥ୍ୟ ସଂଗୃହୀତ କରାଯାଇଥାଏ । ଏହି ବିଧିରେ ଶିଶୁକୁ ଅଧ୍ୟୟନ କଲେ ଆତ୍ମନିଷ୍ଠ ଉପାଦାନ ପ୍ରାପ୍ତ ହୁଏନାହିଁ । ପରିବେଷ୍ଟନୀର ବିଭିନ୍ନ ପରବର୍ତ୍ତୀଗୁଡ଼ିକୁ ଆବଶ୍ୟକ ଅନୁସାରେ ନିୟନ୍ତ୍ରଣ କରାଯାଇଥାଏ । ଶିଶୁର ବ୍ୟବହାରକୁ ଯନ୍ତ୍ର ସାହାଯ୍ୟରେ ଅଧ୍ୟୟନ କରାଯାଇ ଯାନ୍ତ୍ରିକ ଉପାୟରେ ଫଳାଫଳ ଲିପିବଦ୍ଧ କରାଯାଏ । ଫଳରେ ଉପାତ୍ତ ପ୍ରମାଦଶୂନ୍ୟ ଓ ନିର୍ଭୁଲ ହୁଏ ଓ ସ୍ମରଣ ଭ୍ରମ ହେବାର ସମ୍ଭାବନା ନ ଥାଏ ।

ଏକମୁଖୀ ଦର୍ଶନ ପରଦା, ଗତିଶୀଳ କାମେରା ଓ Isolation Cabinet ସାହାଯ୍ୟରେ ଶିଶୁର ସ୍ୱାଭାବିକ ଗତିବିଧି ଲକ୍ଷ୍ୟ କରାଯାଏ । ଉପାତ୍ତ ଲିପିବଦ୍ଧ ହେଉଥିବାରୁ ଦରକାର ପଡ଼ିଲେ ଗୋଟିଏ ପରୀକ୍ଷଣକୁ ବାରମ୍ବାର ତାର ବୈଧତା ପରୀକ୍ଷା କରାଯାଏ ।

ମୋଟ ଉପରେ ସଂପରୀକ୍ଷା ପ୍ରଣାଳୀରେ ସଂଗୃହୀତ ତଥ୍ୟ ଅପେକ୍ଷାକୃତ ବିଶ୍ୱାସଯୋଗ୍ୟ, ବୈଧ ଓ ବସ୍ତୁନିଷ୍ଠ ହୋଇଥାଏ ।

### ତ୍ରୁଟି

ପ୍ରୟୋଗଶାଳାର କୃତ୍ରିମ ବାୟୁମଣ୍ଡଳରେ ସଂପରୀକ୍ଷା ଓ ପର୍ଯ୍ୟବେକ୍ଷଣ କାର୍ଯ୍ୟ ହେଉଥିବାରୁ ଶିଶୁର କ୍ରିୟାକଳାପରେ କୃତ୍ରିମତା ଲକ୍ଷ୍ୟ କରାଯାଏ । ଏକମୁଖୀ ଦର୍ଶନ

ପରଦା, ପୃଥକ୍ କକ୍ଷ ଏବଂ ଗତିଶୀଳ କ୍ୟାମେରା ପ୍ରଭୃତିର ସାହାଯ୍ୟ ନେଇ ମଧ୍ୟ ଏହି କୃତ୍ରିମତା ସମ୍ପୂର୍ଣ୍ଣରୂପେ ଦୂରୀଭୂତ ହୁଏନାହିଁ । ନବଜାତ ଶିଶୁମାନଙ୍କର କ୍ରିୟାକଳାପ ପ୍ରୟୋଗଶାଳାର ନୀତି ନିୟମ ଅନୁସାରେ ପର୍ଯ୍ୟବେକ୍ଷଣ କରିବା ସମ୍ଭବପର ହୁଏ ନାହିଁ । ଉପରୋକ୍ତ ତ୍ରୁଟିଗୁଡିକ ସତ୍ତ୍ୱେ ସମସ୍ତ ପଦ୍ଧତିମାନଙ୍କ ମଧ୍ୟରେ ପ୍ରୟୋଗାତ୍ମକ ବିଧି ସର୍ବୋତ୍କୃଷ୍ଟ ଅଟେ ।

## ପ୍ରଶ୍ନାବଳୀ ବିଧି

ଆମେରିକାର ବିଖ୍ୟାତ ମନୋବୈଜ୍ଞାନିକ G. Stanley Hall ଦଳଗତ ଭାବରେ ଶିଶୁମାନଙ୍କର ବିକାଶ ଅଧ୍ୟୟନ କରିବାକୁ ପ୍ରଶ୍ନାବଳୀ ବିଧିର ପ୍ରବର୍ତ୍ତନ କରିଥିଲେ । ଏହି ବିଧି ସାହାଯ୍ୟରେ ଶିଶୁର ବିଭିନ୍ନ କ୍ରିୟାକଳାପ, ସ୍ୱଭାବ, ତଥା ବ୍ୟକ୍ତିତ୍ୱର ଲକ୍ଷଣ ସମ୍ବନ୍ଧରେ ତଥ୍ୟ ସଂଗ୍ରହ କରିବା ପାଇଁ କେତେଗୁଡ଼ିଏ ପ୍ରଶ୍ନ ଗଠନ କରାଯାଇଥାଏ ।

ପ୍ରଶ୍ନାବଳୀ ବିଧିରେ ଏକ ବୟସର ସମ ଆର୍ଥିକ ସାମାଜିକ ସ୍ଥିତିର ବାଳକ ବାଳିକାଙ୍କର ବ୍ୟକ୍ତିତ୍ୱର ବିଭିନ୍ନ ଲକ୍ଷଣ, ଆଗ୍ରହ ବ୍ୟବହାର ତଥା ସ୍ୱଭାବ ପ୍ରଭୃତି ସମ୍ବନ୍ଧରେ ତଥ୍ୟ ସଂଗ୍ରହ କରାଯାଏ । ବିଭିନ୍ନ ବୟସର ବାଳକ ବାଳିକାମାନଙ୍କ ପାଇଁ ପ୍ରଶ୍ନ ଗଠନ କଲାବେଳେ ସେମାନଙ୍କର ସଂସ୍କୃତି, ପରିବେଶ, ଆର୍ଥିକ ଓ ସାମାଜିକ ସ୍ଥିତି ପ୍ରତି ଦୃଷ୍ଟି ରଖି ପ୍ରଶ୍ନଗୁଡିକ ଗଠନ କରାଯାଏ ।

ଅଳ୍ପ ଖର୍ଚ୍ଚରେ ଓ ସ୍ୱଳ୍ପ ସମୟ ମଧ୍ୟରେ ପ୍ରଶ୍ନାବଳୀ ବିଧି ସାହାଯ୍ୟରେ ଶିଶୁର ବିକାଶ ସମ୍ବନ୍ଧରେ ବହୁ ପରିମାଣରେ ଉପାତ୍ତ ସଂଗ୍ରହ କରାଯାଇପାରେ । ପର୍ଯ୍ୟାପ୍ତ ଉପାତ୍ତ ଉପରେ ସିଦ୍ଧାନ୍ତଗୁଡ଼ିକ ପର୍ଯ୍ୟବସିତ ହୋଇଥିବାରୁ ଫଳାଫଳ ବିଶ୍ୱାସଯୋଗ୍ୟ ଓ ବୈଧ ହେବାର ଯଥେଷ୍ଟ ସମ୍ଭାବନା ଥାଏ । ଅଧିକ ଅନୁସନ୍ଧାନ ଚଳାଇବା ପାଇଁ ପ୍ରଶ୍ନାବଳୀ ବିଧି ବହୁ ମୂଲ୍ୟବାନ ତଥ୍ୟ ଯୋଗାଇଥାଏ । ଏହି ପଦ୍ଧତି ମାଧ୍ୟମରେ ପିଲାର ଘନିଷ୍ଠ ସମ୍ପର୍କରେ ଆସୁଥିବା ବ୍ୟକ୍ତିମାନଙ୍କଠାରୁ ପିଲା ସମ୍ବନ୍ଧରେ ବିଭିନ୍ନ ତଥ୍ୟ ସଂଗ୍ରହ କରାଯାଏ । ପ୍ରାପ୍ତ ତଥ୍ୟରୁ ହାରାହାରି ଫଳାଫଳ ପରିସଂଖ୍ୟାନ ପଦ୍ଧତିରେ ଗଣନା କରାଯାଏ, ପରିମାଣାତ୍ମକ ରୂପରେ ଫଳାଫଳକୁ ପ୍ରକାଶ କରାଯାଉଥିବାରୁ ତାହା ଅଧିକ ସଠିକ୍ ଓ ନିର୍ଭରଯୋଗ୍ୟ ହୋଇଥାଏ ।

## ତ୍ରୁଟି

ଏହି ପଦ୍ଧତି ସାହାଯ୍ୟରେ ପ୍ରାପ୍ତ ଫଳାଫଳର ବୈଧତା ପିଲାର ସତ୍ୟବାଦିତା ଓ ସାଧୁତା ଉପରେ ନିର୍ଭର କରେ । ଉପଯୁକ୍ତ ପ୍ରଶିକ୍ଷଣ ପାଇନଥିବା ବ୍ୟକ୍ତିମାନେ ପ୍ରଶ୍ନ ଗଠନ କରି ଉପାତ୍ତ ସଂଗ୍ରହ କଲେ ଫଳାଫଳରେ ତ୍ରୁଟି ପରିଲକ୍ଷିତ ହୁଏ । ଏହି ପ୍ରାପ୍ତ ତଥ୍ୟ ଅନେକ ସମୟରେ ଗୋଳମାଳିଆ ଓ ତ୍ରୁଟିପୂର୍ଣ୍ଣ ଥିବାର ମନେହୁଏ । ପ୍ରଶ୍ନଗୁଡ଼ିକ ପିଲା ବୁଝିନପାରିଲେ ସେଗୁଡ଼ିକ ଛାଡ଼ିଦିଏ ବା ଭୁଲ ଉତ୍ତର ଦେବାର ସମ୍ଭାବନା ଥାଏ । ପ୍ରଶ୍ନକର୍ତ୍ତାଙ୍କ ସହିତ ପିଲାର ଘନିଷ୍ଠ ପରିଚୟ ନଥିଲେ ବା ପିଲା ତାଙ୍କୁ ଭୟ କରୁଥିଲେ ସଠିକ୍

ଉତ୍ତର ଦେଇପାରେ ନାହିଁ । ପିଲାର ଉତ୍ତରଗୁଡ଼ିକ ମିଥ୍ୟା ବା ଅମୂଳକ ହେବାର ଆଶଙ୍କା ଥାଏ, ଏବଂ ତାର ସତ୍ୟତା ପରୀକ୍ଷା କରିବା ପାଇଁ କୌଣସି ପନ୍ଥା ନ ଥାଏ ।

ନିମ୍ନଲିଖିତ ଉପାୟରେ ପ୍ରଶ୍ନାବଳୀ ବିଧିର ଦୋଷତ୍ରୁଟିକୁ କେତେକ ପରିମାଣରେ ଦୂର କରିଯାଇପାରେ—

(୧) ପିଲାର ଯୋଗ୍ୟତା, ଶକ୍ତି ଓ ଅଜ୍ଞତାକୁ ଲକ୍ଷ୍ୟ କରି ପ୍ରଶ୍ନ ହୋଇଥିବା ଦରକାର, ଯେପରି କି ତାହା ପିଲା ପକ୍ଷରେ ଅପରିଚିତ ବା କଷ୍ଟକର ହୋଇନଥିବ ।

(୨) ପିଲା ସହିତ ପ୍ରଶ୍ନକର୍ତ୍ତାଙ୍କର ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କ ରହିବା ଆବଶ୍ୟକ; ଯେପରିକି ସେ ତାଙ୍କୁ ଭୟ ବା ଘୃଣା ନ କରେ । ଉପଯୁକ୍ତ ଯୋଗ୍ୟତା ଓ ଅଭିଜ୍ଞତା ଥିବା ବ୍ୟକ୍ତିଙ୍କୁ ପ୍ରଶ୍ନ ଗଠନ କରିବା ପାଇଁ ନିଯୁକ୍ତ ଦେବା ଆବଶ୍ୟକ । ଅନେକଗୁଡ଼ିଏ ପିଲାଙ୍କର ଉତ୍ତରକୁ ପରିସଂଖ୍ୟାନ ପ୍ରଣାଳୀରେ ବିଶ୍ଳେଷଣ କରି ମତାମତ ଦିଆଯିବା ଉଚିତ ।

## ପରୀକ୍ଷଣ ବିଧି

ବିଶିଷ୍ଟ ମନୋବୈଜ୍ଞାନିକ ବିନେଟ ବିଂଶଶତାବ୍ଦୀର ପ୍ରାରମ୍ଭରେ ପରୀକ୍ଷଣ ବିଧି ପ୍ରବର୍ତ୍ତନ କରି ପ୍ରଥମେ ଶିଶୁ ବାଳକ ଓ ବାଳିକାମାନଙ୍କର ପରୀକ୍ଷା କରିଥିଲେ । ଏହି ବିଧି ଅନୁସାରେ ପ୍ରଥମେ ଗୁଡ଼ିଏ ପ୍ରଶ୍ନ ତିଆରି କରିଯାଇ ସମବୟସ୍କ ଅନେକ ଶିଶୁଙ୍କୁ ଉତ୍ତର ଦେବାକୁ ନିର୍ଦ୍ଦେଶ ଦିଆଯାଏ । ସେଥିରୁ ମାନକ (Standard) ପ୍ରଶ୍ନାବଳୀ ତିଆରି କରିଯାଇ ପିଲାମାନଙ୍କୁ ଉତ୍ତର କରିବାକୁ ଦିଆଯାଏ । ପ୍ରତ୍ୟେକ ବୟସ ପାଇଁ ଭିନ୍ନ ଭିନ୍ନ ପ୍ରଶ୍ନାବଳୀ ଥାଏ । ପ୍ରଶ୍ନଗୁଡ଼ିକ ସରଳରୁ ଜଟିଳ ହୋଇଥାଏ । ପ୍ରଶ୍ନର ଠିକ୍ ଠିକ୍ ଉତ୍ତର ବଛାଯାଇ ପରିସଂଖ୍ୟାନ ପ୍ରଣାଳୀରେ ହିସାବ ଓ ଗଣନା ଇତ୍ୟାଦି କରିଯାଇ ପିଲାର ବୁଦ୍ଧି, ସ୍ମରଣ ଶକ୍ତି ଓ ଚିନ୍ତନ ଶକ୍ତି ଇତ୍ୟାଦି ସମ୍ବନ୍ଧରେ ବିଭିନ୍ନ ତଥ୍ୟ ସଂଗ୍ରହ କରିଯାଏ । ପରୀକ୍ଷଣଦ୍ୱାରା ପିଲାର ବିଭିନ୍ନ ଶକ୍ତି ଓ ଯୋଗ୍ୟତା, ଆଗ୍ରହ ଓ ରୁଚିର ପରୀକ୍ଷା କରିଯାଇ ଭବିଷ୍ୟତ ଜୀବନରେ କେଉଁ ବୃତ୍ତି ଗ୍ରହଣ କଲେ ସେ ଉନ୍ନତି କରିପାରିବ, ସେ ସମ୍ବନ୍ଧରେ ଉପଦେଶ ଦିଆଯାଏ । କିନ୍ତୁ ଏହି ପ୍ରଣାଳୀରେ ବିଭିନ୍ନ ପରିବର୍ତ୍ତୀଗୁଡ଼ିକୁ କୃତ୍ରିମ ଉପାୟରେ ନିୟନ୍ତ୍ରଣ କରିବାଦ୍ୱାରା ପିଲା ମନରେ ଅସ୍ୱାଭାବିକ ଆବେଗିକ ପ୍ରତିକ୍ରିୟା ଜାତ ହୋଇପାରେ ଏବଂ ପିଲା ସ୍ୱାଭାବିକ ଉତ୍ତର ଦେଇପାରେ ନାହିଁ । ପରିଣାମରେ ଉପାତ୍ତର ସଠିକତା ଅନେକାଂଶରେ ହ୍ରାସ ପାଇବାର ସମ୍ଭାବନା ଥାଏ ।

## ସାକ୍ଷାତକାର ବିଧି

ଏହି ବିଧି ଅନୁସାରେ ସାକ୍ଷାତକାର ମାଧ୍ୟମରେ ପିଲାମାନଙ୍କଠାରୁ ବିଭିନ୍ନ ତଥ୍ୟ ସଂଗ୍ରହ କରିଯାଏ ଓ ସାକ୍ଷାତକାର ପରିଚାଳନା କରୁଥିବା ବ୍ୟକ୍ତିଙ୍କ ମଧ୍ୟରେ ପ୍ରତ୍ୟକ୍ଷ କଥାବାର୍ତ୍ତା ହେଉଥିବାରୁ ଏହି ବିଧି ଅଧିକ ବ୍ୟକ୍ତିଗତ ଅଟେ ଓ ପିଲାର ବ୍ୟକ୍ତିଗତ ଜୀବନ

ତଥା ଅଭିଜ୍ଞତା ସମ୍ବନ୍ଧରେ କିଛି ଜାଣିବାପାଇଁ ଏହା ଏକ ଉତ୍କୃଷ୍ଟ ବିଧି ଅଟେ । ଏଥିରେ ଆତ୍ମନିଷ୍ଠତା ଓ ପକ୍ଷପାତିତା ପ୍ରବୃତ୍ତିର ସମ୍ଭାବନା ଥାଏ ।

ନୈଦାନିକ ବିଧି

ଅସ୍ୱାଭାବିକ, ଅସାମାଜିକ ଓ ସମସ୍ୟାତ୍ମକ ଶିଶୁମାନଙ୍କର ବ୍ୟକ୍ତିତ୍ୱ ପରୀକ୍ଷା କରି ସେମାନଙ୍କର ବିକାଶ ସମ୍ବନ୍ଧରେ ଜାଣିବା ପାଇଁ ଏହା ଏକ ଉତ୍କୃଷ୍ଟ ପଦ୍ଧତି ଅଟେ । ୧୮୯୬ ଖ୍ରୀ. ଅ.ରେ ସର୍ବପ୍ରଥମେ ଉଇଟ୍‌ମର ସମସ୍ୟା ଶିଶୁ ଓ ବାଳକମାନଙ୍କର ଚିକିତ୍ସା ପାଇଁ ପ୍ରଥମ ନିଦାନାଗାର ପ୍ରତିଷ୍ଠା କରିଥିଲେ । ଏହି ନିଦାନାଗାରରେ ସମସ୍ୟା ଶିଶୁ ଓ ଅସ୍ୱାଭାବିକ ଶିଶୁମାନଙ୍କର ବିଭିନ୍ନ ପର୍ଯ୍ୟବେକ୍ଷଣ କରାଯାଏ । ସେହିସବୁ ପ୍ରକ୍ରିୟା ପର୍ଯ୍ୟବେକ୍ଷଣ କଲା ପରେ ମାନସିକ ରୋଗ ବା ସମସ୍ୟାର କାରଣ ସହଜରେ ଜାଣିହୁଏ । ବାଳକର ବାଲ୍ୟାବସ୍ଥାରେ ବିଭିନ୍ନ ଅଭିଜ୍ଞତା; ପରିବାରର ସାମାଜିକ ଓ ଅର୍ଥନୈତିକ ସ୍ଥିତି ସମ୍ବନ୍ଧରେ ତଥ୍ୟ ସଂଗ୍ରହ କରାଯାଇ ନିଦାନାଗାରରେ ବିଶ୍ଳେଷଣ କରାଯାଏ । ସମସ୍ୟାଗୁଡ଼ିକର ପ୍ରକୃତ କାରଣ ଜାଣିଲା ପରେ ସମାଧାନ କରିବାପାଇଁ ଉପାୟ ବତାଯାଏ । ଅସାଧାରଣ ବା ଅସାମାନ୍ୟ ବାଳକ ବାଳିକାମାନଙ୍କ ଉପରେ ଏହି ପଦ୍ଧତି ଅଧିକ ପ୍ରୟୋଗ କରାଗଲେ ମଧ୍ୟ ସାଧାରଣ ବାଳକ ବାଳିକାମାନଙ୍କ ପାଇଁ ଏହାର ବ୍ୟବହାର ଓ ପ୍ରୟୋଗ ଲାଭଦାୟକ ହୋଇଥାଏ ।

ପ୍ରକ୍ଷେପ ବିଧି

ଏହି ପଦ୍ଧତି ସାହାଯ୍ୟରେ ଶିଶୁର ଅବଚେତନ ମନର ଗୂଢ଼ ତଥ୍ୟ ସବୁ ଜାଣିହୁଏ । ବିଭିନ୍ନ ଛବି ଦେଖାଇ ପିଲାକୁ ଗଳ୍ପ କହିବାକୁ କୁହାଯାଏ । ଏହି ଗଳ୍ପ ମାଧ୍ୟମରେ ପିଲା ଅଜାଣତରେ ତାର ଅବଚେତନ ମନର ଗୂଢ଼ ତଥ୍ୟ ପ୍ରକାଶ କରିଦିଏ । କଣ୍ଢେଇ ଗଢ଼ିବା, ଖେଳନା ତିଆରି କରିବା, ଚିତ୍ର ଆଙ୍କିବା କାର୍ଯ୍ୟରୁ ମଧ୍ୟ ଶିଶୁ ମନର ପରିଚୟ ମିଳେ । ଶିଶୁର ବ୍ୟକ୍ତିତ୍ୱର ଗୂଢ଼ ତଥ୍ୟ, ଅଜ୍ଞାତ ଇଚ୍ଛା, ଆକାଂକ୍ଷା, ହତାଶା ଏବଂ କାମନା ସମ୍ପର୍କରେ ବିଭିନ୍ନ ତଥ୍ୟ ଏହି ପଦ୍ଧତିରୁ ମିଳିଥାଏ ।

ଅନୁସରଣ ବିଧି

କୌଣସି ଅସମଞ୍ଜିତ ବା ବିକୃତ ମାନସିକ ଅବସ୍ଥାସମ୍ପନ୍ନ ପିଲାଙ୍କୁ ଚିକିତ୍ସା କରି, ଆରୋଗ୍ୟ କରିବା ପରେ ରୋଗର ପୁନଃପତନ ବା ପ୍ରତ୍ୟାବର୍ତ୍ତନ (relapse) ହେଉଛି କି ନାହିଁ, ରୋଗ ସମ୍ପୂର୍ଣ୍ଣ ରୂପେ ଭଲ ହୋଇଛି କି ନାହିଁ ଇତ୍ୟାଦି ଜାଣିବା ପାଇଁ ଅନୁସରଣ ବିଧି ପ୍ରୟୋଗ କରାଯାଏ । ଅନୁସରଣ ବିଧି ଅତ୍ୟନ୍ତ ଦରକାରୀ, ମୂଲ୍ୟବାନ ଓ ଗୁରୁତ୍ୱପୂର୍ଣ୍ଣ ଅଟେ ଏବଂ ପ୍ରତ୍ୟେକ ବିଜ୍ଞାନରେ ବିଧି ରୂପେ ବ୍ୟବହାର କରାଯିବା ଉଚିତ ।

ପରିସଂଖ୍ୟାନ ବିଧି

ଶିଶୁର ବିକାଶ ଓ କ୍ରିୟାକଳାପ ଅଧ୍ୟୟନ କଲାବେଳେ ସଠିକ ଗଣନା ଓ ଫଳାଫଳ ନିମନ୍ତେ ଯେକୌଣସି ବିଧି ସହିତ ପରିସଂଖ୍ୟାନ ବିଧି ମଧ୍ୟ ପ୍ରୟୋଗ କରାଯାଏ । ଫଳାଫଳ-

ଗୁଡ଼ିକ ପରିମାଣାତ୍ମକ ରୂପରେ ପ୍ରକାଶ କରି ବସ୍ତୁନିଷ୍ଠ କରିବାପାଇଁ ଏବଂ ପର୍ଯ୍ୟବେକ୍ଷଣରୁ ସଠିକ ଫଳାଫଳ ପାଇବା ପାଇଁ ପରିସଂଖ୍ୟାନ ପଦ୍ଧତିର ସହାୟତା ଅପରିହାର୍ଯ୍ୟ ଅଟେ ।

ପିଲାମାନଙ୍କର ମାନସିକ ବିକାଶ ଅଧ୍ୟୟନ କରିବା ପାଇଁ ଆଲୋଚ୍ୟ ବିଧିମାନଙ୍କ ମଧ୍ୟରୁ କୌଣସି ଗୋଟିଏ ବିଧି ସବୁ ବୟସର ଓ ସବୁ ରକମର ବ୍ୟବହାର ଦେଖାଉଥିବା ବ୍ୟକ୍ତିମାନଙ୍କ ପାଇଁ ଉପଯୁକ୍ତ ନୁହେଁ । ଉଦାହରଣ ସ୍ୱରୂପ, ଯେଉଁ ପିଲାମାନେ ଭାବକୁ ଭାଷାରେ ପ୍ରକାଶ କରିବାକୁ ଅସମର୍ଥ, ତାଙ୍କର ବିକାଶ ଅଧ୍ୟୟନ କରିବା ପାଇଁ ଗୋଟିଏ ବିଧି ପ୍ରୟୋଗ କଲାବେଳେ ଯେଉଁମାନଙ୍କର ଭାଷା ଉନ୍ନତ, ସେମାନଙ୍କ ପାଇଁ ଅନ୍ୟ ଗୋଟିଏ ବିଧି ପ୍ରୟୋଗ କରାଯାଏ । ସେହିପରି ଲେଖାପଢ଼ା ଜାଣିନଥିବା ବାଳକ ବାଳିକାଙ୍କ ପାଇଁ ଆଉ ଗୋଟିଏ ପଦ୍ଧତିର ପ୍ରୟୋଜନ ହୁଏ । ଏହି ସବୁ ବାଧାବିଘ୍ନ ଏବଂ ଅସୁବିଧା ହେତୁ ଶିଶୁ ମନୋବିଜ୍ଞାନ ଗବେଷଣା କ୍ଷେତ୍ରରେ ବିଶେଷ ପ୍ରଗତି ଲାଭ କରିପାରିନାହିଁ ।

## ବିକାଶର ବିଭିନ୍ନ ପର୍ଯ୍ୟାୟ

( Stages of Child Development )

Infancy — ଶୈଶବାବସ୍ଥା—ଜନ୍ମଠାରୁ ୬ ବର୍ଷ

Child-hood—ବାଲ୍ୟାବସ୍ଥା—୬ ବର୍ଷରୁ ୧୨ ବର୍ଷ

Adolescence—କୈଶୋରାବସ୍ଥା—୧୨ ବର୍ଷରୁ ୧୬ ବର୍ଷ

### ବିକାଶର ବିଭିନ୍ନ ପର୍ଯ୍ୟାୟ

ଭ୍ରୂଣାବସ୍ଥାଠାରୁ ପୂର୍ଣ୍ଣ ପରିପକ୍ୱତା ଲାଭ କରିବା ପର୍ଯ୍ୟନ୍ତ ମାନବର ବିକାଶ ଅବିରାମ ଗତିରେ ଚାଲିଥାଏ । ଅଧ୍ୟୟନର ସୁବିଧା ପାଇଁ ଏହି ବିକାଶକୁ ବିଭିନ୍ନ ଅବସ୍ଥା ବା ପର୍ଯ୍ୟାୟଭୁକ୍ତ କରାଯାଇପାରେ । କିନ୍ତୁ ପ୍ରତ୍ୟେକ ଅବସ୍ଥାର ପରବର୍ତ୍ତୀ ଅବସ୍ଥା ସହିତ ସମ୍ପର୍କ ଥାଏ ଏବଂ ଏକ ଅବସ୍ଥାକୁ ଅନ୍ୟ ଅବସ୍ଥାଠାରୁ ସମ୍ପୂର୍ଣ୍ଣ ପୃଥକ କରିବା ଅସମ୍ଭବ ।

ବ୍ୟକ୍ତିଗତ ଭିନ୍ନତା ସତ୍ତ୍ୱେ ବିକାଶର ବିଭିନ୍ନ ପର୍ଯ୍ୟାୟରେ ସମୟ ସୀମା ସ୍ଥୂଳତଃ ପୂର୍ବରୁ ଅନୁମାନ କରାଯାଇପାରେ । କିନ୍ତୁ କୌଣସି କୌଣସି କ୍ଷେତ୍ରରେ ଏହି ସମୟ ସୀମାରେ ପରିବର୍ତ୍ତନ ଓ ପାର୍ଥକ୍ୟ ରହିବାର ସମ୍ଭାବନା ଥାଏ । ଜନ୍ମ ପରଠାରୁ

ଯୌବନାବସ୍ଥା ପ୍ରାପ୍ତି କଲା ପର୍ଯ୍ୟନ୍ତ, ଶିଶୁର ବିକାଶକୁ ୩ଟି ମୁଖ୍ୟ ପର୍ଯ୍ୟାୟରେ ବିଭକ୍ତ କରିଯାଇପାରେ —

୧-ଶୈଶବାବସ୍ଥା, ୨-ବାଲ୍ୟାବସ୍ଥା, ୩-ତରୁଣାବସ୍ଥା ।

**୧ — ଶୈଶବାବସ୍ଥା**

ଏହାକୁ ଦୁଇ ଭାଗରେ ବିଭକ୍ତ କରିଯାଇପାରେ । (କ) ନବଜାତ ଶିଶୁର ଅବସ୍ଥା, (ଖ) ଶୈଶବାବସ୍ଥା ।

କ— ଏହି ଅବସ୍ଥାକୁ ମାନବର ଅନଭିବୃଦ୍ଧି ଅବସ୍ଥା ଆଖ୍ୟା ଦିଆଯାଇପାରେ । ଏହି ଅବସ୍ଥାରେ ଶିଶୁ ମାତୃଗର୍ଭର ଉଷ୍ଣତା ହରାଇ ନୂତନ ପରିସ୍ଥିତି, ନୂତନ ବାୟୁମଣ୍ଡଳ ଓ ପରିବେଶ ସହିତ ନିଜକୁ ଉପଯୋଜନ କରୁଥିବାରୁ ତାର କୌଣସି ବୃଦ୍ଧି ବା ବିକାଶ ହୁଏ ନାହିଁ । କିନ୍ତୁ ସେ ନିଜକୁ ଉପଯୋଜନ କରି କିଛି ପରିମାଣରେ ଆତ୍ମନିର୍ଭରଶୀଳ ହୋଇ ସାରିଲା ପରେ ପୁନଶ୍ଚ ତାର ବିକାଶ ଆରମ୍ଭ ହୁଏ । ଏହି ଅବସ୍ଥା ପ୍ରାୟ ୧୪-୧୫ ଦିନ ପର୍ଯ୍ୟନ୍ତ ସ୍ଥାୟୀ ରହେ । ୧୪-୧୫ ଦିନଠାରୁ ୨ ବର୍ଷ ମଧ୍ୟରେ ଶିଶୁର ଶାରୀରିକ ବିକାଶ କ୍ଷିପ୍ର ଗତିରେ ହୁଏ । ଏହି ସମୟକୁ ମଧ୍ୟ ଶିଶୁର ଅସହାୟ ଅବସ୍ଥା ରୂପେ ଆଖ୍ୟା ଦିଆଯାଇ ଥାଏ । କାରଣ ନିଜର ଜୀବନ ଧାରଣ ପାଇଁ, ଆବଶ୍ୟକତାଗୁଡ଼ିକର ପୂରଣ ନିମିତ୍ତ ବିଭିନ୍ନ ବ୍ୟବହାର, କ୍ରିୟାକଳାପ ତଥା କୌଶଳ ଶିକ୍ଷା କରିବା ପାଇଁ ଓ ସାମାଜିକ ଶିକ୍ଷା ପାଇଁ, ମାନବ ଶିଶୁକୁ ଅନ୍ୟମାନଙ୍କ ଉପରେ ନିର୍ଭର କରିବାକୁ ପଡ଼େ । ମଳମୂତ୍ର ତ୍ୟାଗ କରିବା, ସ୍ନାନ କରିବା, ପୋଷାକ ପିନ୍ଧିବା, ଖାଦ୍ୟ ଖାଇବା ଇତ୍ୟାଦି ଦୈନନ୍ଦିନ ଆବଶ୍ୟକତା-ଗୁଡ଼ିକର ପୂରଣ ପାଇଁ ଶିଶୁ ଅନ୍ୟମାନଙ୍କ ଉପରେ ନିର୍ଭର କରିବାକୁ ବାଧ୍ୟ ହୁଏ । କାରଣ ଏସବୁ ନିଜେ କରିବାକୁ ତାର କ୍ଷମତା ନ ଥାଏ ।

ଏହି ସମୟରେ ଶିଶୁର ଅଧିକାଂଶ ଶକ୍ତି ତନ୍ତୁ ଓ ମାଂସପେଶୀ ଗଠନ, ସାମ୍ବେଦିକ ପ୍ରେରକ କ୍ରିୟା କଳାପ, ବିଭିନ୍ନ କୌଶଳ ତଥା କୁଶଳତା ଶିକ୍ଷା କରିବାରେ ଓ ନୂତନ ପଦାର୍ଥ ଖୋଜିବାରେ ଖର୍ଚ୍ଚ ହୋଇଯାଏ । ସେ ଅତ୍ୟଧିକ ଶକ୍ତି ହରାଇ କ୍ଲାନ୍ତ ଓ ଅବସନ୍ନ ହୋଇପଡ଼େ । କାଳକ୍ରମେ ଦ୍ୱିତୀୟ ବର୍ଷରେ ସେ ନିଜର ପେଶୀ ଓ ଶରୀରର ଅଙ୍ଗ ପ୍ରତ୍ୟଙ୍ଗକୁ ସ୍ୱଇଚ୍ଛାରେ ନିୟନ୍ତ୍ରଣ କରିବାକୁ ଶିକ୍ଷା କରେ । ଏହା ଫଳରେ ନିଜର କେତେକ ଦୈନନ୍ଦିନ କାର୍ଯ୍ୟକୁ ସେ ନିଜେ ନିଜେ କରିବାକୁ ଶିକ୍ଷା କରେ । ତାର ସ୍ୱାଧୀନ ମନୋଭାବ ଓ ଆତ୍ମବିଶ୍ୱାସ ବଢ଼େ । ଶିଶୁର ସମସ୍ତ କାର୍ଯ୍ୟ ନିଜେ ନ କରି ତାକୁ କିଛି କରିବାକୁ ସୁଯୋଗ ଦେଲେ ତାର ଆତ୍ମନିର୍ଭରଶୀଳ ମନୋଭାବ ତ୍ୱରାନ୍ୱିତ ହୁଏ ।

ଏହି ଅବସ୍ଥାରେ ତାର ମାନସିକ ବିକାଶରେ ମଧ୍ୟ ଯଥେଷ୍ଟ ଉନ୍ନତି ଦେଖାଦିଏ । ବର୍ତ୍ତମାନ ସେ ସକ୍ରିୟ ଭାବରେ ବିଭିନ୍ନ ବିଷୟ ପ୍ରତି ଧ୍ୟାନ ଦେଇ ମନୋନିବେଶ କରିବାକୁ

ଚେଷ୍ଟା କରେ । ତାରଆଗ୍ରହ ମଧ୍ୟ ଗୋଟିଏ ବସ୍ତୁରେ ସୀମିତ ନ ହୋଇ ବିଭକ୍ତ ହୋଇଯାଏ ଏବଂ ଏହା ଭିନ୍ନ ଭିନ୍ନ ଢଙ୍ଗରେ ପ୍ରକାଶ ପାଏ । ଏହି ପର୍ଯ୍ୟାୟରେ ସେ ସୃଜନାତ୍ମକ ଓ ବାସ୍ତବ ଚିନ୍ତନ କରିବାରେ ସକ୍ଷମ ହୁଏ । ତାର ବିଷୟରେ ଅମୂର୍ତ୍ତ ଚିନ୍ତନ (abstract thinking) ଲକ୍ଷ୍ୟ କରାଯାଏ ନାହିଁ । କାରଣ ଏହାର ପ୍ରୟୋଗ ତା ପକ୍ଷରେ ସମ୍ଭବ ହୁଏ ନାହିଁ ।

## ବାଲ୍ୟାବସ୍ଥା

ଏହା ୬ବର୍ଷ ଠାରୁ ୧୨-୧୩ ବର୍ଷ ପର୍ଯ୍ୟନ୍ତ ରହେ । ବୟଃସନ୍ଧି ଅବସ୍ଥା ଏହି ପର୍ଯ୍ୟାୟର ଅନ୍ତର୍ଭୁକ୍ତ । ଏହି ଅବସ୍ଥାରେ ଶାରୀରିକ ବିକାଶ ମନ୍ଥର ଗତିରେ ହୁଏ ଏବଂ ଏହି ଶକ୍ତି ମାନସିକ ବିକାଶ ଓ ଅନ୍ୟାନ୍ୟ କ୍ରିୟାକଳାପରେ ବ୍ୟବହୃତ ହୁଏ । ଏହି ଅବସ୍ଥାରେ ଶିଶୁ ଅତ୍ୟନ୍ତ ସକ୍ରିୟ ଥାଏ । ବିଭିନ୍ନ ଅଭ୍ୟାସ ଗଠନ, ଭାଷା ବିକାଶ, ଉଚ୍ଚାରଣ, ଶିକ୍ଷା, ପରିଷ୍କାର ପରିଚ୍ଛନ୍ନତାର ଅଭ୍ୟାସ, ପରିବାର ତଥା ସମାଜର ନିୟମ କାନୁନ ଓ ଆଚରଣ ବ୍ୟବହାର ପ୍ରଭୃତି ଶିଶୁ ଶିକ୍ଷା କରେ । ସମାଜ ଓ ସଂସ୍କୃତିର ନିୟମ କାନୁନ ଓ ବିଭିନ୍ନ ମୂଲ୍ୟବୋଧ (values) ଶିକ୍ଷା କରିବା ସଙ୍ଗେ ସଙ୍ଗେ ନିଜର ସମୂହ ବା ଦଳର ଉନ୍ନତି ପାଇଁ ନିଜର ସ୍ୱାର୍ଥ ତ୍ୟାଗ କରିବାକୁ ହୁଏ ତାହା ମଧ୍ୟ ଏହି ପର୍ଯ୍ୟାୟରେ ଶିଶୁ ଜାଣିବାକୁ ପାଏ । ଭଦ୍ରୋଚିତ ବ୍ୟବହାର ଦେଖାଇବା, ବଡ଼ମାନଙ୍କର କଥା ମାନି ଚାଲିବା, ନମ୍ର ଏବଂ ବିନୟୀ ହେବା ମଧ୍ୟ ଶିଶୁ ବାଲ୍ୟାବସ୍ଥାରେ ଶିକ୍ଷା କରିଥାଏ । ପୁରସ୍କାର ଓ ଦଣ୍ଡ ଦେଇ ଶିଶୁକୁ ସାମାଜିକତା ଶିକ୍ଷା ଦେବା ସଙ୍ଗେ ସଙ୍ଗେ ତାର ବିଭିନ୍ନ ବଦଭ୍ୟାସକୁ ତ୍ୟାଗ କରିବା ପାଇଁ ପିତା ମାତା ନିଜର ଆଦର୍ଶ, ଉପଦେଶ ଓ ନିୟନ୍ତ୍ରଣ, ପ୍ରୟୋଗ କରନ୍ତି । କିନ୍ତୁ ଦଣ୍ଡ ଦେବା ଅର୍ଥ ନୁହେଁ, ଶିଶୁକୁ ଅତ୍ୟଧିକ ମାଡ଼ ଦେଇ ଦୈହିକ ପୀଡ଼ା ଦେବା । ଶିଶୁକୁ ଠିକ୍ ବାଟରେ ଆଣିବା ପାଇଁ ଅଳ୍ପ ମାତ୍ରାରେ ଦଣ୍ଡ ପ୍ରୟୋଜନ ହୋଇପାରେ କିନ୍ତୁ ଅତ୍ୟଧିକ ଦଣ୍ଡ ଶିଶୁ ପାଇଁ ବିଷମୟ ପରିସ୍ଥିତି ସୃଷ୍ଟି କରେ ।

ପିତାମାତା ଓ ଅଭିଭାବକଙ୍କ ଶିକ୍ଷା ଓ ଆଦର୍ଶରେ ଅନୁପ୍ରାଣିତ ହୋଇ, ସେମାନଙ୍କ ସହିତ ପାରସ୍ପରିକ କ୍ରିୟାରେ ସମ୍ପୃକ୍ତ ରହି ପିଲା ଯେପରି ସମାଜରେ ଗ୍ରହଣୀୟ ଏବଂ ଆଦୃତ ହେବ, ଯେପରି ପିତା, ମାତା, ପରିବାରର ଅନ୍ୟ ସଦସ୍ୟ ଏବଂ ଶିକ୍ଷକ ତଥା ସାଙ୍ଗସାଥୀ ତାର ବ୍ୟବହାର ଓ କ୍ରିୟାକଳାପକୁ ପସନ୍ଦ କରିବେ, ସେଥିପାଇଁ ସେ ନିଜକୁ ସେମାନଙ୍କର ରୁଚି, ଆଗ୍ରହ ତଥା ଅଭିଳାଷ ଅନୁସାରେ ଉପଯୋଜିତ କରି ସମାଜଦ୍ୱାରା ଗୃହୀତ ଏବଂ ଅନୁମୋଦିତ ଆଚରଣ ବ୍ୟବହାର ଦେଖାଏ ।

ବାଲ୍ୟାବସ୍ଥାରେ ପିଲାର ସାମାଜିକ ଓ ନୈତିକ ବିକାଶ ବିଶେଷ ଭାବରେ ଘଟିଥାଏ । ସେ ଦଳଗତ କାର୍ଯ୍ୟକଳାପ କରିବାରେ ଓ ସାଙ୍ଗସାଥୀମାନଙ୍କ ସହିତ ମିଶିବାରେ ଅଧିକାଂଶ

ସମସ୍ତ କଟାଏ । ଶିକ୍ଷଣ ଓ ପ୍ରଶିକ୍ଷଣ ବିଶେଷ କରି ପ୍ରଯତ୍ନ, ପ୍ରମାଦ, ଶିକ୍ଷଣ ଏବଂ ଅଭ୍ୟାସ ଗଠନ ପ୍ରଣାଳୀରେ ଶିଶୁ ବହୁତ କ୍ରିୟାକଳାପ ଶିକ୍ଷା କରେ ।

## କିଶୋରାବସ୍ଥା ଓ ପ୍ରାରମ୍ଭିକ ଯୌବନାବସ୍ଥା

୧୨ ବର୍ଷଠାରୁ ୧୭ ବର୍ଷ ବୟସ ପର୍ଯ୍ୟନ୍ତ ଏହା ଲାଗି ରହେ । ଏହି ଅବସ୍ଥାରେ ପୁନଶ୍ଚ ଶିଶୁର ବିକାଶ ଅତ୍ୟନ୍ତ କ୍ଷିପ୍ର ଗତିରେ ହୁଏ । ବୃଦ୍ଧି ଓ ବିକାଶ ଦିଗରେ ସମସ୍ତ ଶକ୍ତି ବିନିଯୋଗ ହୋଇଯିବାରୁ ଅନ୍ୟାନ୍ୟ କାର୍ଯ୍ୟ ପାଇଁ ତାର ଶକ୍ତିର ଅଭାବ ପଡ଼େ । ଏହି ଅବସ୍ଥାରେ ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗରେ ପରିବର୍ତ୍ତନ ଦେଖାଦିଏ । ବିଶେଷ କରି ତାର ଯୌନ ଅଙ୍ଗରେ ପରିବର୍ତ୍ତନ ଲକ୍ଷ୍ୟ କରାଯାଏ । ଏହି ଅବସ୍ଥାରେ ବାଳକ ବାଳିକାମାନେ ନିଜର ଦେହର ଓ ପୋଷାକପତ୍ରର ପ୍ରାୟ କୌଣସି ଯତ୍ନ ନିଅନ୍ତି ନାହିଁ । ଅପରିଷ୍କାର ରହନ୍ତି । ନିଜ ବିଷୟରେ ଏଣୁ ତେଣୁ ନାନା ଦୁଶ୍ଚିନ୍ତା କରି ସେମାନଙ୍କର ମନକୁ ଭାରାକ୍ରାନ୍ତ କରିଦିଅନ୍ତି; ଜୀବନଟା ମୂଲ୍ୟହୀନ ଓ ଅଦରକାରୀ ବୋଲି ମନେ କରନ୍ତି । ସେମାନେ ଅତ୍ୟନ୍ତ ଅଭିମାନୀ ହୁଅନ୍ତି ଏବଂ ଆତ୍ମଚେତନ ମନୋଭାବ ଦେଖାନ୍ତି । ଶାରୀରିକ ପରିବର୍ତ୍ତନ ଯୋଗୁଁ ବାଳକ ବାଳିକାମାନଙ୍କଠାରେ ଉପରୋକ୍ତ ମାନସିକ ପରିବର୍ତ୍ତନ ଲକ୍ଷ୍ୟ କରାଯାଏ ।

ଏହି ପର୍ଯ୍ୟାୟରେ ବିଭିନ୍ନ ଆବେଗଗୁଡ଼ିକର ବିକାଶ ପରିପୂର୍ଣ୍ଣତା ଲାଭ କରେ । ଆଗରୁ ଭୟ, କ୍ରୋଧ ଏବଂ ହିଂସା ଓ ଘୃଣା ଯଥେଷ୍ଟ ପରିମାଣରେ ଶିଶୁର କ୍ରିୟାକଳାପକୁ ପ୍ରଭାବିତ କରିଥିଲେ ହେଁ ଅଭିଳାଷ, ଆକାଂକ୍ଷା, ଦୟା, ସହାନୁଭୂତି ଏବଂ କୌତୁହଳ ପ୍ରଭୃତି ଏହି ଅବସ୍ଥାରେ ବାଳକ ମନରେ ପୂର୍ଣ୍ଣ ଭାବରେ ବିକଶିତ ହୁଏ । ବିଭିନ୍ନ ବିଷୟରେ ଜାଣିବାକୁ, ଜ୍ଞାନ ଆହରଣ କରିବାକୁ ବିଭିନ୍ନ ଦ୍ରବ୍ୟ, ବ୍ୟକ୍ତି ତଥା ଘଟଣାବଳୀକୁ ସେ ଭଲ ପାଇବାକୁ ଶିକ୍ଷା କରେ । ପିଲା ଆଉ ଆତ୍ମକେନ୍ଦ୍ରିକ ଏବଂ ଅସାମାଜିକ ମନୋଭାବ ପ୍ରକାଶ ନ କରି ଭିନ୍ନ ଭିନ୍ନ ଦିଗରେ ନିଜର ଆଗ୍ରହକୁ ବିସ୍ତାରିତ କରିବା ସଙ୍ଗେ ସଙ୍ଗେ ସାମାଜିକ ହେବାକୁ ଶିକ୍ଷାକରେ । ପିଲାର ମୂଳ ପ୍ରବୃତ୍ତିଗୁଡ଼ିକୁ ଯଦି ଉପଯୁକ୍ତ ଉପାୟରେ ନିର୍ଦ୍ଦେଶିତ କରି ପୂରଣ କରିବାର ସୁଯୋଗ ଦିଆଯାଏ, ତେବେ ଲାଭଦାୟକ ଫଳାଫଳ ହାସଲ କରାଯାଇପାରେ । ଏହା ଫଳରେ ବାଳକର ବିଚାରଶକ୍ତି ବୃଦ୍ଧି ପାଏ, ଏବଂ ତାର ବିଚାର ଶକ୍ତି ପ୍ରୟୋଗ କରି ନିଜର କ୍ରିୟାକଳାପଗୁଡ଼ିକ କେତେଦୂର କରଣୀୟ ତଥା ଗ୍ରହଣୀୟ ତାହା ସେ ଚିନ୍ତାକରେ । ସେ ମଧ୍ୟ ଅମୂର୍ତ୍ତ ଚିନ୍ତନ (Abstract thinking) ବ୍ୟବହାର କରିବାର ଯୋଗ୍ୟତା ହାସଲ କରେ ।

ଏହି ଅବସ୍ଥାରେ ବିଭିନ୍ନ ସ୍ୱଭାବ ଓ ଅନୁକ୍ରିୟାର ଉପଯୁକ୍ତ ଏବଂ ଉଚିତ ବିକାଶ ପାଇଁ ପୁରସ୍କାର ଓ ଦଣ୍ଡ, ପ୍ରଶଂସା ଓ ନିନ୍ଦା ମାଧ୍ୟମରେ ବାଳକର ବ୍ୟବହାରକୁ ନିର୍ଣ୍ଣୟ ତଥା ନିୟନ୍ତ୍ରଣ କରାଯାଇପାରେ । ଅତ୍ୟଧିକ ନିନ୍ଦା କରିବା ବା ବାଳକକୁ ତାର ଅସାମାଜିକ ବା

ଅଗ୍ରହଣୀୟ କାର୍ଯ୍ୟପାଇଁ ବାରମ୍ବାର ଦୋଷାରୋପ କରିବା ମଧ୍ୟ ଅନୁଚିତ । କାରଣ ଏହାଦ୍ୱାରା ଦେ ଆତ୍ମ-ବିଶ୍ୱାସ ହରାଇବା ସଙ୍ଗେ ସଙ୍ଗେ ଅତ୍ୟନ୍ତ ହତାଶ ହୋଇଯାଏ । ନିନ୍ଦା ବା ଦଣ୍ଡ ଭୟରେ ହୁଏତ ସେ ତାର ବ୍ୟବହାରକୁ ଅଲକ୍ଷଣ ପାଇଁ ଦମନ କରି-ଦେଇପାରେ । କିନ୍ତୁ ପୁନଶ୍ଚ ଏହା ଦେଖାଦିଏ । ବାଳକ ଯଦି ଧୂମପାନ କରୁଥାଏ ଏବଂ ପିତାମାତା ଏଥିପାଇଁ ବିରକ୍ତ ହୋଇ ତା ପ୍ରତି ଯଦି କଡ଼ା ଦଣ୍ଡ ବିଧାନ କରନ୍ତି, ହୁଏତ ପିତାମାତାଙ୍କ ସମ୍ମୁଖରେ ଧୂମ୍ରପାନ ନକରି ସେମାନଙ୍କର ଅନୁପସ୍ଥିତିରେ ଲୁଚିକରି ଧୂମ୍ରପାନ କରିପାରେ । ଏପରି କ୍ଷେତ୍ରରେ କେବଳ ଦଣ୍ଡ ବା ଗାଳି କାର୍ଯ୍ୟକାରୀ ହୁଏ ନାହିଁ । ବରଂ ବାଳକକୁ ଦଣ୍ଡ ନଦେଇ ଯଦି ତାକୁ ସିଗାରେଟ ପାନର ଅପକାରିତା ସମ୍ବନ୍ଧରେ ହୃଦବୋଧ କରାଯାଇପାରେ ତେବେ ହୁଏତ ଏ ଅଭ୍ୟାସକୁ ସେ ସମ୍ପୂର୍ଣ୍ଣ ଭାବରେ ତ୍ୟାଗ କରିପାରେ । କିନ୍ତୁ ପିତା ବା ଶିକ୍ଷକ ନିଜେ ସିଗାରେଟ ପାନକରି ଯଦି ପିଲାକୁ ସିଗାରେଟ ପାନ ନ କରିବାକୁ, ନିଜେ ପାନ ଖାଇ ପିଲାକୁ ପାନ ନ ଖାଇବାକୁ ଓ ନିଜେ ସିନେମା ଦେଖି ପିଲାକୁ ସିନେମା ନ ଦେଖିବାକୁ କହନ୍ତି ଏବଂ ଏସବୁ କଲେ ଦଣ୍ଡ ଦିଅନ୍ତି, ତେବେ ପିଲା ମନରେ ଦ୍ୱନ୍ଦ୍ୱ ଜାତ ହୁଏ । ଗୁରୁଜନ ଓ ଅଭିଭାବକମାନଙ୍କର କଥା ଓ କାର୍ଯ୍ୟରେ ବିରାଟ ତଫାତ ଦେଖି କଣ କରିବାକୁ ହେବ ଏବଂ କଣ ନ କରିବାକୁ ହେବ ତାହା ସେ ଜାଣିପାରେ ନାହିଁ ଓ ଦ୍ୱନ୍ଦ୍ୱରେ ପଡ଼େ ; କାରଣ ତା ପାଇଁ କଣ ଭଲ, କଣ ମନ୍ଦ ତାହା ଜାଣିବାର ବୟସ ତାର ହୋଇନଥାଏ । ତେଣୁ ଯେତେଦୂର ସମ୍ଭବ ନିଜ କଥା ଓ କାର୍ଯ୍ୟ ମଧ୍ୟରେ ତଫାତ୍ ନ ରଖିବା ବାଞ୍ଛନୀୟ । ନଚେତ୍ ଗୋଟିଏ ପ୍ରକାରର ଉପଦେଶ ଦେଇ ନିଜେ ବିପରୀତ କାର୍ଯ୍ୟ କଲେ ଶିଶୁର ଲାଭ ହେବା ପରିବର୍ତ୍ତେ ଗୁରୁତର କ୍ଷତି ହୁଏ ।

## ଶିଶୁର ବିକାଶରେ ଅନୁବଂଶ ଓ ପରିବେଶର ପ୍ରଭାବ

ଏକ ପରିବାର ଓ ଭିନ୍ନ ଭିନ୍ନ ପରିବାରର ସନ୍ତାନସନ୍ତତିମାନଙ୍କର ଚେହେରା, ଶରୀର ଗଠନ ଓ ଆଚରଣ ବ୍ୟବହାର ତଥା ମାନସିକ ବିକାଶରେ ଯେଉଁ ଭିନ୍ନତା ଲକ୍ଷ୍ୟ କରାଯାଏ, ତାହା ଅନୁବଂଶ ଓ ପରିବେଶର ମିଳିତ ପ୍ରକ୍ରିୟା ଯୋଗୁଁ ସମ୍ଭବ ହୋଇଥାଏ ବୋଲି ନାନା ଅଧ୍ୟୟନ ଓ ଗବେଷଣାରୁ ଜଣାଯାଇଛି ।

### ଅନୁବଂଶ

ଯେଉଁ ପ୍ରକ୍ରିୟାରେ ପିତାମାତା ଓ ପୂର୍ବ ପୁରୁଷଙ୍କଠାରୁ ବିଭିନ୍ନ ଲକ୍ଷଣଗୁଡ଼ିକ ଶିଶୁ ନିକଟକୁ ସଂଚାରିତ ହୁଏ, ତାକୁ ଅନୁବଂଶ କୁହାଯାଏ । ଏହି ସଂଚରଣ ପ୍ରକ୍ରିୟା, ଜନନ ସୂତ୍ରିକା ଓ ଜନନିକାମାନଙ୍କ ସାହାଯ୍ୟରେ ସମ୍ଭବ ହୋଇଥାଏ । ଜନନିକା ବିଭିନ୍ନ ଲକ୍ଷଣର ପ୍ରଧାନ ସଞ୍ଚାରକ ହୋଇଥିବାରୁ ଏହାକୁ ବାସ୍ତବ ନିର୍ଦ୍ଧାରକ ବୋଲି କୁହାଯାଏ । ଏହି

ଜନନୀକାଗୁଡ଼ିକ ପିତା ଓ ମାତାଙ୍କର ଜନନେନ୍ଦ୍ରିୟ ମଧ୍ୟରେ ଥିବା ଜନନ କୋଷିକାସ୍ଥିତ ଅତି ସୂକ୍ଷ୍ମ ତରଳ ରାସାୟନିକ ପଦାର୍ଥ ।

ଅନୁବଂଶ ଅନେକ ପରିମାଣରେ କେନ୍ଦ୍ର ସ୍ନାୟୁ ସଂସ୍ଥା ଓ ଅସ୍ଥି ଗଠନକୁ ପ୍ରଭାବିତ କରେ । କେନ୍ଦ୍ର ସ୍ନାୟୁ ସଂସ୍ଥାର ମାନସିକ ବିକାଶ ଉପରେ ଏହାର ସମଧିକ ଗୁରୁତ୍ୱ ରହିଛି । ଏହି କାରଣରୁ ପିତା ପୁତ୍ର, ଅଜା ନାତି, ମାତା ପୁତ୍ର ମଧ୍ୟରେ ବହୁ ସାମଞ୍ଜସ୍ୟ ଦେଖାଯାଏ ।

ବଂଶାନୁସୃତ ବିଚକ୍ଷଣତା ଉପରେ କାର୍ଯ୍ୟ କରି ଅନୁବଂଶ ଉପରେ ପ୍ରଥମ ଆଲୋକପାତ କରିଥିଲେ ଗାଲଟନ,—ତାଙ୍କର ଅନୁସନ୍ଧାନର ଫଳାଫଳରୁ ଜଣାଯାଏ ଯେ, ପୂର୍ବପୁରୁଷମାନଙ୍କର ଚରିତ୍ର, ବିଭିନ୍ନ ଲକ୍ଷଣ, ଯୋଗ୍ୟତା, ବୁଦ୍ଧି ଓ ସାମର୍ଥ୍ୟ ବଂଶାନୁକ୍ରମରେ ପରବର୍ତ୍ତୀ ବଂଶଧରମାନଙ୍କ ନିକଟକୁ ସଂଚରିତ ହୁଏ । ଗାଲଟନଙ୍କଦ୍ୱାରା ପ୍ରଭାବିତ ହୋଇ ଗୋଡ଼ାର୍ଡ୍ କାଲିକ୍ୟାକ୍ ପରିବାରର ଇତିହାସ ବିଶ୍ଳେଷଣ କରିଥିଲେ । ତାଙ୍କ ମତରେ ସ୍ୱାଭାବିକ ଲକ୍ଷଣଯୁକ୍ତ ପିତାମାତାଙ୍କର ସନ୍ତାନସନ୍ତତିମାନେ ମଧ୍ୟ ସ୍ୱାଭାବିକ ଲକ୍ଷଣର ଅଧିକାରୀ ହୁଅନ୍ତି ଏବଂ ଅସ୍ୱାଭାବିକ ଓ ବିକୃତ ବ୍ୟକ୍ତିତ୍ୱସମ୍ପନ୍ନ ପିତାମାତାଙ୍କର ବଂଶଧରମାନେ ଅସ୍ୱାଭାବିକ ଏବଂ ବିକୃତ ଲକ୍ଷଣଗୁଡ଼ିକର ଅଧିକାରୀ ହୁଅନ୍ତି । ଏହି ପରିବାରରେ ଦୁଇ ଧରଣର ସନ୍ତାନସନ୍ତତି ଜନ୍ମଲାଭ କରିଥିଲେ । ଏକ ମାନସିକ ଅଦ୍ୟବସ୍ଥିତ ଚରିତ୍ରସମ୍ପନ୍ନ ମହିଳାଙ୍କୁ ବିବାହ କରିବା ଫଳରେ ଅବାଂଛିତ ଶିଶୁଗୁଡ଼ିଏ ଜନ୍ମଲାଭ କରିଥିଲେ ଓ ଉତ୍ତମ ପରିବାରର ସ୍ୱାଭାବିକ ଚରିତ୍ରସମ୍ପନ୍ନ ମହିଳାଙ୍କୁ ବିବାହ କରିବା ଫଳରେ ସ୍ୱାଭାବିକ ମାନସିକ ଅବସ୍ଥାସମ୍ପନ୍ନ ଶିଶୁ ଜାତ ହୋଇଥିଲେ । ଜନନୀକାଗୁଡ଼ିକ ବହନକରି ଆଣିଥିବା ଲକ୍ଷଣ ଅନୁସାରେ ଶିଶୁର ଶାରୀରିକ ଗଠନ ଓ କେତେକ ମାନସିକ ଲକ୍ଷଣ ନିର୍ଣ୍ଣୟ ହୁଏ । ଯଦି ପିତାମାତା ଉଭୟଙ୍କର ଚର୍ମର ବର୍ଣ୍ଣ ଗୌର ହୋଇଥାଏ ଏବଂ ଉଭୟଙ୍କଠାରୁ ଗୋଟିଏ କରି ଜନନକୋଷିକା ଏହି ଲକ୍ଷଣ ବହନ କରିଆସି ଭ୍ରୂଣରେ ଅବସ୍ଥାନ କରନ୍ତି, ଶିଶୁର ଚର୍ମର ବର୍ଣ୍ଣ ଗୌରବର୍ଣ୍ଣ ହୁଏ । କିନ୍ତୁ ଯଦି ପିତା ବା ମାତାଙ୍କର ଚର୍ମର ବର୍ଣ୍ଣକୁ ବହନ କରି ଆଣିଥିବା ଜନନସୂତ୍ରିକା ଶିଶୁ ନିକଟକୁ ସଞ୍ଚରିତ ନ ହୋଇ ପିତାମହଙ୍କ ( ଯାହାଙ୍କର ବର୍ଣ୍ଣ କଳା ) ଠାରୁ ଚର୍ମର ବର୍ଣ୍ଣ ବହନ କରି ଆଣିଥିବା ଜନନ ସୂତ୍ରିକା (ଯାହା ପିତାଙ୍କଠାରେ ଅପ୍ରଭାବୀ ଅବସ୍ଥାରେ ଥିଲା) ସଞ୍ଚରିତ ହୁଏ, ତେବେ ଶିଶୁର ରଙ୍ଗ ଶ୍ୟାମଳ ହେବା ସ୍ୱାଭାବିକ । ପୁନଶ୍ଚ ପିତା ଯଦି ଗୌରବର୍ଣ୍ଣର ଏବଂ ମାତା ଯଦି ଶ୍ୟାମଳ ବର୍ଣ୍ଣର ହୁଅନ୍ତି ଏ ଉଭୟଙ୍କଠାରୁ ଏହି ଲକ୍ଷଣ ଜନନୀକା ବହନ କରି ଆଣିଥାଏ, ଶିଶୁର ବର୍ଣ୍ଣ ମିଶ୍ର ବର୍ଣ୍ଣର ହୁଏ । ଯଦି କେବଳ ଜଣଙ୍କର ଜନନୀକା ପ୍ରଭାବୀ ଅବସ୍ଥାରେ ଏବଂ ଅନ୍ୟ ଜଣଙ୍କର ଅପ୍ରଭାବୀ ଅବସ୍ଥାରେ ସଞ୍ଚରିତ ହୁଏ, ପ୍ରଭାବୀ ଅବସ୍ଥାରେ ସଞ୍ଚରିତ ହୋଇଥିବା ଜନନ ସୂତ୍ରିକା ବହନ କରି ଆଣିଥିବା ଲକ୍ଷଣ ଶିଶୁଠାରେ ଦେଖାଦିଏ ।

ପିତାମାତା ବା ପୂର୍ବପୁରୁଷଙ୍କଠାରୁ ଶିଶୁ ଯେଉଁ ଲକ୍ଷଣଗୁଡ଼ିକ ବହନ କରି ଆଣିବ ତାହା ଶୁକ୍ରାଣୁ, ଅଣ୍ଡାଣୁ ସହ ମିଳିତ ହେବା ସମୟରେ ସମ୍ପାଦିତ ହୋଇଥାଏ । ଏହା ପରେ ଅନୁବଂଶର ଦାନକୁ ପରିବର୍ତ୍ତନ କରିହୁଏ ନାହିଁ । ତେଣୁ ସାଧାରଣରେ ଯେଉଁ ବିଶ୍ୱାସ ରହିଛି ଯେ, ଗର୍ଭାବସ୍ଥାରେ ମାତା, ଯଦି ଧର୍ମ କାର୍ଯ୍ୟରେ ମନ ଦିଅନ୍ତି, ନୈତିକ ଚିନ୍ତା କରନ୍ତି, ପୁରାଣ ଶାସ୍ତ୍ର ପଢ଼ନ୍ତି ତେବେ ଶିଶୁ ଧାର୍ମିକ ହୁଏ, କିମ୍ବା ସଙ୍ଗୀତ କଳା ଚର୍ଚ୍ଚା କଲେ ଶିଶୁ ସଙ୍ଗୀତଜ୍ଞ ହୁଏ, ସେ ଧାରଣା ଭୁଲ । କାରଣ ମାତାର ଚିନ୍ତାଧାରା ଶିଶୁକୁ ପ୍ରଭାବିତ କରିବାପାଇଁ ମାତା ଓ ଶିଶୁ ମଧ୍ୟରେ କୌଣସି ପ୍ରତ୍ୟକ୍ଷ ସଂପର୍କ ନାହିଁ ।

ଅନୁବଂଶ ଦ୍ୱାରା ଶିଶୁର ବୃଦ୍ଧି ଓ ବିକାଶ ସୀମିତ ହୋଇଥାଏ । ଉତ୍ତମ ପ୍ରଶିକ୍ଷଣ, ଯତ୍ନ ଓ ଚେଷ୍ଟାଦ୍ୱାରା ଅନୁବଂଶଦତ୍ତ ଲକ୍ଷଣଗୁଡ଼ିକ ପରିବର୍ତ୍ତନ କରି ହୁଏନାହିଁ । ଅବଶ୍ୟ ଶିଶୁର ପ୍ରାକ୍‌ଜନ୍ମ ଅବସ୍ଥାରେ ମାତାର ପରିବେଶର ବିଭିନ୍ନ ଉପାଦାନଗଣ ଶିଶୁ ଉପରେ କୁ ପ୍ରଭାବ ବା ସୁ ପ୍ରଭାବ ପକାଇ ପାରନ୍ତି; ଯଥା—ଉତ୍ତମ ଖାଦ୍ୟପେୟ ଓ ଅନୁକୂଳ ପରିବେଶ ଅନୁବଂଶର ଦତ୍ତ ଲକ୍ଷଣଗୁଡ଼ିକୁ କିଛି ପରିମାଣରେ ଉନ୍ନତ କରିପାରେ । କିନ୍ତୁ ଏ ଲକ୍ଷଣଗୁଡ଼ିକୁ ସମ୍ପୂର୍ଣ୍ଣ ଭାବରେ ପରିବର୍ତ୍ତନ କରିବା କେବେହେଁ ସମ୍ଭବ ନୁହେଁ । ପରିବେଶର ପ୍ରଭାବକୁ ସମାନ ରଖି ଯଦି ଦୁଇଟି ସନ୍ତାନଙ୍କ ମଧ୍ୟରେ କୌଣସି ପ୍ରଭେଦ ଦେଖାଯାଏ ଏହା ଅନୁବଂଶର ପ୍ରଭେଦ ଯୋଗୁଁ ସମ୍ଭବ ହୋଇଛି ବୋଲି ବୁଝିବାକୁ ହେବ । ଅନ୍ୟପକ୍ଷରେ ଅନୁବଂଶକୁ ସମାନ ରଖି (ବିଭିନ୍ନ ଯମଜଙ୍କ କ୍ଷେତ୍ରରେ) ଦୁଇଟି ଶିଶୁଙ୍କ ବ୍ୟକ୍ତିତ୍ୱରେ କୌଣସି ଭିନ୍ନତା ଲକ୍ଷ୍ୟ କରାଗଲେ ତାହା ପରିବେଶର ପ୍ରଭାବ ଯୋଗୁଁ ସମ୍ଭବ ହୋଇଛି ବୋଲି ଜାଣିବାକୁ ହେବ—ଜନନ ସୂଚିକାରେ ପାର୍ଥକ୍ୟଯୋଗୁଁ ଏକ ପରିବାରର ଭାଇଭଉଣୀଙ୍କର ଶାରୀରିକ ଓ ମାନସିକ ବିକାଶରେ ବ୍ୟକ୍ତିଗତ ଭିନ୍ନତା ପରିଲକ୍ଷିତ ହୁଏ ।

## ମାନବର ବିକାଶରେ ଅନୁବଂଶର ପ୍ରଭାବ

ମନୁଷ୍ୟମାନଙ୍କ ଉପରେ ଜନି ସମ୍ବନ୍ଧୀୟ (genitic) ଗବେଷଣା କରିବାର ଅସୁବିଧା ଯୋଗୁଁ ମାନବର ବିକାଶରେ ଅନୁବଂଶର ପ୍ରଭାବ ଉପରେ ବିଶେଷ କିଛି ତଥ୍ୟ ବିଜ୍ଞାନସମ୍ମତ ଉପାୟରେ ସଂଗ୍ରହ କରାଯାଇପାରିନାହିଁ । ତେବେ ଅଭିନ୍ନ ଏବଂ ଭ୍ରାତୃକ ଯମଜ-ମାନଙ୍କର ପାରିପାର୍ଶ୍ୱିକ ଅବସ୍ଥାରେ ଯେତେଦୂର ସମ୍ଭବ ନିୟନ୍ତ୍ରଣ କରି ଏବଂ ଭିନ୍ନ ଭିନ୍ନ ପାରିପାର୍ଶ୍ୱିକ ଅବସ୍ଥାରେ ସେମାନଙ୍କୁ ଅଧ୍ୟୟନ କରି କେତେକ ତଥ୍ୟ ସଂଗ୍ରହ କରାଯାଇଅଛି । ଅବଶ୍ୟ ଏହି ଅଧ୍ୟୟନଗୁଡ଼ିକ ସଂଖ୍ୟାରେ ଅତ୍ୟନ୍ତ କମ୍ ଏବଂ କେତେକ ସ୍ଥଳରେ ତ୍ରୁଟିପୂର୍ଣ୍ଣ ମଧ୍ୟ । ତଥାପି ମାନବର ବୃଦ୍ଧି ଓ ବିକାଶ ଉପରେ ଅନୁବଂଶର ପ୍ରଭାବ ଉଦ୍‌ଘାଟନ କରିବା ପାଇଁ ଏହି ଅଧ୍ୟୟନଗୁଡ଼ିକର ଫଳାଫଳ ଯଥେଷ୍ଟ ମୂଲ୍ୟବାନ ତଥ୍ୟ ଯୋଗାଇଅଛି । ଗବେଷଣା ତଥା ଅଧ୍ୟୟନର ଫଳାଫଳକୁ ଭିତ୍ତି କରି ନିମ୍ନଲିଖିତ ଉପାଦାନଗୁଡ଼ିକ ଅନୁବଂଶ ଦ୍ୱାରା ପ୍ରଭାବିତ ହେଉଥିବାରୁ ଜଣାଯାଇଛି ।

## ଶାରୀରିକ ଆକୃତି

ଚର୍ମର ରଙ୍ଗ, ଶାରୀରିକ ଗଠନ, ଉଚ୍ଚତା, ନାକର ଆକାର ଓ ଗଠନ, ଚକ୍ଷୁ ଓ କେଶର ରଙ୍ଗ ପ୍ରଭୃତି ଲକ୍ଷଣଗୁଡ଼ିକ ଅନୁବଂଶଦ୍ୱାରା ପ୍ରଦତ୍ତ ହୋଇଥାଏ । ସେଥିପାଇଁ ପିତାମାତା ଓ ସନ୍ତାନସନ୍ତତିମାନଙ୍କର ଶାରୀରିକ ଆକୃତିରେ ସାମଞ୍ଜସ୍ୟ ଥିବାର ଦେଖାଯାଏ ।

## ଶାରୀରିକ ଲକ୍ଷଣ

ମାନବର ଶାରୀରିକ ଓ ସ୍ନାୟବିକ ଅନୁକ୍ରିୟାମାନଙ୍କ ଉପରେ ଅନୁବଂଶର ପ୍ରଭାବ ଅନୁସନ୍ଧାନ କରିବା ପାଇଁ କେତେଗୁଡ଼ିଏ ଅଧ୍ୟୟନ କରାଯାଇଛି । ଏହାର ଫଳାଫଳରୁ ଜଣାଯାଏ ଯେ, ରକ୍ତଚାପ ଓ ନାଡ଼ିର ଗତି ପ୍ରଭୃତି ଶାରୀରିକ ପ୍ରକ୍ରିୟାକୁ ନିୟନ୍ତ୍ରଣ କରିବାରେ ପରିବେଶର ଗୁରୁତ୍ୱ ରହିଥିଲେ ମଧ୍ୟ ଅନୁବଂଶ ଏହାକୁ ପ୍ରଭାବିତ କରେ । କେତେଯୋଡ଼ା ଅଭିନ୍ନ ଯମଜ ଅସମ୍ବନ୍ଧିତ ସହୋଦର ଏବଂ ଅସମ୍ବନ୍ଧିତ ବାଳକଙ୍କୁ ନେଇ କୋଷ୍ଠ ଏବଂ ସୋଶ୍ୱାଗୋଶ୍ୱାସ କ୍ରିୟାର ହାର, ଲାଳର ନିର୍ଗମନ, ନାଡ଼ିର ଗତି ଓ ରକ୍ତଚାପ ଇତ୍ୟାଦି ମଧ୍ୟରେ ଥିବା ସାମଞ୍ଜସ୍ୟ ଅଧ୍ୟୟନ କରିଥିଲେ । ପ୍ରାପ୍ତଫଳରୁ ଜଣାଯାଏ ଯେ, ଅଭିନ୍ନ ଯମଜମାନଙ୍କର ଫଳାଙ୍କ (Score) ସହୋଦରମାନଙ୍କର ଫଳାଙ୍କ ଅପେକ୍ଷା ଅଧିକ ସମ୍ବନ୍ଧିତ ଥିଲା । ସହୋଦରମାନଙ୍କ ଫଳାଙ୍କ ଅସମ୍ବନ୍ଧିତ ଶିଶୁଙ୍କ ଅପେକ୍ଷା ପରସ୍ପର ସହିତ ଅଧିକ ସମ୍ବନ୍ଧିତ ଥିଲା । ଅଭିନ୍ନ ଯମଜଙ୍କ ଉପରୋକ୍ତ କ୍ରିୟାକଳାପ ମଧ୍ୟରେ ନିକଟତମ ସହ ସମ୍ବନ୍ଧ ଥିବାରୁ, ସ୍ୱତଃକ୍ରିୟ ସ୍ନାୟବିକ ପଦ୍ଧତିର ପ୍ରକ୍ରିୟା ଅନୁବଂଶର ଉତ୍ପାଦକମାନଙ୍କ ଦ୍ୱାରା ପ୍ରଭାବିତ ହେବାର ସୂଚନା ମିଳେ ।

## ପ୍ରଥମ ଋତୁସ୍ରାବର ବୟସ

ଏହି ଶାରୀରିକ ଲକ୍ଷଣ ଅନୁବଂଶଦ୍ୱାରା ପ୍ରଭାବିତ ହୋଇଥିବା ଜଣାଯାଇଅଛି । ବାଳିକାମାନଙ୍କର ପ୍ରଥମ ଋତୁସ୍ରାବର ବୟସ ଅନୁବଂଶଦ୍ୱାରା ପ୍ରଭାବିତ ହେଉଥିବାର ପ୍ରମାଣ ମିଳିଅଛି । ଏହି କାରଣରୁ ବିଭିନ୍ନ ବାଳିକାଙ୍କର ପ୍ରଥମ ଋତୁସ୍ରାବ ସମୟରେ ତାରତମ୍ୟ ଦେଖାଯାଏ । ଅବଶ୍ୟ ପ୍ରଥମ ଋତୁସ୍ରାବର ବୟସ କେତେକାଂଶରେ ମଧ୍ୟ ପାରିପାର୍ଶ୍ୱିକ ଅବସ୍ଥା ଦ୍ୱାରା ପ୍ରଭାବିତ ହୁଏ ।

## ଜୀବନକାଳ

ପରମାୟୁ—ବଂଶାନୁଗତ ଜନନୀକାର ପ୍ରଭାବ ପରମାୟୁ ଉପରେ ପଡ଼ିବାର କେତେକ ପ୍ରମାଣ ରହିଛି । ଜଣାଯାଏ ଯେ, ଯେଉଁ ବଂଶର ଲୋକେ ଯେତେ ଦୀର୍ଘାୟୁ ସେ ବଂଶର ପିଲାମାନେ ସେତେ ଦୀର୍ଘାୟୁ ହୁଅନ୍ତି ।

## ଶାରୀରିକ ତ୍ରୁଟି ଓ ରୋଗ

ବହୁମୂତ୍ର ରୋଗ, ହେମୋଫିଲିଆ ବର୍ଣ୍ଣାନ୍ଧତା, ଦୃଷ୍ଟି ଓ ଶ୍ରବଣ ଦୋଷ ଅନୁବଂଶର ପ୍ରଭାବଯୋଗୁଁ ହୋଇଥିବାରୁ ଜଣାଯାଏ । ଏତଦ୍‌ବ୍ୟତୀତ ଉଚ୍ଚ ରକ୍ତଚାପ, କେତେକ

ରକମର କର୍କଟ ରୋଗ, ପାକସ୍ଥଳୀରେ ଘା ପ୍ରଭୃତି ରୋଗ ଅନୁବଂଶ ଯୋଗୁଁ ହୁଏ ବୋଲି କେତେକ ମତ ଦେଇଥିଲେ ମଧ୍ୟ ଏପର୍ଯ୍ୟନ୍ତ ଏହା ସମ୍ବନ୍ଧରେ ମତପାର୍ଥକ୍ୟ ରହିଅଛି । ତେବେ ଅନେକ ରୋଗ ଯେ, ଅନୁବଂଶ ଓ ପରିବେଶର ଜଟିଳ ମିଳିତ ପ୍ରକ୍ରିୟା ଉପରେ ନିର୍ଭର କରନ୍ତି ଏହା ଅସ୍ୱୀକାର କରିହେବ ନାହିଁ ।

## ମାନସିକ ଦୋଷ ଓ ମନ୍ଦୀକରଣ

ମସ୍ତିଷ୍କ ଓ ମେରୁଦଣ୍ଡର ସ୍ନାୟୁମାନଙ୍କରେ ଅଦ୍ଭୁତ ପ୍ରକାରର ବଂଶାନୁସୃତ ଦୋଷ ଯୋଗୁଁ ଶୈଶବାବସ୍ଥାରେ ପାରିବାରିକ ଜଡ଼ମତିତ୍ୱ (Infantile family idiocy) ଦେଖାଯାଏ । କୋଷଗୁଡ଼ିକ ଫୁଲିଯାଇ ଚର୍ବିରେ ପରିଣତ ହେବାଫଳରେ ଦୃଷ୍ଟିଶକ୍ତିହୀନତା, ପକ୍ଷାଘାତ ଓ ମାନସିକ ହୀନତା (Mental deficiency) ଦେଖାଯାଏ । ଅଧିକାଂଶ କ୍ଷେତ୍ରରେ, ରୋଗ ହେବାର କେତେକ ବର୍ଷ ପରେ ଶିଶୁର ମୃତ୍ୟୁ ହୋଇଯାଏ । ପିତାମାତାଙ୍କଠାରୁ ଶିଶୁ ନିକଟକୁ ଏକ ନିର୍ଦ୍ଦିଷ୍ଟ ଅପ୍ରଭାବୀ ଜନନୀକା ସଞ୍ଚରିତ ହୋଇଥିଲେ ଓ ପିତାମାତା ଅତି ନିକଟତମ ସମ୍ପର୍କୀୟ ହୋଇଥିଲେ ଏହି ରୋଗ ବହୁଳ ଭାବରେ ଦେଖାଯାଏ । ଜନନ କୋଷିକାମାନଙ୍କର ବିକୃତ ଗଠନ ଯୋଗୁଁ କମ୍ବା ୪୬ଟି ପରିବର୍ତ୍ତେ ୪୭ଟି ଜନନ ସୂତ୍ରିକା ଏହି ଶିଶୁମାନଙ୍କର ଜୀବକୋଷରେ ରହିଥିଲେ Monogolism ରୋଗ ଦେଖାଯାଏ—ଏହି ରୋଗରେ ଆକ୍ରାନ୍ତ ହୋଇଥିବା ଶିଶୁମାନଙ୍କର ମୁଖର ଗଠନ ମଙ୍ଗୋଲମାନଙ୍କ ପରି ଏବଂ ଏମାନଙ୍କ ମଧ୍ୟରୁ ଅଧିକାଂଶ ଜଟିଳ ମାନସିକ କାର୍ଯ୍ୟ କରିବା-ପାଇଁ ସକ୍ଷମ ହୁଅନ୍ତି ନାହିଁ ।

## ମାନସିକ ବିକୃତି

Hunting for Chorea ନାମକ ଏକ ଅସାମାନ୍ୟ ଧରଣର ମାନସିକ ରୋଗ ଯଥା : ହିଷ୍ଟ୍ରେରିଆ ଜନୀ ସମ୍ବନ୍ଧୀୟ କାରଣ ଯୋଗୁଁ ହୋଇଥାଏ । ସାମାନ୍ୟ ଧରଣର ମାନସିକ ଅସ୍ୱାଭାବିକତା, ମାନସିକ ଚଞ୍ଚଳତା ଓ ବାତୁଳତା, ଯଥା : ସିଜୋଫ୍ରେନିଆ ପ୍ରଭୃତି ମାନସିକ ବ୍ୟାଧି ବଂଶାନୁସୃତ ବୋଲି କେତେକ ମତ ଦିଅନ୍ତି ।

## ବ୍ୟକ୍ତିତ୍ୱ

ଯଥେଷ୍ଟ ଅଧ୍ୟୟନ ଓ ଗବେଷଣା ଅଭାବରୁ ମାନବର ବ୍ୟକ୍ତିତ୍ୱ ଉପରେ ଜନନୀକା-ମାନଙ୍କର ପ୍ରଭାବ ସମ୍ବନ୍ଧରେ ବିଶେଷ କିଛି ଜଣାଯାଏ ନାହିଁ ।

କେତେକ ସାଂପ୍ରତିକ ଅଧ୍ୟୟନରୁ ଜଣାଯାଏ ଯେ, ଅପରାଧୀମାନଙ୍କଠାରେ ସାଧାରଣ ଲୋକଙ୍କ ଅପେକ୍ଷା ଅଧିକ ଜନନ କୋଷିକା ଥାଏ । ଅନେକ ମନୋବୈଜ୍ଞାନିକଙ୍କ ମତରେ ବାରମ୍ବାର ହିଂସାତ୍ମକ କାର୍ଯ୍ୟରେ ଲିପ୍ତ ରହିବା ବ୍ୟକ୍ତିତ୍ୱର ଏକ ସ୍ୱତନ୍ତ୍ର ଲକ୍ଷଣ ଯୋଗୁଁ ସମ୍ଭବ

ହୋଇଥାଏ । କିନ୍ତୁ ବ୍ୟକ୍ତିତ୍ୱର କେଉଁ ଅଂଶ ଏଥିପାଇଁ ଦାୟୀ ସେ ସମ୍ବନ୍ଧରେ କେହି ଏକମତ ନୁହନ୍ତି । ଅବରୋଧ ମନୋଭାବ ଓ ସାମାଜିକ ଅନ୍ତର୍ବୃତ୍ତି ଅର୍ଥାତ୍ ଲଜ୍ଜାଶୀଳତା, ଭୟାଳୁତା, ସର୍ବଦା ଦୂରେଇ ରହିବା ପ୍ରଭୃତି ଲକ୍ଷଣଗୁଡ଼ିକ ଅନୁବଂଶଦ୍ୱାରା ନିର୍ଦ୍ଧାରିତ ହୋଇଥାଏ ।

ଧୀଶକ୍ତି —

ମାନବର ଧୀଶକ୍ତି ସମ୍ପୂର୍ଣ୍ଣ ଭାବରେ ଅନୁବଂଶର ଦାନ ବୋଲି ନାନା ଅଧ୍ୟୟନରୁ ଜଣାଯାଏ । ଅର୍ଥାତ୍ ପିତାମାତା ଓ ପୂର୍ବପୁରୁଷମାନଙ୍କର ଧୀଶକ୍ତି ଅନୁସାରେ ଶିଶୁର ଧୀଶକ୍ତି ନିର୍ଣ୍ଣିତ ହେବାର ଜଣାଯାଇଛି ।

## ବ୍ୟକ୍ତିତ୍ୱର ବିକାଶରେ ଅନୁବଂଶ ଓ ପରିବେଶର ଆପେକ୍ଷିକ ଗୁରୁତ୍ୱ

ଏକ ପ୍ରାପ୍ତବୟସ୍କ ମାନବର ବ୍ୟକ୍ତିତ୍ୱରେ ବିଭିନ୍ନ ଶାରୀରିକ ଓ ମାନସିକ ଲକ୍ଷଣ-ମାନ ଦୃଷ୍ଟିଗୋଚର ହୁଏ—ଏହିଗୁଡ଼ିକ ଅନୁବଂଶ ଓ ପରିବେଶର ଉପାଦାନମାନଙ୍କଦ୍ୱାରା ପ୍ରଭାବିତ ହୋଇଥାଏ । କିନ୍ତୁ ଏହା ଭିତରୁ କେଉଁ ଉପାଦାନର ଗୁରୁତ୍ୱ ବ୍ୟକ୍ତିତ୍ୱ ଗଠନରେ କେତେ ବେଶୀ ସେ ସମ୍ବନ୍ଧରେ ନାନା ଦ୍ୱନ୍ଦ୍ୱ, ବାଦାନୁବାଦ ଓ ମତପାର୍ଥକ୍ୟ ପ୍ରକାଶ ପାଇଛି । ଶିଶୁର ବିକାଶରେ ଅନୁବଂଶ ବା ପରିବେଶ କାହାର ପ୍ରଭାବ କେତେ ? ପିତା-ମାତାଙ୍କଠାରୁ ପ୍ରାପ୍ତ ଲକ୍ଷଣଗୁଡ଼ିକର ପ୍ରଭାବ ନା ଜନ୍ମ ପର ପରିବେଶ, ଯଥା—ଗୃହ, ବିଦ୍ୟାଳୟ ଓ ସାଥୀମାନଙ୍କର ପ୍ରଭାବ ଶିଶୁର ବ୍ୟକ୍ତିତ୍ୱ ଗଠନରେ ଅଧିକ, ସେ ସମ୍ବନ୍ଧରେ ନାନା ପ୍ରଶ୍ନ ଉଠେ ।

ଅନୁବଂଶ ଗୁରୁତ୍ୱ ଉପରେ ଅଧିକ ଜୋର ଦେଇ ଜୀବ ବିଜ୍ଞାନୀମାନେ ମତ ଦେଇଛନ୍ତି ଯେ, ମାନବର ଭାଗ୍ୟ ତାର ଜନ୍ମଦାତାମାନଙ୍କଦ୍ୱାରା ନିୟନ୍ତ୍ରିତ ହୋଇଥାଏ । ଚରିତ୍ର, ଅଭ୍ୟାସ ଗଠନ, ମାନସିକ ବିକାଶ ବା ଶିକ୍ଷା ବୋଲି କିଛି ନାହିଁ । ବ୍ୟବହାରବାଦୀ ମନୋବୈଜ୍ଞାନିକମାନେ ଅନ୍ୟ ପକ୍ଷରେ ଶିଶୁର ବ୍ୟକ୍ତିତ୍ୱ ଗଠନରେ ପାରିପାର୍ଶ୍ୱିକ ଅବସ୍ଥାର ଗୁରୁତ୍ୱ ବର୍ଣ୍ଣନା କରିବାକୁ ଯାଇ କହୁଛନ୍ତି ଯେ, ମାନବର ବ୍ୟକ୍ତିତ୍ୱରେ ବଂଶାନୁସୃତ ଲକ୍ଷଣ ବୋଲି କିଛି ନାହିଁ । ବ୍ୟକ୍ତିତ୍ୱର ସମସ୍ତ ଲକ୍ଷଣ ପରିବେଶ ଦ୍ୱାରା ବିକଶିତ ତଥା ନିୟନ୍ତ୍ରିତ ହୁଏ । ବ୍ୟବହାରବାଦୀ ଓ୍ୱାଟସନ୍ କହୁଛନ୍ତି, "ମତେ ସ୍ୱାସ୍ଥ୍ୟବାନ, ବଳିଷ୍ଠ ଏବଂ ଗଠନାତ୍ମକ ତ୍ରୁଟି ନ ଥିବା ୧୨ ଗୋଟି ଶିଶୁ ଦିଅ ଏବଂ ସେମାନଙ୍କର ଲାଳନପାଳନ କରିବା ପାଇଁ ମୋ କହିବା ଅନୁସାରେ ଏକ ସ୍ୱତନ୍ତ୍ର ପରିବେଷ୍ଟନୀ ଦିଅ । ଏମାନଙ୍କ ମଧ୍ୟରୁ ଯେକୌଣସି ଶିଶୁଠାରେ ମୋର ଇଚ୍ଛା ଅନୁସାରେ ପ୍ରଶିକ୍ଷଣଦ୍ୱାରା ମୁଁ ଯେକୌଣସି ଲକ୍ଷଣ ଜାତ କରାଇପାରିବି ଏବଂ ଏମାନଙ୍କୁ ଯେକୌଣସି ପ୍ରକାର ବିଶେଷଜ୍ଞ କରି ଗଢ଼ି ପାରିବି ।"

ତାଙ୍କ ମତରେ ମାନବର ବ୍ୟକ୍ତିତ୍ୱ ଓ କ୍ରିୟାକଳାପ ସହିତ ବିଚକ୍ଷଣତା, ବୁଦ୍ଧିମତ୍ତା, ଶକ୍ତି ଓ ପ୍ରାଚୁର୍ଯ୍ୟ ଇତ୍ୟାଦିର କୌଣସି ସମ୍ବନ୍ଧ ନାହିଁ । ସମ୍ପ୍ରତି ମନୋବୈଜ୍ଞାନିକମାନେ ଜୀବ ବିଜ୍ଞାନୀ ଓ ବ୍ୟବହାରବାଦୀଙ୍କର ମତକୁ ପରୀକ୍ଷା କରି ମତଦେଇଅଛନ୍ତି ଯେ, ଏହି ଉଭୟ

ମତ ଏକତରଫା ଏବଂ ଏଥିରେ ସମ୍ପୂର୍ଣ୍ଣ ସତ୍ୟତା ନାହିଁ । ଏ ଦୁଇ ଚରମ ମତ ମଧ୍ୟରେ ସମନ୍ୱୟ ଆଣିବାକୁ ଯାଇ ସେମାନେ ଦର୍ଶାଇଅଛନ୍ତି ଯେ, କେତେକ ଲକ୍ଷଣ କେବଳ ଅନୁବଂଶଦ୍ୱାରା ଓ ଆଉ କେତେକ ଲକ୍ଷଣ କେବଳ ପରିବେଶଦ୍ୱାରା ଜାତ ହୋଇଥାଏ । ଯଥା – ଚର୍ମର ବର୍ଣ୍ଣ, ଅଙ୍ଗପ୍ରତ୍ୟଙ୍ଗର ଆକାର ଏବଂ ଗଠନ ପ୍ରଣାଳୀ, ଚକ୍ଷୁ ଓ କେଶର ବର୍ଣ୍ଣ, ଧୀଶକ୍ତି ପ୍ରଭୃତି କେତେକ ଲକ୍ଷଣ, କେତେକ ନିର୍ଦ୍ଦିଷ୍ଟ ଧରଣର ରୋଗ, ଯଥା :— ବର୍ଣ୍ଣାନ୍ଧତା, ହେମୋଫିଲିଆ ପ୍ରଭୃତି ଅନୁବଂଶ ଯୋଗୁଁ ସମ୍ଭବ ହୋଇଥାଏ । ଅପର-ପକ୍ଷରେ ବ୍ୟକ୍ତିତ୍ୱର ଅନ୍ୟ ସମସ୍ତ ଅର୍ଜିତ ଲକ୍ଷଣ, ଯଥା :—ସାମାଜିକ; ଉପଯୋଜନ, ସତ୍ୟବାଦୀତା,ସାଧୁତା, ଲଜ୍ଜାଶୀଳତା, ବିଭିନ୍ନ ଅଗ୍ରଧର୍ମୀ ବା ହିଂସ୍ରସ୍ୱଭାବ, ଭିନ୍ନଭିନ୍ନ ଦେଶ, ଜାତି, ଧର୍ମ ଓ ବ୍ୟକ୍ତି ପ୍ରତି ମନୋଭାବ, ସହନଶୀଳତା, ଧୈର୍ଯ୍ୟ, ବିଭିନ୍ନ କୌଶଳ ଶିକ୍ଷା ଏବଂ ବ୍ୟକ୍ତିତ୍ୱର ବହୁ ଲକ୍ଷଣଗୁଡ଼ିକ ପାରିପାର୍ଶ୍ୱିକ ଅବସ୍ଥାରୁ ଉତ୍ପନ୍ନ ହୋଇଥାଏ । କେଉଁ ଉପାଦାନର ପ୍ରଭାବ ବ୍ୟକ୍ତିତ୍ୱ ଗଠନରେ କେତେ ଅଧିକ ତାହା ସଠିକ୍ ଭାବରେ କହି ହେବ ନାହିଁ । –ତେବେ ମାନବର ବ୍ୟକ୍ତିତ୍ୱ ଉଭୟ ଅନୁବଂଶ ଓ ପରିବେଶର ପାରସ୍ପରିକ ପ୍ରକ୍ରିୟା-ଦ୍ୱାରା ସମ୍ଭବ ହୋଇଥାଏ । ଅନୁବଂଶ ବ୍ୟକ୍ତିତ୍ୱର ମୂଳଦୁଆ ପକାଏ ଏବଂ ପରିବେଶ ଏହି ମୂଳଦୁଆକୁ ଭିତ୍ତିକରି ବ୍ୟକ୍ତିତ୍ୱ ଗଠନକରେ । ଅନୁବଂଶ ବା ପରିବେଶର ବିନା ସାହାଯ୍ୟରେ ମାନବ ପରିପକ୍ୱତା ଲାଭ କରିନପାରେ ବା ତାର ବ୍ୟକ୍ତିତ୍ୱ ଗଠିତ ହୋଇନପାରେ । ଧୀଶକ୍ତି ବହିରାବରଣ (Cotex)ର ଗଠନ ପ୍ରଣାଳୀ ଉପରେ ନିର୍ଭର କରୁଥିବାରୁ ବଂଶାନୁସୃତ, କିନ୍ତୁ ଅନୁବଂଶରୁ ପ୍ରାପ୍ତ ଧୀଶକ୍ତିକୁ କେତେକ ପରିମାଣରେ ଅନୁକୂଳ ବା ପ୍ରତିକୂଳ ପାରିପାର୍ଶ୍ୱିକ ଅବସ୍ଥାଦ୍ୱାରା ବୃଦ୍ଧି ବା ହ୍ରାସ କରାଯାଇପାରେ—ଶିଶୁ ବିଭିନ୍ନ ପ୍ରକାରର ସାମର୍ଥ୍ୟ, ଶକ୍ତି ଓ ଯୋଗ୍ୟତାର ଅଧିକାରୀ ହୋଇପାରିଥାଇପାରେ – ମାତ୍ର ଉପଯୁକ୍ତ ଉତ୍ସାହ ଓ ସୁବିଧା ସୁଯୋଗ ନ ପାଇଲେ ତାର ଏହି ଶକ୍ତି ତଥା ଯୋଗ୍ୟତାଗୁଡ଼ିକର ଇଷ୍ଟତମ ବିକାଶ ହୋଇପାରେ ନାହିଁ । ସାଧାରଣତଃ ପରିବେଷ୍ଟନୀ କହିଲେ ଗୃହ, ବିଦ୍ୟାଳୟ, ସାଙ୍ଗସାଥୀ ତଥା ସମାଜକୁ ବୁଝାଯାଏ । ସହର ଓ ମଫସଲର ଶିଶୁମାନଙ୍କର ବ୍ୟକ୍ତିତ୍ୱରେ ଯଥେଷ୍ଟ ଭିନ୍ନତା ଦେଖାଯାଏ । ଚାଷୀର ସନ୍ତାନସନ୍ତତି ସହରର ବ୍ୟବସାୟୀ ଓ କର୍ମଚାରୀମାନଙ୍କର ସନ୍ତାନଙ୍କଠାରୁ ଆଚାର ବ୍ୟବହାର, ସ୍ୱଭାବ ଓ ଚାଲିଚଳନରେ ପୃଥକ ହୁଅନ୍ତି । ସେହିପରି ସହରର ଶିକ୍ଷିତା ବାଳିକା ଓ ମଫସଲର ଅଶିକ୍ଷିତା ବାଳିକାଙ୍କ ମଧ୍ୟରେ ବହୁ ପ୍ରଭେଦ ଲକ୍ଷ୍ୟ କରାଯାଏ ।

### ସମାଜ

ମନୁଷ୍ୟ ସମାଜ ଗଠନକରେ, ଅନୁବଂଶଦ୍ୱାରା ପ୍ରଦତ୍ତ ହୋଇଥିବା ଲକ୍ଷଣଗୁଡ଼ିକ ଅତ୍ୟନ୍ତ ନମନୀୟ ଏବଂ କୋମଳ ଅବସ୍ଥାରେ ଥିବାରୁ ପରିବେଷ୍ଟନୀ (ସମାଜ, ଗୃହ, ବିଦ୍ୟାଳୟ) ର ପ୍ରଭାବଦ୍ୱାରା ଏଗୁଡ଼ିକ କେତେକାଂଶରେ ପରିବର୍ତ୍ତିତ ହୋଇପାରେ । ଉପଯୁକ୍ତ ମାନସିକ

ବିକାଶ ହୋଇ ନ ଥିବା ଶିଶୁମାନଙ୍କର ସ୍ୱତନ୍ତ୍ର ବିଦ୍ୟାଳୟମାନଙ୍କରେ ସ୍ୱତନ୍ତ୍ର ଯତ୍ନ ନିଆଯାଇ ବିଶେଷ ଧରଣର ଶିକ୍ଷା ଦିଆଯାଇ ସେମାନଙ୍କର ମାନସିକ ବିକାଶରେ ଯଥେଷ୍ଟ ଉନ୍ନତି ଲକ୍ଷ୍ୟ କରାଯିବାର ବହୁ ପ୍ରମାଣ ମିଳିଛି ।

କିନ୍ତୁ ଏହାର ଅର୍ଥ ନୁହେଁ ଯେ, ଚରିତ୍ର, ସ୍ୱଭାବ ତଥା ଅଭ୍ୟାସ ଗଠନରେ ପରିବେଶର ଯଥେଷ୍ଟ ପ୍ରଭାବ ଥିବାରୁ ଅନୁବଂଶର ପ୍ରଭାବ ଉଲ୍ଲେଖଯୋଗ୍ୟ ନୁହେଁ—ଶିଶୁର ବ୍ୟକ୍ତିତ୍ୱ ଗଠନରେ ପରିବେଷ୍ଟନୀର ଯଥେଷ୍ଟ ପ୍ରଭାବ ରହିଥିଲେ ମଧ୍ୟ ପରିବେଶରୁ ଅନୁବଂଶର ଲକ୍ଷଣଗୁଡ଼ିକୁ ସମ୍ପୂର୍ଣ୍ଣ ଭାବରେ ପରିବର୍ତ୍ତନ କରାଯାଇପାରିବ ନାହିଁ କି ପରିବେଶ ନୂତନ ଲକ୍ଷଣ ସୃଷ୍ଟି କରିପାରିବ ନାହିଁ । ଯେ ନିର୍ବୁଦ୍ଧିଆ, ଜଡ଼ ବା ବୋକା ହୋଇ ଜନ୍ମ ହୋଇଥିବ ପରିବେଶ ଯେତେ ଉତ୍ତମ ପ୍ରଭାବ ପକାଇଲେ ମଧ୍ୟ ସେପରି ଶିଶୁକୁ ବୁଦ୍ଧିମାନ ବା ପ୍ରତିଭାଶାଳୀ କରିପାରିବ ନାହିଁ । ସେହିପରି ଯେଉଁମାନଙ୍କର ଗୀତ ଗାଇବା ପାଇଁ ଉପଯୁକ୍ତ ସ୍ୱର ନାହିଁ – ଯେତେ ଚେଷ୍ଟା କଲେ ମଧ୍ୟ ସେମାନଙ୍କୁ ଉତ୍ତମ ସଙ୍ଗୀତଜ୍ଞ କରି-ହେବ ନାହିଁ । ଅବଶ୍ୟ ଅନୁବଂଶ ଦତ୍ତ ଲକ୍ଷଣ ଓ ସ୍ୱଭାବଗୁଡ଼ିକ ପରିବେଶର ପ୍ରଭାବଦ୍ୱାରା ଉନ୍ନତ ବା ମନ୍ଦୀକୃତ ହୋଇପାରେ—ବିଭିନ୍ନ ସମ୍ଭାବ୍ୟତା ବଂଶାନୁସୃତ ହୋଇଥିଲେ ମଧ୍ୟ ଏଗୁଡ଼ିକର ଉପଯୁକ୍ତ ଏବଂ ଇଷ୍ଟତମ ବିକାଶ ପରିବେଶର ବିଭିନ୍ନ ଉପାଦାନମାନଙ୍କ ଉପରେ ନିର୍ଭର କରେ । ପରିବେଶର ପ୍ରଭାବଦ୍ୱାରା ମଧ୍ୟ ଶରୀରର କେତେକ ଅନୁବଂଶଜନିତ ଗଠନାତ୍ମକ ତ୍ରୁଟିକୁ ଦୂର କରାଯାଇପାରେ, ଯଥା— ଚଷମା ବ୍ୟବହାର କରି ଚକ୍ଷୁର ଦୋଷ ଦୂର କରାଯାଇପାରେ ବା ପ୍ଲାଷ୍ଟିକ ସର୍ଜରୀଦ୍ୱାରା ନାକର ଆକାରକୁ ପରିବର୍ତ୍ତନ କରାଯାଇ-ପାରେ—କେଶ ଓ ଚର୍ମର ରଙ୍ଗ ମଧ୍ୟ ରାସାୟନିକ ଉପାୟରେ ପରିବର୍ତ୍ତନ କରାଯାଇପାରେ ।

ସମାନ ପ୍ରକାର ବଂଶାନୁସୃତ ଲକ୍ଷଣର ଅଧିକାରୀ ହୋଇଥିବା ଅଭିନ୍ନ ଯମଜମାନଙ୍କୁ ଭିନ୍ନ ଭିନ୍ନ ପରିବେଷ୍ଟନୀ ମଧ୍ୟରେ ଲାଳନ ପାଳନ କରି ଦେଖାଯାଇଛି ଯେ, ସେମାନଙ୍କଠାରେ ସମ୍ପୂର୍ଣ୍ଣ ଭିନ୍ନ ଭିନ୍ନ ଲକ୍ଷଣମାନ ବିକଶିତ ହୋଇଥାଏ ।

ବଂଶାନୁସୃତ ଲକ୍ଷଣଗୁଡ଼ିକର ଉପଯୁକ୍ତ ବୃଦ୍ଧି ଓ ବିକାଶ ପାଇଁ ଏକ ପରିବେଶ ଆବଶ୍ୟକ । ଏହି ପରିବେଷ୍ଟନୀର ଉପାଦାନଗୁଡ଼ିକ ଶିଶୁର ଅନ୍ତର୍ନିହିତ ଶକ୍ତି ଓ ଯୋଗ୍ୟତାକୁ ବିକଶିତ କରିବାରେ ସହାୟତା କରନ୍ତି । ଅନ୍ୟ ପକ୍ଷରେ ପରିବେଶର ଉପାଦାନସମୂହ ମାନବର ଜନ୍ମଜାତ ଶକ୍ତିକୁ ବିକଶିତ କରିବାରେ ସାହାଯ୍ୟ କଲେ ହୁଏତ ତାର ବୁଦ୍ଧି ଫଳାଙ୍କ କେତେକ ପରିମାଣରେ ବୃଦ୍ଧି ଲାଭ କରିପାରେ । କିନ୍ତୁ ଏହାଦ୍ୱାରା ଶିଶୁର ବୁଦ୍ଧି ଫଳାଙ୍କ ସାଧାରଣ ଶିଶୁର ବୁଦ୍ଧି ଫଳାଙ୍କ ସହ ସମାନ କରିହେବ ନାହିଁ । ଏହି ସବୁ କ୍ଷେତ୍ରରେ ଅନୁବଂଶ କେତେକ ଲକ୍ଷଣର ବୃଦ୍ଧି ଓ ବିକାଶକୁ ସୀମିତ କରେ—ଶିଶୁର ଜନନ କୋଷିକାରେ ଡେଙ୍ଗା ହେବାର ଲକ୍ଷଣ ଥିଲେ ମଧ୍ୟ ପୁଷ୍ଟିକର ଖାଦ୍ୟ, ଜୀବନୀକାର ଅଭାବ ଏବଂ ଅସୁସ୍ଥତା ଯୋଗୁ ସେ ଡେଙ୍ଗା ହୋଇନପାରେ ।

ଅନୁବଂଶ ଓ ପରିବେଶ ପରସ୍ପର ସହ ସମ୍ବନ୍ଧିତ ଏବଂ ଉଭୟ ସହ ସମ୍ବନ୍ଧିତ ପରବର୍ତ୍ତୀ ହିସାବରେ ପରସ୍ପରକୁ ସାହାଯ୍ୟ କରନ୍ତି । ଏହି ପାରସ୍ପରିକ ପ୍ରକ୍ରିୟାରୁ ବ୍ୟକ୍ତି ବିଭିନ୍ନ ଅଭିଜ୍ଞତା ଲାଭ କରେ ଓ ଏହି ଅଭିଜ୍ଞତାରୁ ତାର ବିଭିନ୍ନ ସ୍ୱଭାବ ଓ ଚରିତ୍ର ଗଠନ ହୁଏ ।

ସେ ଯାହା ହେଉ, ବ୍ୟକ୍ତିତ୍ୱର ଗଠନ ତଥା ବିଭିନ୍ନ ଚରିତ୍ର ଓ ସ୍ୱଭାବର ବିକାଶରେ ଅନୁବଂଶ ଓ ପରିବେଶ, ଉଭୟଙ୍କର ଗୁରୁତ୍ୱ ଅପରିହାର୍ଯ୍ୟ । ଅନୁବଂଶ ଓ ପରିବେଶ ସ୍ୱତନ୍ତ୍ର ଭାବରେ ବିଭିନ୍ନ ସ୍ୱଭାବ ଓ ଚରିତ୍ର ଗଠନରେ ସାହାଯ୍ୟ ନ କରି ମିଳିତ ଭାବରେ ମାନବର ବ୍ୟକ୍ତିତ୍ୱ ଗଠନରେ ସାହାଯ୍ୟ କରନ୍ତି । ଅନୁବଂଶ ଓ ପରିବେଷ୍ଟନୀର ବିଭିନ୍ନ ଉପାଦାନଗୁଡ଼ିକ ଏତେ ନିବିଡ଼ ଭାବରେ ସଂଯୁକ୍ତ ଯେ, ବାସ୍ତବ ବା ବୈଜ୍ଞାନିକ ଦୃଷ୍ଟିକୋଣରୁ ସେଗୁଡ଼ିକ ପୃଥକ୍ କରି ବ୍ୟକ୍ତିତ୍ୱ ଗଠନରେ ପ୍ରତ୍ୟେକର ଆପେକ୍ଷିକ ପ୍ରଭାବ ନିର୍ଣ୍ଣୟ କରିବା ଅସମ୍ଭବ ।

ଶିଶୁର ସହଜାତ ପ୍ରବୃତ୍ତି, ଅନ୍ତର୍ନିହିତ ଶକ୍ତି, ସାମର୍ଥ୍ୟ, ସମ୍ଭାବ୍ୟ ଓ ଯୋଗ୍ୟତାର ଇଷ୍ଟତମ ବିକାଶ ପାଇଁ ଶିକ୍ଷା ଓ ସାମାଜିକ କ୍ରିୟା ପ୍ରକ୍ରିୟା ଅତ୍ୟନ୍ତ ଦରକାର । ଶିଶୁର ଜନ୍ମଜାତ ପ୍ରବୃତ୍ତି ଓ ଅନ୍ତର୍ନିହିତ ଶକ୍ତିଗୁଡ଼ିକର ଇଷ୍ଟତମ ବିକାଶ ପାଇଁ ଶିକ୍ଷା ନିର୍ଦ୍ଦେଶିତ ହେବା ଉଚିତ । ଜନ୍ମଜାତ ଓ ଅନ୍ତର୍ନିହିତ ଶକ୍ତି ଉପରେ ପର୍ଯ୍ୟବସିତ କରି ଅନାର୍ଜିତ ଲକ୍ଷଣଗୁଡ଼ିକୁ ବିକାଶ କରାଇବା ଉଚିତ । ଅର୍ଥାତ୍ ଯେଉଁ ଶିଶୁର ନୃତ୍ୟ ଓ ସଙ୍ଗୀତ ପାଇଁ ବିଶେଷ ଯୋଗ୍ୟତା ଓ ଆଗ୍ରହ ଅଛି ତାକୁ ସେ ଦିଗରେ ଶିକ୍ଷା ଦେଇ ତାର ଏହି ଅନ୍ତର୍ନିହିତ ଶକ୍ତିର ଉପଯୁକ୍ତ ବିକାଶ କରାଇବା ବିଧେୟ—ସେହିପରି ବିଜ୍ଞାନ ଓ କାରିଗରୀ ଶିକ୍ଷାଦାନରେ ଯାହାର ବିଶେଷ ଯୋଗ୍ୟତା ରହିଛି, ତାକୁ ପିଲାଦିନରୁ ବିଜ୍ଞାନ ବିଷୟରେ ଆଗ୍ରହୀ କରିବା-ପାଇଁ ବିଭିନ୍ନ ଯନ୍ତ୍ରପାତିର ଆଦର୍ଶ ଆଣି ଦେଲେ (ଯଥା--ମୋଟର, ଉଡ଼ାଜାହାଜ, ରକେଟ) ପିଲା ସେଗୁଡ଼ିକୁ ଖୋଲିଖୋଲି କରି କିଛି ଧାରଣା କରିପାରିବ । ବିଜ୍ଞାନ ସମ୍ବନ୍ଧୀୟ ବିଭିନ୍ନ ପତ୍ରପତ୍ରିକା ଓ ପୁସ୍ତକ ପଢ଼ିବାକୁ ଦେବା ସଙ୍ଗେ ସଙ୍ଗେ ବିଜ୍ଞାନର ବିଭିନ୍ନ ପରୀକ୍ଷଣ ପାଇଁ ସାମଗ୍ରୀ ଯୋଗାଇଦେଇ ତାକୁ ଏ ଦିଗରେ ଉତ୍ସାହିତ କରିବାକୁ ହେବ । ଅନ୍ୟ ପକ୍ଷରେ କୌଣସି ଯନ୍ତ୍ରପାତିରେ ହାତ ଦେଲେ ପିଲାକୁ ଯଦି ଦଣ୍ଡ ଦିଆଯାଏ, ଏଥିରୁ ନିବୃତ୍ତ ହେବାକୁ ବାଧ୍ୟ କରାଯାଏ ତାର ଏ ଦିଗରେ ଉତ୍ସାହ ରହିବ ନାହିଁ । ଶିଶୁର ଅନ୍ତର୍ନିହିତ ଶକ୍ତିର ଉପଯୁକ୍ତ ଓ ଇଷ୍ଟତମ ପରିପ୍ରକାଶ ପାଇଁ ଉପଯୁକ୍ତ ଶିକ୍ଷଣ, ନିର୍ଦ୍ଦେଶନା ତଥା ସୁବିଧା ସୁଯୋଗର ଗୁରୁତ୍ୱ ଯେ କେତେ ବେଶୀ ତାହା ପ୍ରତ୍ୟେକ ପରିବାର ଓ ସମାଜ ଉପଲବ୍ଧି କରିବା ଉଚିତ ।

ଯେଉଁ ଶିକ୍ଷଣ ଶିଶୁର ମୌଳିକତାକୁ ବିକଶିତ କରିବାରେ ସାହାଯ୍ୟ କରିବ ଏବଂ ସେ ଦିଗରେ ବିଶେଷ ଯୋଗ୍ୟତା ହାସଲ କରିବାକୁ ସୁବିଧା ଓ ଅବସର ଯୋଗାଇବ-ତାହା ଯେ, ଏକ ଉତ୍ତମ ଶିକ୍ଷଣ ପ୍ରଥା, ଏଥିରେ ସନ୍ଦେହ ନାହିଁ । କିନ୍ତୁ ଅନ୍ତର୍ନିହିତ ଶକ୍ତି, ସମ୍ଭାବ୍ୟ ଓ ଯୋଗ୍ୟତାରେ ପାର୍ଥକ୍ୟ ହେତୁ ସମାନ ଧରଣର ଶିକ୍ଷା ବ୍ୟବସ୍ଥା କଲେ ମଧ୍ୟ, ସମାନ ପରିବେଷ୍ଟନୀ ମଧ୍ୟରେ ବୃଦ୍ଧି ଲାଭ କଲେ ମଧ୍ୟ ବ୍ୟକ୍ତିଗତ ଭିନ୍ନତା ପରିଲକ୍ଷିତ ହୁଏ । ମାନବର ଅନ୍ତର୍ନିହିତ ଶକ୍ତିରେ ଏହି ଭିନ୍ନତାକୁ ଶିକ୍ଷା ବା ପ୍ରଶିକ୍ଷଣ ଏଡ଼ାଇ ନ ପାରେ ।

## ତୃତୀୟ ଅଧ୍ୟାୟ

# ପ୍ରାକ୍ ଜନ୍ମବିକାଶ

ପ୍ରାକ୍ ଜନ୍ମବିକାଶ ଉପରେ ବାଲ-ମନସ୍ତତ୍ତ୍ୱ ଅଧିକ ଗୁରୁତ୍ୱ ଦିଏ । ପ୍ରାକ୍ ଜନ୍ମ ଅବସ୍ଥାରେ ଗର୍ଭର ବିକାଶ ଅଧ୍ୟୟନ କରିବାକୁ ଯେଉଁସବୁ ପ୍ରଣାଳୀ ପ୍ରୟୋଗ କରାଯାଏ, ତାହା ମଧ୍ୟରେ ନିରୀକ୍ଷଣ ପଦ୍ଧତି ସର୍ବପ୍ରଧାନ । ଜନ୍ମ ସମୟ ପୂର୍ବରୁ ଅପରିପକ୍ୱ ଅବସ୍ଥାରେ ଜାତ ହୋଇଥିବା ଗର୍ଭ କିମ୍ବା ଅସ୍ତ୍ରୋପଚାରଦ୍ୱାରା ମାତାର ଜରାୟୁରୁ ବହିର୍ଗତ ହୋଇଥିବା ଗର୍ଭକୁ ନିରୀକ୍ଷଣ କଲେ ପ୍ରାକ୍‌ଜନ୍ମ ବିକାଶ ସମ୍ବନ୍ଧରେ ବିଭିନ୍ନ ଆବଶ୍ୟକୀୟ ତଥ୍ୟ ମିଳିଥାଏ । ଆଉ ମଧ୍ୟ କେତେକ ଯନ୍ତ୍ର ପ୍ରୟୋଗ କରି ମାତାର ଜରାୟୁ ମଧ୍ୟରୁ ଗର୍ଭର ବିକାଶ ଜାଣିହୁଏ । ସାଧାରଣତଃ ପୂର୍ବପ୍ରସବ କାଳ ୯ ମାସ ୧୦ ଦିନ ବା ୨୮୦ ଦିନ ଅଟେ । ଏହି ସମୟରେ ଗୋଟିଏ ଅତି ଛୋଟ କୋଷ ବୃଦ୍ଧିଲାଭ କରି ଶିଶୁରେ ପରିଣତ ହୁଏ । ସାଧାରଣ ମାନବଠାରେ ଯାହା ଯାହା ଅଙ୍ଗପ୍ରତ୍ୟଙ୍ଗ ଦେଖିବାକୁ ମିଳେ ନବଜାତ ଶିଶୁଠାରେ ତାହା ଦେଖାଯାଏ ।

ପ୍ରାକ୍ ଜନ୍ମସ୍ଥିତିକୁ ତିନି ମୁଖ୍ୟ ଭାଗରେ ବିଭକ୍ତ କରାଯାଇପାରେ ।

### ୧ । ଅଙ୍କୁରଣ ବା ଡିମ୍ବକାଳ

ଗର୍ଭସଞ୍ଚାର ହେବା ସମୟଠାରୁ ଦୁଇସପ୍ତାହ ବା ଚଉଦ ଦିନ ପର୍ଯ୍ୟନ୍ତ ଏହି କାଳ ରହେ । ଏହି ଅବସ୍ଥାରେ ଅଣ୍ଡକୋଷ ମାତାଠାରୁ ଅଲଗା ରହି ଡିମ୍ବବାହୀ ନଳୀ ମଧ୍ୟରେ ପ୍ରବେଶ କରି ଗର୍ଭାଶୟ ଆଡ଼କୁ ଯାତ୍ରା ଆରମ୍ଭ କରେ । ଏହି ସମୟରେ ଏହା ଆଉ କେଉଁଠାରୁ ଖାଦ୍ୟ ତଥା ପୋଷଣ ପାଏନାହିଁ । ଏହା ଗୋଟିଏ ଡିମ୍ବ ଭଳି ଦେଖାଯାଏ । ଏହି ସମୟରେ ଏହି କୋଷ ମଧ୍ୟରେ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ ହେଉଥାଏ । କୋଷ ବହୁତ ଛୋଟ ଛୋଟ ଭାଗରେ ବିଭକ୍ତ ହୋଇଯାଏ ଏବଂ କୋଷରେ ଏହି ଛୋଟ କୋଷଗୁଡ଼ିକ ଛୋଟ ଛୋଟ ଗୋଲାକାର ଗୁଚ୍ଛରେ ପରିଣତ ହୁଏ । ଏହି ଗୁଚ୍ଛମାନଙ୍କର ବହୁତ କୋଷ ଥାଏ ଏବଂ ଜନନୀକାସବୁ ରହିଥାନ୍ତି । ଏହି କୋଷଗୁଚ୍ଛ ମଧ୍ୟରେ ଏକ ଗର୍ତ୍ତ ହୋଇ ଏହାକୁ ଦୁଇ ଭାଗରେ ବିଭକ୍ତ କରିଦିଏ—ଯଥା ବହିର୍ଗୁଚ୍ଛ ଓ ଆଭ୍ୟନ୍ତରୀଣ ଗୁଚ୍ଛ । ଅନ୍ତଃ ଗୁଚ୍ଛ ମଧ୍ୟରେ ଭ୍ରୂଣ ବିକାଶ ଲାଭ କରେ ଏବଂ ବହିର୍ଗୁଚ୍ଛ ଭ୍ରୂଣକୁ ସଂରକ୍ଷଣ କରିବାରେ ତଥା ଖାଦ୍ୟ ଓ ପୋଷଣ ଯୋଗାଇବା କାର୍ଯ୍ୟରେ ବ୍ୟବହୃତ ହୁଏ ।

ଡିମ୍ବବାହୀ ନଳୀ ମଧ୍ୟରେ ଅଣ୍ଡକୋଷ ଗର୍ଭାଶୟ ଆଡ଼କୁ ଯାତ୍ରା କରୁଥିବା ବେଳେ ଡିମ୍ବକୁ ଗ୍ରହଣ କରିବାପାଇଁ ଗର୍ଭାଶୟ ପ୍ରସ୍ତୁତ ହେଉଥାଏ । ଅର୍ଥାତ୍ ଗର୍ଭାଶୟ ମଧ୍ୟରେ କେତେକ ପରିବର୍ତ୍ତନ ଘଟୁଥାଏ । ଯେପରିକି ଭ୍ରୂଣ ସୁବିଧାରେ ତା ମଧ୍ୟରେ ଆରୋପିତ ହୋଇପାରିବ । ଗର୍ଭାଶୟ ନିକଟରେ ପହଞ୍ଚି ଡିମ୍ବ ପରି ପ୍ରାଚୀର ଦେହରେ ଲାଗିଯାଏ ।

ଏହି ସ୍ଥାନରୁ ଗର୍ଭନାଳ ବିକଶିତ ହୁଏ । ଭ୍ରୂଣ ବର୍ତ୍ତମାନ ମାତାର ରକ୍ତରୁ ଖାଦ୍ୟ, ପାଣିଆ, ପୋଷଣ ଓ ଅନ୍ୟାନ୍ୟ ଆବଶ୍ୟକୀୟ ପଦାର୍ଥ ପ୍ରାପ୍ତ କରି ବୃଦ୍ଧି ଓ ବିକାଶ ଲାଭ କରେ ।

୨ । ଭ୍ରୂଣାବସ୍ଥା

ଏହି ଅବସ୍ଥାରେ ଭ୍ରୂଣର ବିକାଶରେ ଅତି ଦ୍ରୁତ ପରିବର୍ତ୍ତନ ହୁଏ । କୋଷ ବର୍ତ୍ତମାନ ୩ ଭାଗରେ ବିଭକ୍ତ ହୋଇଯାଏ । ବାହ୍ୟସ୍ତର, ମଧ୍ୟସ୍ତର ଓ ଅନ୍ତଃସ୍ତର । ବାହ୍ୟସ୍ତରରୁ ସ୍ନାୟୁ ସମ୍ବେଦନା କୋଷ, ବାଳ ଓ ଦାନ୍ତର କେତେକାଂଶ ବାହ୍ୟ ଚର୍ମ ବିକାଶ ଲାଭ କରନ୍ତି । ମଧ୍ୟସ୍ତରରୁ ସଂଚରଣ ଓ ହୃତ୍ସ୍ପନ୍ଦନ ଅଙ୍ଗ, ଅନ୍ତଃଚର୍ମ ଓ ମାଂସପେଶୀ ଆଦି ବିକାଶ ଲାଭ କରନ୍ତି । ଅନ୍ତଃ ବା ତୃତୀୟ ସ୍ତରରେ—Eustachian tube, Bronchial tube, କଣ୍ଠନାଳୀ, ଫୁସ୍‌ଫୁସ୍, ଯକୃତ, ପାକସ୍ଥଳୀ ଓ ଲାଳଗ୍ରନ୍ଥି ପ୍ରଭୃତି ଗଠିତ ହୁଏ । ଶରୀରର ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗଗୁଡ଼ିକର ବିକାଶ ଆରମ୍ଭ ହୋଇଥିବାରୁ ଏହି ସମୟରେ ଭ୍ରୂଣକୁ ଦେଖିଲେ ଏକ କ୍ଷୁଦ୍ର ମାନବ ପରି ଜଣାଯାଏ । ଏହି ସମୟରୁ ମଧ୍ୟ ଭ୍ରୂଣର ବିଭିନ୍ନ କ୍ରିୟାକଳାପ ଆରମ୍ଭ ହୁଏ । ଗର୍ଭନାଳ ବଢିବଢି ୨ମାସ ମଧ୍ୟରେ ଅର୍ଦ୍ଧେକ ଭାଗକୁ ଘେରିରହେ । ଅର୍ଥାତ୍ କରାୟୁ ମଧ୍ୟରେ ଭ୍ରୂଣକୁ ବେଢ଼େଇ ହୋଇ ରହେ । ଏହାର ଉପର ଭାଗରେ ଥିବା ଝିଲ୍ଲୀର କାର୍ଯ୍ୟ ଭ୍ରୂଣକୁ ବାହାର ବିପଦରୁ ରକ୍ଷା କରିବା, ମାତାର ରକ୍ତରୁ ଜଳ, ଅମ୍ଳଜାନ ଇତ୍ୟାଦି ବହନ କରି ଶିଶୁର ନିକଟରେ ପହଞ୍ଚାଇବା, ଭ୍ରୂଣର ରକ୍ତରୁ ବିଭିନ୍ନ କ୍ଷତିକାରକ ଉପାଦାନ ମାତାର ରକ୍ତ ସାହାଯ୍ୟରେ ପଦାକୁ ବାହାର କରିବା ଇତ୍ୟାଦି । କିନ୍ତୁ କୌଣସି ଅବସ୍ଥାରେ ବିକଶିତ ଗର୍ଭର ମାତାର ରକ୍ତଧାରା ସହିତ ପ୍ରତ୍ୟକ୍ଷ ସମ୍ପର୍କ ନ ଥାଏ । ଯାହା କିଛି ପରୋକ୍ଷ ସମ୍ପର୍କ ଥାଏ ତାହା କେବଳ ଗର୍ଭନାଳ ମାଧ୍ୟମରେ ।

ତୃତୀୟ ସପ୍ତାହ ପରେ ହୃତ୍‌ପିଣ୍ଡ କାର୍ଯ୍ୟ କରେ । ଦ୍ୱିତୀୟ ମାସ ବେଳକୁ ଯକୃତ କାର୍ଯ୍ୟ କରେ । ଭ୍ରୂଣାବସ୍ଥାରେ ବିକାଶ ମୁଣ୍ଡରୁ ଆରମ୍ଭ ହୋଇ ତଳ ଆଡ଼କୁ ଗତିକରେ । ତେଣୁ ମୁଣ୍ଡର ବିକାଶ ପ୍ରଥମେ ହୁଏ । ଏହାଫଳରେ ଭ୍ରୂଣାବସ୍ଥାର ମୁଣ୍ଡର ଆକାର ଶରୀରର ଅନ୍ୟ ସମସ୍ତ ଅଙ୍ଗ ତୁଳନାରେ ଯଥେଷ୍ଟ ବଡ଼ ହୋଇଥାଏ ।

ଭ୍ରୂଣାବସ୍ଥାର ଗୁରୁତ୍ୱ—ଭ୍ରୂଣାବସ୍ଥାରେ ମାନବ ଶରୀରରେ ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗଗୁଡ଼ିକ ବିକାଶ ଲାଭ କରୁଥିବାରୁ ଏହା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଅଟେ । ଏହି ଅବସ୍ଥାରେ ଭ୍ରୂଣର ବିକାଶ ଉପଯୁକ୍ତ ବାତାବରଣ ମଧ୍ୟରେ ହେବା ଆବଶ୍ୟକ । ମାତା ଜୀବନୀକା ପୂର୍ଣ୍ଣ ପୁଷ୍ଟିସାର ଖାଦ୍ୟ ଖାଇବା ସଙ୍ଗେ ସଙ୍ଗେ ଯଥେଷ୍ଟ ବିଶ୍ରାମ ନେବା ଉଚିତ । ଏତଦ୍-ବ୍ୟତୀତ କୌଣସି ଅତ୍ୟଧିକ ଆବେଗିକ ଅସ୍ୱାଭାବିକତା ମାତା ଯେପରି ଏହି ଅବସ୍ଥାରେ ଅନୁଭବ ନ କରେ ସେଥିପ୍ରତି ମଧ୍ୟ ଦୃଷ୍ଟି ଦେବାକୁ ପଡ଼ିବ । ଏସବୁ ପ୍ରତି ଯତ୍ନବାନ ନ ହେଲେ ଭ୍ରୂଣ ନଷ୍ଟ ହେବାର ଯଥେଷ୍ଟ ସମ୍ଭାବନା ଥାଏ ।

## ୩ । ଗର୍ଭାବସ୍ଥା

ଭ୍ରୂଣାବସ୍ଥାରେ ଯେଉଁସବୁ ବାହ୍ୟ ଓ ଆଭ୍ୟନ୍ତରୀଣ ଅଙ୍ଗଗୁଡ଼ିକର ବିକାଶ ଆରମ୍ଭ ହୁଏ, ଗର୍ଭାବସ୍ଥାରେ ସେଗୁଡ଼ିକର ବିକାଶ ସମ୍ପୂର୍ଣ୍ଣ ହୁଏ । ଗର୍ଭ ଆକାରରେ ବୃଦ୍ଧିଲାଭ କରିବାକୁ ଆରମ୍ଭ କରେ ଏବଂ ଶରୀରର ବିଭିନ୍ନ ଅଙ୍ଗକୁ ସଞ୍ଚାଳନ କରିବାକୁ ସମର୍ଥ ହୁଏ । ବିଭିନ୍ନ ଜ୍ଞାନେନ୍ଦ୍ରିୟ ଧୀରେ ଧୀରେ ବିକାଶଲାଭ କରନ୍ତି । ୫।୬ ମାସ ବେଳକୁ ଗର୍ଭର ସ୍ପନ୍ଦନ କରିବାର କ୍ଷମତା ଆସିଯାଏ । କିନ୍ତୁ ଏହି ଅବସ୍ଥାରେ ସ୍ନାୟବିକ ବିକାଶ ସମ୍ବନ୍ଧରେ କୌଣସି ସଠିକ ଏବଂ ସନ୍ତୋଷଜନକ ତଥ୍ୟ ମିଳିନାହିଁ ।

ଶିଶୁର ବିକାଶ ପାଇଁ ଏହି ଅବସ୍ଥାର ମଧ୍ୟ ଯଥେଷ୍ଟ ମହତ୍ତ୍ୱ ରହିଛି । ଗର୍ଭାବସ୍ଥାରେ ବିଷାକ୍ତ ଔଷଧ, ମାଦକ ଦ୍ରବ୍ୟ ସେବନ, ଉପଯୁକ୍ତ ଖାଦ୍ୟର ଅଭାବ ହେଲେ, ମାତା ଭାବାତ୍ମକ ଅସ୍ୱାଭାବିକତା ଅନୁଭବ କଲେ ବା ମାତାକୁ କୌଣସି ଉତ୍କଟ ରୋଗ ହେଲେ ଗର୍ଭର ଯଥେଷ୍ଟ କ୍ଷତି ହୋଇଥାଏ । ଏହିସବୁ ପ୍ରଭାବ ଗର୍ଭର ଶାରୀରିକ କ୍ରିୟାରେ ପରିବର୍ତ୍ତନ ଆଣିବା ସଙ୍ଗେ ସଙ୍ଗେ ଜନ୍ମ ପର ଅବସ୍ଥାରେ ମଧ୍ୟ ଶିଶୁର ବିକାଶରେ ଯଥେଷ୍ଟ କ୍ଷତି ଘଟାନ୍ତି ।

### ଶିଶୁର ପ୍ରାକ୍‌ଜନ୍ମବିକାଶକୁ ପ୍ରଭାବିତ କରୁଥିବା ଉପାଦାନଗଣ

ପିତୃକୋଷ ଓ ମାତୃକୋଷ ମିଳନ ହେଲାପରେ ଯେଉଁ ଭ୍ରୂଣ ଜାତ ହୁଏ, ତାହା ମାତୃଗର୍ଭରେ ପ୍ରାୟ ୨୮୦ ଦିନ ରହି ବୃଦ୍ଧି ଓ ବିକାଶ ଲାଭ କରେ । ଏହି ଅବସ୍ଥାରେ ମାତାର ପରିବେଶଦ୍ୱାରା ଗର୍ଭସ୍ଥ ଶିଶୁର ବୃଦ୍ଧି ଓ ବିକାଶ ପ୍ରଭାବିତ ହୁଏ । କାରଣ ମାତୃ ଗର୍ଭରେ ଆଶ୍ରୟ ନେଇ ଶିଶୁ ତା'ର ବୃଦ୍ଧି ଓ ବିକାଶ ପାଇଁ ମାତାଠାରୁ ଖାଦ୍ୟ ଓ ରକ୍ତ ସଂଗ୍ରହ କରେ । ଭ୍ରୂଣର ବୃଦ୍ଧି ଓ ବିକାଶ ପାଇଁ ଜରାୟୁରେ ଉପଯୁକ୍ତ ବ୍ୟବସ୍ଥା ଥାଏ । ଏଥିରେ ଅନିୟମିତତା ବା ବ୍ୟତିକ୍ରମ ଦେଖାଦେଲେ ଭ୍ରୂଣର ସୁସ୍ଥ ବିକାଶ ବାଧାପ୍ରାପ୍ତ ହୁଏ । ଏହି ଅନିୟମିତତା କେତେଗୁଡ଼ିଏ ସାଧାରଣ କାରଣ ଯୋଗୁ ସମ୍ଭବ ହୋଇଥାଏ ।

(୧) ମାତାର ଖାଦ୍ୟପେୟ – ଗର୍ଭନାଳ ମାଧ୍ୟମରେ ମାତାଠାରୁ ରକ୍ତ ସଂଗ୍ରହ କରି ଭ୍ରୂଣ ବିକାଶ ଲାଭ କରୁଥିବାରୁ ମାତାର ଖାଦ୍ୟ ପୁଷ୍ଟିସାର, ସ୍ନେହସାର, ଶ୍ୱେତସାର ଓ ଜୀବନୀକାରେ ପରିପୂର୍ଣ୍ଣ ହେବା ଉଚିତ । ଗର୍ଭବତୀ ଅବସ୍ଥାରେ ସାଧାରଣତଃ ମାତାକୁ ମାତା ଓ ଶିଶୁ ଉଭୟଙ୍କପାଇଁ ଖାଦ୍ୟ ଖାଇବାକୁ ପଡ଼ିଥାଏ । ପ୍ରାକ୍ ଜନ୍ମ ଅବସ୍ଥାର ଶେଷ ପର୍ଯ୍ୟାୟରେ ଗର୍ଭର ବୃଦ୍ଧି ଓ ବିକାଶ ଅତ୍ୟନ୍ତ କ୍ଷିପ୍ରଗତିରେ ହେଉଥିବାରୁ ଏହି ସମୟରେ ମାତାର ଖାଦ୍ୟପେୟ ଉପରେ ଗର୍ଭର ବିକାଶ ନିର୍ଭର କରେ । ଏହି ଅବସ୍ଥାରେ ଖାଦ୍ୟର ପରିମାଣ ବା ମାତ୍ରା ଶିଶୁର ଗଠନପାଇଁ ଯେତେ ଆବଶ୍ୟକ ନୁହେଁ ଖାଦ୍ୟର ଗୁଣ ତାଠାରୁ ଅଧିକ ପ୍ରୟୋଜନ । ଶରୀରଗଠନ ପାଇଁ ପ୍ରୋଟିନ୍

ଜାତୀୟ ଖାଦ୍ୟ, ଶରୀର ପାଇଁ ଜାଳେଣି ଯୋଗାଇବାକୁ ଓ ଚର୍ବି ଗଚ୍ଛିତ କରି ରଖିବା ପାଇଁ ଚର୍ବିଜାତୀୟ ଖାଦ୍ୟ, ଶକ୍ତି ଓ ବଳ ପାଇଁ ଶ୍ୱେତସାର ଜାତୀୟ ଖାଦ୍ୟ ମାତା ଖାଇବା ଆବଶ୍ୟକ । ଗର୍ଭର ଉତ୍ତମ ସ୍ୱାସ୍ଥ୍ୟ ପାଇଁ ମୋଟ ଉପରେ ମାତାର ଖାଦ୍ୟରେ ସମସ୍ତ ପ୍ରକାରର ଖାଦ୍ୟପ୍ରାଣ ରହିବା ଆବଶ୍ୟକ । ତେଣୁ ଗର୍ଭବତୀ ନାରୀମାନେ ଦୁଗ୍ଧ, ଫଳ, ଅଣ୍ଡା, ମାଛ, ମାଂସ, କଲିଜା, ଶାକସବ୍ଜି ଓ ତଟକା ପରିବା ଖାଇବା ଆବଶ୍ୟକ ।

କିନ୍ତୁ ଗର୍ଭବତୀ ମାତା ଯଦି କେବଳ ପଖାଳ, ଶାଗ ବା ଭାତ, ଡାଲି, ତରକାରୀ ଖାଆନ୍ତି ତେବେ ଗର୍ଭସ୍ଥ ଶିଶୁ ଶରୀରର ସୁସ୍ଥ ବିକାଶ ହେବନାହିଁ । ଏତଦ୍‌ବ୍ୟତୀତ ଜଣକର ଖାଦ୍ୟରୁ ଦୁଇଜଣ ବ୍ୟକ୍ତି ସଶରୀର ଜୀବନଧାରଣ କରୁଥିବାରୁ ପୁଷ୍ଟିକର ଖାଦ୍ୟ ଖାଇବା ଗର୍ଭବତୀ ମାତାର ଅତ୍ୟନ୍ତ ଆବଶ୍ୟକ ।

ଗର୍ଭବତୀ ମାତାର ଅତ୍ୟଧିକ ଖାଦ୍ୟାଭାବ ଘଟିଲେ ଶିଶୁଠାରେ ମାନସିକଶକ୍ତି-ହୀନତା ଓ ଶାରୀରିକ ଅସ୍ୱାଭାବିକତା, ଯଥା—ରିକେଟ୍, ସ୍ନାୟବିକ ଅସ୍ଥିରତା, ସାଧାରଣ ଶାରୀରିକ ଦୁର୍ବଳତା, ଅପସ୍ମାର, ମସ୍ତିଷ୍କର ପକ୍ଷାଘାତ, ତ୍ରୁଟିପୂର୍ଣ୍ଣ ଦାନ୍ତ, ସ୍ନାୟୁଗତ ମାନସିକ ବିଶୃଙ୍ଖଳତା ପ୍ରଭୃତି ରୋଗ ଦେଖାଯାଏ । ଗର୍ଭବତୀ ମାତାର ଖାଦ୍ୟରେ ଜୀବନୀକା 'ଖ'ର ଅଭାବ ଘଟିଲେ ପ୍ରାରମ୍ଭିକ ଅବସ୍ଥାରେ ଶିଶୁର ବୌଦ୍ଧିକ ବିକାଶ ବାଧାପ୍ରାପ୍ତ ହୁଏ ।

ପ୍ରସବର ୩ମାସଠାରୁ ୬ମାସ ପୂର୍ବରୁ ଗର୍ଭବତୀ ମାତା ଖାଇଥିବା ଖାଦ୍ୟ ଉପରେ ଅନୁସନ୍ଧାନ କରି ବ୍ରୁରକେ (୧୯୪୩) ନିମ୍ନଲିଖିତ ତଥ୍ୟର ସନ୍ଧାନ ପାଇଥିଲେ । ଯେଉଁ ଗର୍ଭବତୀ ମାତାମାନେ ପୁଷ୍ଟିକର ଖାଦ୍ୟ ଖାଇଥିଲେ ସେମାନଙ୍କର ଅର୍ଦ୍ଧେକ ଶିଶୁଙ୍କର ଉତ୍କୃଷ୍ଟ ଶାରୀରିକ ଓ ମାନସିକ ବିକାଶ ହୋଇଥିଲା । ୪୫ଭାଗଙ୍କଠାରେ ସାମାନ୍ୟ ଧରଣର ଶାରୀରିକ ନ୍ୟୂନତା ଦୃଷ୍ଟିଗୋଚର ହୋଇଥିଲା । ଅପର ପକ୍ଷରେ ପୁଷ୍ଟିସାର ଜୀବନୀକାବିହୀନ ଖାଦ୍ୟ ଖାଇଥିବା ମାତା ୬୭ଭାଗ ମଲପିଲା ଜନ୍ମ କରିଥିଲେ ଓ ଅନ୍ୟ କେତେକ ଶିଶୁ ପ୍ରସବର ୩ଦିନ ପରେ ମୃତ୍ୟୁବରଣ କରିଥିଲେ । କେତେକଙ୍କର ଜନ୍ମଗତ ଦୈନ୍ୟ ଓ ଆଉ କେତେକ-ଙ୍କର ଅସ୍ୱାଭାବିକତା ଦେଖାଦେଇଥିଲା । ପରୀକ୍ଷା ଓ ଅନୁସନ୍ଧାନରୁ ଜଣାଯାଏ ଯେ ଗର୍ଭବତୀ ସ୍ତ୍ରୀଙ୍କର ଖାଦ୍ୟାଭାବ ଯୋଗୁ ଶିଶୁମାନଙ୍କୁ ବିଦ୍ୟାଳୟରେ ଉପଯୋଜନ କରିବାକୁ ଏବଂ ଶ୍ରେଣୀରେ କୃତିତ୍ୱ ଲାଭ କରିବାକୁ ଅସୁବିଧା ହୁଏ । ମାତାର ଖାଦ୍ୟାଭାବରୁ ଗର୍ଭର ସ୍ନାୟୁତନ୍ତ୍ରକୁ ସୁରକ୍ଷିତ ରଖିଥିବା ଏକପ୍ରକାରର ଚର୍ବିଜାତୀୟ ପଦାର୍ଥ Myelinର ଅଭାବ ଯୋଗୁ ଗର୍ଭର ମାନସିକ ବିକାଶ ମନ୍ଥର ହୋଇଯାଏ । ମାନବ ସନ୍ତାନଠାରେ ଏହି Myelin ୭ ମାସରେ ଗଠିତ ହୁଏ । ଯଦି ଏହି ସମୟରେ ମାତା ଉପଯୁକ୍ତ ଖାଦ୍ୟ ନ ପାଏ, ତେବେ ତାହାର ଗଠନ ବ୍ୟାହତ ହୁଏ ଏବଂ ମସ୍ତିଷ୍କର କାର୍ଯ୍ୟକଳାପ ମଧ୍ୟ ବାଧାପ୍ରାପ୍ତ ହୁଏ । ଅଧ୍ୟୟନରୁ ଜଣାଯାଏ ଯେ, ପୁଷ୍ଟିକର ଖାଦ୍ୟ ଅଭାବରୁ ଜରାୟୁରେ ବୃଦ୍ଧିଲାଭ କରୁଥିବା ଗର୍ଭର ଲମ୍ବ, ଓଜନ ସ୍ୱାଭାବିକ ଓ ଉପଯୁକ୍ତ ଖାଦ୍ୟ ଖାଉଥିବା ମାତାଙ୍କର ଶିଶୁମାନଙ୍କଠାରୁ ଯଥେଷ୍ଟ କମ୍ ହୁଏ ।

ଦାରିଦ୍ର୍ୟ, ଯୁଦ୍ଧଜନିତ ଅସ୍ୱାଭାବିକ ପରିସ୍ଥିତି ଗର୍ଭାବସ୍ଥାରେ ଉପଯୁକ୍ତ ଖାଦ୍ୟ ଖାଇବା ସମ୍ବନ୍ଧରେ ଅଜ୍ଞତା କିମ୍ବା ଆଧୁନିକ ଫେସନକୁ ସ୍ମୃତି ଶରୀରଗଠନକୁ ପତଳା ରଖିବା ପାଇଁ ଇଚ୍ଛାକରୁଥିବା ହେତୁ ଗର୍ଭବତୀ ମାତାଙ୍କଠାରେ ଖାଦ୍ୟାଭାବ ଘଟିଥାଏ । କିନ୍ତୁ ଏହା ଗର୍ଭସ୍ଥ ଶିଶୁର ସ୍ୱାସ୍ଥ୍ୟ ଓ ଶରୀର ଗଠନ ପକ୍ଷରେ ବିଶେଷ କ୍ଷତିକାରକ ହୁଏ । ଗତ ଦ୍ୱିତୀୟ ମହାଯୁଦ୍ଧ ବେଳେ ଏହାର କୁ ପରିଣାମ ଲକ୍ଷ୍ୟ କରାଯାଇଅଛି ।

ଦରିଦ୍ର ପରିବାରର ଗର୍ଭବତୀ ସ୍ତ୍ରୀମାନେ ସାଧାରଣତଃ ଦୁଇବେଳା ପେଟପୁରି ଖାଦ୍ୟ ପାଆନ୍ତି ନାହିଁ । ପୁଷ୍ଟିସାର ଖାଦ୍ୟ ବା ପାଇବେ କୁଆଡ଼ୁ ? ତେଣୁ ସେମାନଙ୍କଠାରୁ ଜନ୍ମଲାଭ କରିଥିବା ଅଧିକାଂଶ ଶିଶୁଙ୍କଠାରେ ଦୁର୍ବଳତା ଓ ରକ୍ତସ୍ୱଳତା ଦେଖାଯାଏ । ସେମାନେ ଶିକ୍ଷାକ୍ଷେତ୍ରରେ ମଧ୍ୟ କୃତିତ୍ୱ ଅର୍ଜନ କରିପାରନ୍ତି ନାହିଁ । ଏସବୁ ଦୃଷ୍ଟିରୁ ଗର୍ଭବତୀ ମାତା ନିମିତ୍ତ ପୁଷ୍ଟିସାର ଖାଦ୍ୟ ଯେ କେତେ ଦରକାର, ତାହା ସହଜରେ ଅନୁମେୟ ।

ମାତାର ସ୍ୱାସ୍ଥ୍ୟ—ମାତାର ସ୍ୱାସ୍ଥ୍ୟ ଗର୍ଭସ୍ଥ ଶିଶୁର ସ୍ୱାସ୍ଥ୍ୟ, ଶରୀରଗଠନ, ବୃଦ୍ଧି ଏବଂ ବିକାଶକୁ ପ୍ରଭାବିତ କରେ । ମାତାଠାରେ ଯଦି ନିମ୍ନଲିଖିତ ଅବ୍ୟବସ୍ଥା ଓ ରୋଗ ଦେଖାଯାଏ ତେବେ ଗର୍ଭସ୍ଥ ଶିଶୁର ବିକାଶ ପକ୍ଷରେ ଏହା କ୍ଷତିକାରକ ହୋଇଥାଏ ।

(କ) ଅନ୍ତଃସ୍ରାବୀ ଗ୍ରନ୍ଥୀମାନଙ୍କର ଅବ୍ୟବସ୍ଥା—ଥାଇରଏଡ୍ ଗ୍ରନ୍ଥିର ହରମୋନ ସ୍ୱାଭାବିକ ଅପେକ୍ଷା କମ୍ ନିଃସରିତ ହେଲେ ବାମନତ୍ୱ ଦେଖାଯାଏ । ଅର୍ଥାତ୍ ହାଡ଼ର ସ୍ୱାଭାବିକ ବୃଦ୍ଧି ହୁଏ ନାହିଁ, ତଳପେଟ ଫୁଲି ପଡ଼ାକୁ ବାହାରିପଡ଼େ, ଶରୀରର ଚର୍ମ ମୋଟା ଓ ମସୃଣ ହୋଇଯାଏ, ମୁଣ୍ଡବାଳ ଟାଆଁସିଆ ହୋଇଯାଏ ଏବଂ ଧୀଶକ୍ତିର ଉପଯୁକ୍ତ ବିକାଶ ହୁଏନାହିଁ । ଅନ୍ତଃସ୍ରାବୀ ଗ୍ରନ୍ଥିମାନଙ୍କର ଅସ୍ୱାଭାବିକ ନିଃସରଣ ଯୋଗୁ ମାଇକ୍ରୋସେଫାଲି ନାମକ ରୋଗ ହୁଏ । ଏହି ରୋଗ ଯୋଗୁ ଖପୁରି ଛୋଟ ହୁଏ ଏବଂ ମାନସିକ ଦୈନ୍ୟ ଦେଖାଯାଏ । ଏହି କାରଣରୁ ମଧ୍ୟ ଛୋଟ ଛୋଟ ଅଙ୍କାବଙ୍କା ଆଖିପତା ସହ ଉପଯୁକ୍ତ ମାନସିକ ବିକାଶ ହୋଇନଥିବା ମଙ୍ଗୋଲିଆନ ଶିଶୁ ଜନ୍ମ ହେବାର ଦେଖାଯାଏ ।

ଅନ୍ତଃସ୍ରାବୀ ଗ୍ରନ୍ଥିମାନେ ବିଶେଷତଃ ଶିଶୁର ହାଡ଼ର ବୃଦ୍ଧି ଓ ବିକାଶକୁ ପ୍ରଭାବିତ କରନ୍ତି । ଯେଉଁ ଗର୍ଭବତୀ ମାତାଙ୍କର ଥାଇରଏଡ୍ ଗ୍ରନ୍ଥିରୁ ଯଥେଷ୍ଟ ପରିମାଣରେ ରସ ନିର୍ଗତ ହୁଏନାହିଁ ସେମାନଙ୍କର ଶିଶୁର ମେରୁଦଣ୍ଡର ଅସ୍ଥି ଉତ୍ତମରୂପେ ବୃଦ୍ଧିଲାଭ କରି-ପାରେ ନାହିଁ ଓ ଶିଶୁ ନିସ୍ପନ୍ଦିସ୍ତ ହୋଇଯାଏ ।

(ଖ) ଡିଆଁ ରୋଗ—ଉପଦଂଶ, ମେହ, ପୋଲିଓ, ମାଇଲାଇଟିସ୍ ଏବଂ ଜର୍ମାନ ମିଲମିଲା ପ୍ରଭୃତି ରୋଗ ଦ୍ୱାରା ଯଦି ଗର୍ଭବତୀ ମାତା ଶିଶୁର ପ୍ରାକ୍ ଜନ୍ମ ବିକାଶର ପ୍ରାରମ୍ଭିକ ପର୍ଯ୍ୟାୟରେ ଆକ୍ରାନ୍ତ ହୁଅନ୍ତି, ଅଜନ୍ମିତ ଶିଶୁପାଇଁ ଏହି ରୋଗଗୁଡ଼ିକର ପ୍ରଭାବ ଅତ୍ୟନ୍ତ ମାରାତ୍ମକ ହୋଇଥାଏ । ଏହି କାରଣରୁ ଗର୍ଭପାତ ବା ମୃତ ପ୍ରସବ ହୁଏ କିମ୍ବା

ଶିଶୁ ଅନ୍ଧ, ମୂକ ଓ ବଧିର ବା ରୁଗ୍ଣ ଅବସ୍ଥାରେ ଜନ୍ମଲାଭ କରେ । କେତେକକ୍ଷେତ୍ରରେ ନବଜାତ ଶିଶୁଙ୍କଠାରେ ମାନସିକ ଦୈନ୍ୟ, ମାଇକ୍ରୋସେଫାଲି ରୋଗ, ମାଂସପେଶୀରେ ଅବ୍ୟବସ୍ଥା ପ୍ରଭୃତି ଦେଖାଯାଏ । ୧୮ ସପ୍ତାହରୁ କମ୍ ବୟସର ଗର୍ଭ ମାତାର ଉପଦଂଶ ରୋଗଦ୍ୱାରା ପ୍ରଭାବିତ ହୁଅନ୍ତି ନାହିଁ । ତେଣୁ ଏହି ମାରାତ୍ମକ ରୋଗରେ ଆକ୍ରାନ୍ତ ହୋଇଥିବା ଗର୍ଭବତୀ ମାତାଙ୍କର ଚିକିତ୍ସା ପ୍ରାକ୍ ଜନ୍ମ ବିକାଶର ପ୍ରାରମ୍ଭିକ ଅବସ୍ଥାରେ କରାଗଲେ, ଶିଶୁ ଏହି ରୋଗର ପ୍ରଭାବରୁ ରକ୍ଷା ପାଇପାରିବାର ଯଥେଷ୍ଟ ସମ୍ଭାବନା ଥାଏ ।

ଅନୁସନ୍ଧାନ ତଥା ପର୍ଯ୍ୟବେକ୍ଷଣରୁ ଜଣାଯାଏ ଯେ ଗର୍ଭସଞ୍ଚାର ହେବାର ୩ ମାସ ଭିତରେ ଉପଦଂଶ ରୋଗରେ ଆକ୍ରାନ୍ତ ହୋଇଥିବା ମାତାଙ୍କ ମଧ୍ୟରୁ ପ୍ରାୟ ୧/୨ ଭାଗଙ୍କର ବିକଳାଙ୍ଗ ଶିଶୁ ଜନ୍ମଲାଭ କରିଥାନ୍ତି । ମୋତିଆ, ବଧିରତା, ମାନସିକ ଶକ୍ତିହୀନତା ଓ ହୃଦ୍‌ଯନ୍ତ୍ରରେ ଅସ୍ୱାଭାବିକତା ପ୍ରଭୃତି ଏହି କାରଣରୁ ଶିଶୁମାନଙ୍କଠାରେ ଦୃଷ୍ଟିଗୋଚର ହୋଇଥାଏ (Shock, 1947) । ଏହି କାରଣରୁ ଗର୍ଭାବସ୍ଥାର ପ୍ରାରମ୍ଭିକ ପର୍ଯ୍ୟାୟରେ ରକ୍ତ ପରୀକ୍ଷା କରାଯାଇ ଉପଦଂଶ, ମେହ ପ୍ରଭୃତି ରୋଗଦ୍ୱାରା ଗର୍ଭବତୀ ମାତା ଆକ୍ରାନ୍ତ କି ନା ଜାଣିବା ଉଚିତ । ଯଦି ମାତା ଏହି ରୋଗରେ ଆକ୍ରାନ୍ତ ହୋଇଥାନ୍ତି ଏହାର ଉପଶମ ପାଇଁ ଉପଯୁକ୍ତ ଚିକିତ୍ସା ଅପରିହାର୍ଯ୍ୟ ।

(ଗ) ବହୁକାଳ ଧରି ଲାଗିରହିଥିବା ରୋଗ —ଯେଉଁସବୁ ରୋଗଦ୍ୱାରା ମାତା ବହୁକାଳ ଧରି ଆକ୍ରାନ୍ତ ହୋଇଥାନ୍ତି, ସେହି ରୋଗଦ୍ୱାରା ଯେ ଶିଶୁ ଆକ୍ରାନ୍ତ ହୁଏ ତାହା ନୁହେଁ । ମାତ୍ର ଏହି ରୋଗ ଯୋଗୁ ମାତା ଏପରି ଦୁର୍ବଳ ହୋଇଯାଏ ବା ତା'ର ଶରୀରର ବିକାଶରେ ଏପରି ତ୍ରୁଟି ଦେଖାଯାଏ ଯେ, ଭବିଷ୍ୟତରେ ଏହିସବୁ ବେମାରିଦ୍ୱାରା ଶିଶୁ ଆକ୍ରାନ୍ତ ହେବାର ଯଥେଷ୍ଟ ସମ୍ଭାବନା ଥାଏ । ଏହି ରୋଗମାନଙ୍କ ମଧ୍ୟରେ ଯକ୍ଷ୍ମା, ବହୁମୂତ୍ର ଓ କର୍କଟ ରୋଗଗୁଡ଼ିକ ପ୍ରଧାନ । ଗର୍ଭବତୀ ମାତା ବହୁକାଳ ଧରି ବହୁମୂତ୍ର ରୋଗରେ ଆକ୍ରାନ୍ତ ହୋଇଥିଲେ ଜନ୍ମ ହେବାକ୍ଷଣି ବା କିଛିକାଳ ପରେ ଶିଶୁର ବହୁକ୍ଷେତ୍ରରେ ମୃତ୍ୟୁ ଘଟେ । ଅଥବା ଶିଶୁ ବିକଳାଙ୍ଗ ଅବସ୍ଥାରେ ଜନ୍ମଲାଭ କରେ । ମାତାର ବହୁମୂତ୍ର ରୋଗ ଯୋଗୁ ଗର୍ଭର ଶ୍ୱାସକ୍ରିୟା ଓ ରକ୍ତସଞ୍ଚାଳନ ପ୍ରକ୍ରିୟା ମଧ୍ୟ ପ୍ରଭାବିତ ହୁଏ (Gell is Asia – 1959) ।

ଗର୍ଭବତୀ ମାତା ବହୁମୂତ୍ର ରୋଗରେ ଆକ୍ରାନ୍ତ ହୋଇଛି କି ନାହିଁ ଜାଣିବାପାଇଁ ଡାକ୍ତରମାନେ ପରସ୍ରା ପରୀକ୍ଷା ପାଇଁ ଉପଦେଶ ଦେଇଥାନ୍ତି ।

ଅନ୍ୟାନ୍ୟ ରୋଗ —ମାତା ଓ ଭ୍ରୂଣର ରକ୍ତ ସଞ୍ଚାଳନ କ୍ରିୟା ମଧ୍ୟରେ କୌଣସି ପ୍ରତ୍ୟକ୍ଷ ସମ୍ବନ୍ଧ ନ ଥିବାରୁ ମାତାର ରୋଗ ଜୀବାଣୁ ଅତି ଅଳ୍ପ କ୍ଷେତ୍ରରେ ଭ୍ରୂଣକୁ ଆକ୍ରାନ୍ତ କରେ । ମାତ୍ର କେତେକ କ୍ଷେତ୍ରରେ ଦେଖାଯାଇଛି ଯେ ମାତାଠାରୁ ଗର୍ଭସ୍ଥ ଶିଶୁକୁ ବସନ୍ତ, ମିଳିମିଳା, ହାଡ଼ଫୁଟି ଓ ଗାଲୁଆ ପ୍ରଭୃତି ରୋଗ ହୁଏ । ମେଲେରିଆ ରୋଗରେ ବହୁଦିନ ଧରି ଆକ୍ରାନ୍ତ ହୋଇ କୁଇନାଇନ୍ ଔଷଧ ସେବନ କଲେ ନବଜାତ ଶିଶୁଠାରେ ବଧିରତା

ପରିଲକ୍ଷିତ ହୁଏ । ଗର୍ଭବତୀ ମାତାର Taxemia ରୋଗ ଫଳରେ ମାତାର ଗୋଡ଼ ହାତ ଫୁଲିଯାଏ, ମୂତ୍ରାଶୟ ଓ ରକ୍ତ ସଞ୍ଚାଳନକାରୀ ଯନ୍ତ୍ର ଭଲଭାବରେ କାର୍ଯ୍ୟ କରିପାରେ ନାହିଁ ଏବଂ ମାତାର ଏହି ଅବସ୍ଥା ଗର୍ଭକୁ ପ୍ରଭାବିତ କରିବାର ବହୁ ସମ୍ଭାବନା ଥାଏ ।

Rh, ରକ୍ତ ଉତ୍ପାଦକ—ସମ୍ପ୍ରତି ଡାକ୍ତରୀ ଗବେଷଣାରୁ ଜଣାଯାଇଛି ଯେ ମାତା ଓ ସନ୍ତାନମାନଙ୍କର ଜନ୍ମଗତ ପାର୍ଥକ୍ୟ ରହିଥିଲେ ଏହି Rh, ରକ୍ତ ପ୍ରକାରରେ ଅସଙ୍ଗତି ଦେଖାଦିଏ ଓ ତାହା ଶିଶୁର ବିକାଶରେ ଅସ୍ୱାଭାବିକତା ଜାତ କରାଏ । ଏହି ଅସ୍ୱାଭାବିକତା ତାର ଜୀବନ ପକ୍ଷରେ ବିପଦର ସମ୍ଭାବନା ଜାତ କରାଏ ।

ଶିଶୁ ଓ ମାତା ଉଭୟେ Rh ଅନୁକୂଳ ବା ହଁକାରୀ (Rh Positive) ହୋଇ-ଥିଲେ ଉଭୟଙ୍କ ରକ୍ତ ପ୍ରକାରରେ ସଙ୍ଗତି ରହେ ଏବଂ ସନ୍ତାନର କିଛି କ୍ଷତି ହୁଏ ନାହିଁ । କିନ୍ତୁ ଶିଶୁର ରକ୍ତପ୍ରକାର ଯଦି Rh ଅନୁକୂଳ (Rh Positive) ହୋଇ ମାତାର ରକ୍ତ ପ୍ରକାର Rh ପ୍ରତିକୂଳ ବା ନକାରୀ (Rh Negetive) ହୋଇଥାଏ ତେବେ ଗର୍ଭର ଲୋହିତ ରକ୍ତ କଣିକାଗୁଡ଼ିକ ନଷ୍ଟ ହୋଇଯାଏ ଏବଂ ଅମ୍ଳଜାନର ବଣ୍ଟନରେ ଅସୁବିଧା ଜାତ ହୁଏ । ଫଳରେ ଗର୍ଭପାତ, ମୃତ ପ୍ରସବ ଏବଂ ନବଜାତ ଶିଶୁର ମୃତ୍ୟୁ ଘଟେ । ଯଦିବା ସୌଭାଗ୍ୟବଶତଃ ଶିଶୁ ବଞ୍ଚିଯାଏ, ସେ ପକ୍ଷାଘାତ ରୋଗ ବା ମାନସିକ ଦୈନ୍ୟଦ୍ୱାରା ଆକ୍ରାନ୍ତ ହେବାର ସମ୍ଭାବନା ଥାଏ । କାରଣ ଯେତେବେଳେ ବିକାଶର ଏକ ଅତି ଗୁରୁତ୍ୱ-ପୂର୍ଣ୍ଣ ପର୍ଯ୍ୟାୟରେ ଗର୍ଭର ବିକାଶ ପାଇଁ ଅମ୍ଳଜାନ ଯୋଗାଣ ଅତ୍ୟନ୍ତ ପ୍ରୟୋଜନ ଠିକ୍ ସେତିକବେଳେ ଅମ୍ଳଜାନର ଉପଯୁକ୍ତ ଯୋଗାଣରେ ବାଧା ଘଟିଲେ, ତାର ମସ୍ତିଷ୍କର ବିକାଶ ବ୍ୟାହତ ହୁଏ । ହିସାବରୁ ଜଣାଯାଏ, ପ୍ରାୟ ୨୦୦ ଜଣ ଗର୍ଭବତୀ ନାରୀଙ୍କର ୧ ଭାଗ ଶିଶୁଙ୍କଠାରେ Rh ରକ୍ତ ପ୍ରକାରରେ ଅସଙ୍ଗତିର କୁପ୍ରଭାବ ଲକ୍ଷ୍ୟ କରାଯାଇଅଛି । ଏଥିରୁ ଜଣାଯାଏ ପ୍ରତ୍ୟେକ ମାତା-ଶିଶୁ Rh ଅସଙ୍ଗତି ନବଜାତ ଶିଶୁକୁ ପ୍ରଭାବିତ କରେ ନାହିଁ (ମେଣ୍ଟେଗୁ ୧୯୫୦) । ସାଧାରଣତଃ ପ୍ରଥମ ଜାତ ଶିଶୁମାନେ ମାତା-ଶିଶୁ Rh ଅସଙ୍ଗତିର କୁ ପ୍ରଭାବର ଫଳାଫଳ ଭୋଗିନଥାନ୍ତି । କାରଣ ମାତାର ରକ୍ତରେ Rh ଅସଙ୍ଗତି ଯୋଗୁ ବିଷାକ୍ତ ଉପାଦାନ ଜାତହେବାପାଇଁ କିଛି ସମୟ ଲାଗେ ।

ଔଷଧ ଓ ନିଶାଦ୍ରବ୍ୟ—ଗର୍ଭବତୀ ମାତା କେତେଗୁଡ଼ିଏ ନିଶାଦ୍ରବ୍ୟ ସେବନ କଲେ, ଗର୍ଭର ବିକାଶ ଓ ଗଠନ ବ୍ୟାହତ ହୁଏ । ମେଲେରିଆ ଜ୍ୱରରେ ପୀଡ଼ିତ ହୋଇ ଗର୍ଭବତୀ ନାରୀ ଯଦି ଅତ୍ୟଧିକ କୁଇନାଇନ୍ ସେବନ କରନ୍ତି, ଶିଶୁ ବଧିର ହୋଇଯିବାର ସମ୍ଭାବନା ଥାଏ । ଜନ୍ମପୂର୍ବରୁ ମାତାର ପ୍ରସବ କଷ୍ଟ କମାଇବାପାଇଁ Barbiturates ଓ ଅନ୍ୟ କେତେ ଔଷଧ ସେବନ କରିବାକୁ ଦେଲେ ଶିଶୁର ମସ୍ତିଷ୍କରେ ଅମ୍ଳଜାନ ଯୋଗାଣ ବାଧାପ୍ରାପ୍ତ ହୁଏ ଏବଂ ଏହାଫଳରେ ମସ୍ତିଷ୍କ ଗଠନ କ୍ଷତିଗ୍ରସ୍ତ ହୁଏ ।

ଗର୍ଭବତୀ ମାତାଙ୍କର ପ୍ରାତଃ ଅସୁସ୍ଥତା ଦୂର କରିବା ପାଇଁ Thalidomide ନାମକ ଔଷଧ ବ୍ୟବହାର କଲେ Phocenelia ରୋଗ ହୁଏ । ଏହି ରୋଗ ଯୋଗୁ

ଅଣ୍ଟୁ, ଗଣ୍ଠି ଓ ଗୋଡ଼ର ଉପଯୁକ୍ତ ବିକାଶ ହୋଇପାରେ ନାହିଁ ଏବଂ ତାହାର ଲମ୍ବା ହାଡ଼-ଗୁଡ଼ିକ ବଢ଼ିପାରେ ନାହିଁ । କେତେକ ବୈଜ୍ଞାନିକଙ୍କ ମତରେ ବୈଦେଶିକ ରାସାୟନିକ ପଦାର୍ଥ ମାତାର ରକ୍ତପ୍ରବାହରେ ଯାଇ ଗର୍ଭର ରକ୍ତପ୍ରବାହ ସହିତ ମିଶେ ଓ ଅତ୍ୟଧିକ ଔଷଧ ସେବନ କଲେ ଗର୍ଭସ୍ଥ ଶିଶୁର ଗଠନ ବ୍ୟାହତ ହୋଇପାରେ ।

ମଦ୍ୟ — ଗର୍ଭବତୀ ମାତା ଅତ୍ୟଧିକ ମଦ୍ୟପାନ କଲେ ମାତାର ରକ୍ତ ଦୂଷିତ କରୁଥିବା ମଦ୍ୟ ଶିଶୁର ରକ୍ତକୁ ଦୂଷିତ କରି ତାର ବୃଦ୍ଧି ଓ ବିକାଶକୁ ବ୍ୟାହତ କରେ । ମଦ୍ୟରେ ଥିବା ରାସାୟନିକ ପଦାର୍ଥ ମାତାର ରକ୍ତରେ ମିଶି ଶିଶୁର ରକ୍ତ ପ୍ରବାହରେ ପ୍ରବେଶ କରେ ଏବଂ ସ୍ନାୟବିକ ଅସ୍ଥିରତା, ନିଦ୍ରାହୀନତା, ହୃତ୍ପିଣ୍ଡର କ୍ରିୟାକଳାପରେ ଅନିୟମିତତା ପ୍ରଭୃତି ଲକ୍ଷଣ ତଥା ବ୍ୟତିକ୍ରମ ସୃଷ୍ଟି କରେ । ମାତାର ଦୁଗ୍ଧରେ ମଧ୍ୟ ମଦ୍ୟର ରାସାୟନିକ ପଦାର୍ଥ ମିଶିଥାଏ । ଏହି ଦୁଗ୍ଧ ପାନକଲେ ଶିଶୁଠାରେ ସ୍ନାୟବିକ ଦୁର୍ବଳତା, ରକ୍ତହୀନତା ପ୍ରଭୃତି ଦୃଷ୍ଟିଗୋଚର ହୁଏ । ଅନେକ ମଦ୍ୟପ ମାତାଙ୍କ ଶିଶୁମାନଙ୍କର ଉପଯୁକ୍ତ ମାନସିକ ବିକାଶ ହୋଇନଥିଲେ ମଧ୍ୟ ଏହି ଅସ୍ୱାଭାବିକତା ମାତାର ଅତ୍ୟଧିକ ମଦ୍ୟପାନ ଯୋଗୁ କି ଶାରୀରିକ ଓ ମାନସିକ ଦୁର୍ବଳତା ଯୋଗୁ (ଯେଉଁଥିପାଇଁକି ମାତା ଅତ୍ୟଧିକ ମଦ୍ୟପାନ କରିବାକୁ ବାଧ୍ୟ ହୋଇଥାଏ) ତାହା ଏପର୍ଯ୍ୟନ୍ତ ସଠିକ ଭାବରେ ଜଣାପଡ଼ିନାହିଁ ।

ସେ ଯାହାହେଉ ଗର୍ଭବତୀ ମାତା ଯେ ମଦ୍ୟପାନ କରିବା ଅନୁଚିତ ଏଥିରେ ସନ୍ଦେହର ଅବକାଶ ନାହିଁ ।

ତମାଖୁ— ତମାଖୁରେ ଥିବା ନିକୋଟିନ ଏକ ଶକ୍ତିଶାଳୀ ବିଷାକ୍ତ ଦ୍ରବ୍ୟ । ଅତ୍ୟଧିକ ତମାଖୁ ପାନକଲେ ମାତାର ରକ୍ତଚାପ ଓ ହୃତ୍ପିଣ୍ଡ କ୍ରିୟାରେ ଗଣ୍ଡଗୋଳ ଜାତ ହୁଏ । ତମାଖୁ ପାନ କଲେ ପାଟି ଓ ତଣ୍ଟିର ପ୍ରତିରୋଧକ ଶକ୍ତି କମିଯାଏ । ବିଶେଷତଃ ପ୍ରାକ୍ ଜନ୍ମ ଅବସ୍ଥାର ଶେଷ ୬ ମାସ ମଧ୍ୟରେ ଧୂମପାନ କଲେ ଗର୍ଭସ୍ଥ ଶିଶୁର ହୃତ୍ପିଣ୍ଡର ଗତି ବୃଦ୍ଧି ପାଏ ।

ଅତ୍ୟଧିକ ଧୂମପାନ ସହିତ ଅପ୍ରାପ୍ତ ଶିଶୁ ପ୍ରସବର ସମ୍ବନ୍ଧ ଥିବାର ପ୍ରମାଣ ମିଳିଛି । ଦେଖାଯାଇଛି ଯେ ଯେଉଁ ସ୍ତ୍ରୀ ଲୋକମାନେ ଦିନକୁ ୧ରୁ ୧୦ଟି ପର୍ଯ୍ୟନ୍ତ ସିଗାରେଟ ପାନ କରନ୍ତି ସେମାନେ ମୋଟେ ଧୂମପାନ କରୁନଥିବା ସ୍ତ୍ରୀଙ୍କ ତୁଳନାରେ ଅଧିକ ଅପ୍ରାପ୍ତ ଶିଶୁ ପ୍ରସବ କରନ୍ତି ।

ଏତଦ୍‌ବ୍ୟତୀତ ନିକୋଟିନ୍ ବିଲେଇ ପ୍ରଭୃତି ଶିଶୁମାନଙ୍କଠାରେ ଦୁଗ୍ଧପାନ ଶକ୍ତି କମାଇଦେବାର ପ୍ରମାଣ ମିଳୁଛି । ମାନବ କ୍ଷେତ୍ରରେ ଏହା ସମ୍ଭବ ହେବାର ସୂଚନା ମିଳିଲେ ମଧ୍ୟ କୌଣସି ସ୍ପଷ୍ଟ ମନ୍ତବ୍ୟ ଦେବା ପୂର୍ବରୁ ଏହା ଉପରେ ଅଧିକ ଗବେଷଣା ହେବା ଆବଶ୍ୟକ ।

ଉପରୋକ୍ତ ତଥ୍ୟମାନଙ୍କରୁ ମନେହୁଏ ଯେ, ଶିଶୁର ମଙ୍ଗଳ ଦୃଷ୍ଟିରୁ ଗର୍ଭବତୀ ମାତାମାନେ ଧୂମପାନ ଅଭ୍ୟାସକୁ କମାଇବା ଆବଶ୍ୟକ ।

**ରଞ୍ଜନରଶ୍ମି ଓ ରେଡ଼ିୟମ ପ୍ରୟୋଗ**—ଜରାୟୁରେ ହୋଇଥିବା କର୍କଟ ରୋଗର ଚିକିତ୍ସା ପାଇଁ ତଳ ପେଟର ଅଧୋଭାଗରେ ଅତ୍ୟଧିକ ପରିମାଣରେ ରଞ୍ଜନରଶ୍ମି ପ୍ରୟୋଗ ଭ୍ରୂଣ ପକ୍ଷରେ କ୍ଷତିକାରକ ହୁଏ ଅଥବା ଗର୍ଭପାତର ସମ୍ଭାବନା ଥାଏ । କେତେକ ଅଧ୍ୟୟନରୁ ଜଣାଯାଏ ଯେ ଗର୍ଭାବସ୍ଥାର ପ୍ରାରମ୍ଭିକ ପର୍ଯ୍ୟାୟରେ ରଞ୍ଜନରଶ୍ମି ପ୍ରୟୋଗ କଲେ ଶିଶୁମାନଙ୍କର କେନ୍ଦ୍ର-ସ୍ନାୟୁମଣ୍ଡଳରେ ଗୋଳମାଳ, ମାଇକ୍ରୋସେଫାଲି ରୋଗରେ ଆକ୍ରାନ୍ତ ହୋଇ ଅତି କ୍ଷୁଦ୍ର ମୁଣ୍ଡଆ ଖପୁରି, ବୁଦ୍ଧି ଶକ୍ତିହୀନତା ପ୍ରଭୃତି ଦେଖାଯାଏ ।

**ମାତାର ଆବେଗ**—କ୍ରୋଧ, ଭୟ, ଦୁଶ୍ଚିନ୍ତା ପ୍ରଭୃତି ଅତ୍ୟଧିକ ଆବେଗର ଅନୁଭୂତି ଓ ଦୁଶ୍ଚିନ୍ତା ହେତୁ ମାତାର ଗ୍ରନ୍ଥିମାନଙ୍କରୁ ହରମୋନ ନିଃସରିତ ହୋଇ ଗ୍ରନ୍ଥିଗତ ଅସନ୍ତୁଳନ ଦେଖାଦିଏ ଏବଂ ଏହି ଅସନ୍ତୁଳତା ଗର୍ଭର ବିକାଶ ପକ୍ଷରେ ଅତ୍ୟନ୍ତ କ୍ଷତିକାରକ ହୁଏ । ଯଦି ଗର୍ଭସଞ୍ଚାର ପାଇଁ ମାତାଙ୍କର ଇଚ୍ଛା ନଥାଏ ବା ସେ ସମ୍ବନ୍ଧରେ ସେ ଦୁଶ୍ଚିନ୍ତା ତଥା ଉତ୍କଣ୍ଠା ପ୍ରକାଶ କରୁଥାନ୍ତି ଯଦି ଗର୍ଭସଞ୍ଚାର ମାତାଠାରେ ଅସୁଖକର ମନୋଭାବ ଉଦ୍ରେକ କରୁଥାଏ, ତେବେ ଗ୍ରନ୍ଥି ରୁ ରସ ନିର୍ଗତ ହୋଇ ରକ୍ତରେ ମିଶେ ଏବଂ ଶିଶୁ ଏହି ରକ୍ତ ବ୍ୟବହାର କଲେ ଉପଯୋଜନରେ ଅସୁବିଧା ସୃଷ୍ଟି ହୁଏ । ଅତ୍ୟଧିକ କ୍ରିୟାକଳାପ, ଅସ୍ଥିରତା, ନିଦ୍ରାହୀନତା ସଙ୍ଗେ ସଙ୍ଗେ ଶିଶୁ ମଧ୍ୟ ପେଟମରା ରୋଗରେ ଆକ୍ରାନ୍ତ ହୁଏ । ଶିଶୁର ମାନସିକ ବିକାର ଶିଥିଳ ହୁଏ । ଏହି ଶିଶୁମାନେ ବହୁତ ସମୟ ଧରି କାନ୍ଦନ୍ତି । ଆସ୍ତେ ଆସ୍ତେ ବଢ଼ନ୍ତି ଏବଂ ସେମାନଙ୍କୁ ଖୁଆଇବା କଷ୍ଟକର ହୁଏ । ଏହିସବୁ କାରଣରୁ ଗର୍ଭାବସ୍ଥାରେ ମାତା ଯେପରି ଅତ୍ୟଧିକ ଆବେଗିକ ଅନୁଭୂତି ମଧ୍ୟଦେଇ ଗତି ନ କରେ ସେଥିପ୍ରତି ତୀକ୍ଷ୍ଣ ଦୃଷ୍ଟି ଦେବାକୁ ହେବ ।

ଅଧ୍ୟୟନରୁ ଜଣାଯାଏ ଯେ, ୧୯-୨୮ ବର୍ଷ ବୟସ ସୀମା ଭିତରେ ପିତାମାତାଙ୍କ-ଠାରୁ ଜନ୍ମିତ ଶିଶୁ ସର୍ବୋତ୍କୃଷ୍ଟ ହୁଅନ୍ତି । କାରଣ ୧୯ ବର୍ଷ ପୂର୍ବରୁ ମାତାର ଜନନେନ୍ଦ୍ରିୟ ସମ୍ପୂର୍ଣ୍ଣ ବିକାଶ ଲାଭ କରି ନ ଥାଏ ଏବଂ ପ୍ରସବ କରିବା ପାଇଁ ଆବଶ୍ୟକୀୟ ହରମୋନ ବିକାଶର ଉଚ୍ଚତମ ସ୍ତରରେ ପହଞ୍ଚିନଥାନ୍ତି । ୧୯ ବର୍ଷ ହେବା ପୂର୍ବରୁ ମାତା ସନ୍ତାନ ପ୍ରସବ କଲେ ଗର୍ଭପାତ ବା ମୃତ ସନ୍ତାନ ହୋଇପାରେ ଅଥବା ଜନ୍ମିତ ସନ୍ତାନଠାରେ ଅନେକ ଦୋଷତ୍ରୁଟି ଲକ୍ଷ୍ୟ କରାଯାଇପାରେ । ୩୫ ବର୍ଷ ପରେ ମାତାର ଅନ୍ତଃସ୍ରାବୀ ଗ୍ରନ୍ଥି-ମାନଙ୍କରେ ଅସନ୍ତୁଳନ ଦେଖାଦିଏ । ସ୍ତ୍ରୀ ଋତୁ ବନ୍ଦ ହେବାର ଯେତେ ନିକଟବର୍ତ୍ତୀ ହୁଏ ଅନ୍ତଃସ୍ରାବୀ ଅସନ୍ତୁଳନ ହେବାର ସେତେ ଅଧିକ ସମ୍ଭାବନା ଥାଏ । ଏହି ଅସନ୍ତୁଳନ ଜରାୟୁର ପରିପକ୍ୱତାକୁ ଶିଥିଳ କରିଦିଏ ଏବଂ ଭ୍ରୂଣର ବୃଦ୍ଧି ଓ ବିକାଶର ମାତ୍ରାକୁ ହ୍ରାସ କରିଏ । ଟରମାନଙ୍କ ମତରେ ପିତାମାତାଙ୍କର ବୟସ ଯଥାକ୍ରମେ ୩୩-୩୫ ଓ ୨୮-୨୯ ବର୍ଷ ହୋଇଥିବା ବେଳେ ସାଧାରଣତଃ ପ୍ରତିଭାଶାଳୀ ଓ ଧୀମାନ୍ ଶିଶୁ ଜନ୍ମଲାଭ କରେ ।

**ଗର୍ଭାଶୟରେ ଭିଡ଼**—ଏକରୁ ଅଧିକ ଶିଶୁ ଗର୍ଭାଶୟରେ ବୃଦ୍ଧିଲାଭ କଲେ ଗର୍ଭାଶୟ ପ୍ରସାରିତ ହୁଏ । ଯେତେବେଳେ ଏହା ପ୍ରସାରଣର ସୀମା ଲଂଘନ କରେ, ଗର୍ଭସ୍ଥ ଶିଶୁ ଜନ୍ମଲାଭ କରିବାର ଉପଯୁକ୍ତ ସମୟ ହୋଇନଥିଲେ ମଧ୍ୟ ଗର୍ଭରେ ବାସ କରିବାକୁ ସ୍ଥାନ ନ ପାଇ ପରିପକ୍ୱ ହେବା ପୂର୍ବରୁ ଜନ୍ମଲାଭ କରି ଅନେକ ସମୟରେ ମୃତ୍ୟୁ ମୁଖରେ ପଡ଼ନ୍ତି । ଅଭିନ୍ନ ଯମଜଙ୍କୁ ଗୋଟିଏ ଅଳରେ ବୃଦ୍ଧିଲାଭ କରିବାକୁ ପଡ଼ୁଥିବାରୁ ଗର୍ଭାଶୟରେ ଭିଡ଼ ହୁଏ ଓ ଉପରୋକ୍ତ ବିକାଶାତ୍ମକ ଅସ୍ୱାଭାବିକତା ଦେଖାଦିଏ ।

**ଉପସଂହାର**—ମାତୃଗର୍ଭରେ ଶିଶୁ ବୃଦ୍ଧିଲାଭ କରୁଥିବା ବେଳେ ମାତାର ପରିବେଶ ଶିଶୁକୁ କିପରି ଭାବରେ ପ୍ରଭାବିତ କରେ ତାହା ଉପରୋକ୍ତ ଆଲୋଚନାରୁ ଜଣା-ଯାଏ । ଏହି ପରିବେଶ ଶିଶୁର ଶାରୀରିକ ଓ ମାନସିକ ବିକାଶ ତଥା ଭବିଷ୍ୟତ ଉପଯୋଜନ ପାଇଁ ଯେ କେତେ ଗୁରୁତ୍ୱପୂର୍ଣ୍ଣ ତାହା କହିବା ବାହୁଲ୍ୟ ମାତ୍ର । ବିକାଶର ମୂଳଦୁଆ ଏହି ଅବସ୍ଥାରେ ପଡ଼ୁଥିବାରୁ ପାରିପାର୍ଶ୍ୱିକ ଅବସ୍ଥାରେ ବ୍ୟତିକ୍ରମ ଶିଶୁ ପକ୍ଷରେ ଅତ୍ୟନ୍ତ କ୍ଷତି-କାରକ ଅଟେ । ଏ ଦୃଷ୍ଟିରୁ ଗର୍ଭର ଉଚିତ ଏବଂ ସୁସ୍ଥ ବିକାଶ ପାଇଁ ପାରିପାର୍ଶ୍ୱିକ ଅବସ୍ଥା ଉପଯୁକ୍ତ ଏବଂ ଅନୁକୂଳ ହେବା ବାଞ୍ଛନୀୟ ଅଟେ । ଭ୍ରୂଣାବସ୍ଥାରେ ମାନବ ଶରୀରର ସମସ୍ତ ଅଙ୍ଗପ୍ରତ୍ୟଙ୍ଗଗୁଡ଼ିକ ଗଠିତ ହେଉଥିବାରୁ ପ୍ରାକ୍ ଜନ୍ମ ଅବସ୍ଥାର ପ୍ରାରମ୍ଭିକ ୩ମାସ ଭ୍ରୂଣର ବିକାଶ ପାଇଁ ସର୍ବାପେକ୍ଷା ଗୁରୁତ୍ୱପୂର୍ଣ୍ଣ ସମୟ ଅଟେ । ଏହି ସମୟରେ ପ୍ରତିକୂଳ ପରିବେଷ୍ଟନୀ ଭ୍ରୂଣର ବିକାଶକୁ ସର୍ବାଧିକ ପରିମାଣରେ ବ୍ୟାହତ କରେ ।

ଶିଶୁକୁ ସୁସ୍ଥ ବ୍ୟକ୍ତିତ୍ୱସମ୍ପନ୍ନ ମାନବ ରୂପରେ ଗଢ଼ିବା ପାଇଁ, ତାର ଉତ୍ତମ ଶାରୀରିକ ଓ ମାନସିକ ବିକାଶ ନିମିତ୍ତ ପ୍ରାକ୍‌ଜନ୍ମ ବିକାଶ ଅବସ୍ଥାରେ ବିଭିନ୍ନ ଉତ୍ପାଦକଗୁଡ଼ିକ ଯେପରି ଶିଶୁର ବିକାଶ ପକ୍ଷରେ ଅନୁକୂଳ ହୁଅନ୍ତି ଏବଂ କୌଣସି ପ୍ରତିବନ୍ଧକ ସୃଷ୍ଟି ନକରନ୍ତି, ତାହା ପ୍ରତି ତୀକ୍ଷ୍ଣ ଦୃଷ୍ଟି ଦେବା ପ୍ରତ୍ୟେକ ପିତାମାତା, ପରିବାର ତଥା ସମାଜର କର୍ତ୍ତବ୍ୟ ଅଟେ । ଏଥିନିମିତ୍ତ ଗର୍ଭବତୀ ମାତାର ଖାଦ୍ୟ, ସ୍ୱାସ୍ଥ୍ୟ, ଆବେଗିକ ପରିସ୍ଥିତି ପ୍ରଭୃତି ପ୍ରତି ଯଥେଷ୍ଟ ସଚେତନ ହେବାକୁ ପଡ଼ିବ । ଗର୍ଭବତୀ ମାତାର ସମସ୍ତ ସୁଖ, ସୁବିଧା ପ୍ରତି ଦୃଷ୍ଟି ଦେବାଦ୍ୱାରା ଯେ ଗର୍ଭସ୍ଥ ଶିଶୁର ଅନୁକୂଳ ବିକାଶରେ ସାହାଯ୍ୟ କରାଯାଇ-ଥାଏ ଏହା ସ୍ପଷ୍ଟ ମନେ ରଖିବାକୁ ପଡ଼ିବ ।

## ଚତୁର୍ଥ ଅଧ୍ୟାୟ

# ସମ୍ବେଦନା

ସମ୍ବେଦନା—ଶରୀରର ମନ ସହିତ ଘନିଷ୍ଠ ସମ୍ପର୍କ ରହିଥିବାରୁ ଏବଂ ଶାରୀରିକ ଓ ମାନସିକ ବିକାଶ ମଧ୍ୟରେ ସକାରୀ ସମ୍ବନ୍ଧ ରହିଥିବାରୁ ମାନବର ବିଭିନ୍ନ ଅନୁକ୍ରିୟା ଓ ପ୍ରତିକ୍ରିୟାକୁ ଉପଲବ୍ଧ କରିବା ପାଇଁ ତାର ଶରୀରର ଗଠନ ଓ ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗ ସମ୍ବନ୍ଧରେ ଜ୍ଞାନ ଲାଭ କରିବା ଉଚିତ । ଶରୀରର ପ୍ରତ୍ୟେକ ସ୍ଥାନରେ ସ୍ନାୟୁକେନ୍ଦ୍ରମାନ ଥାଏ । ଏହି ସ୍ନାୟୁ ସଂସ୍ଥା ବାହ୍ୟ ଉତ୍ତେଜନାମାନଙ୍କ ଦ୍ୱାରା ଉଦ୍ଦୀପିତ ହୋଇ ମାନବକୁ ବିଭିନ୍ନ ସମ୍ବାଦ ଯୋଗାନ୍ତି ଏବଂ ମାନବ ସମ୍ବାଦ ପାଇବା ପରେ ଅନୁକ୍ରିୟା ପ୍ରଦର୍ଶନ କରେ । ମୂଳତଃ ମାନବର କ୍ରିୟାକଳାପ ତଥା ବ୍ୟବହାର ବାହ୍ୟ ଏବଂ ଆଭ୍ୟନ୍ତରୀଣ ଉତ୍ତେଜକମାନଙ୍କ ଯୋଗୁ ସମ୍ଭବ ହୋଇଥାଏ ।

ବ୍ୟକ୍ତିର ଜ୍ଞାନେନ୍ଦ୍ରିୟ ସମ୍ମୁଖରେ କୌଣସି ଉଦ୍ଦୀପକ ସମ୍ବନ୍ଧରେ ଶରୀର ବା ମନରେ ଯେଉଁ ଚେତନା ଜାଗ୍ରତ ହୁଏ. ତାକୁ ସମ୍ବେଦନା କୁହାଯାଏ । ସରଳ ଭାଷାରେ ବର୍ଣ୍ଣନା କରିବାକୁ ଗଲେ ଏହା ହେଉଛି ମନର ଅନୁଭବ । ଜନ୍ମ ପରେ ନବଜାତ ଶିଶୁ ବିଭିନ୍ନ ସମ୍ବେଦନାମାନଙ୍କର ସମ୍ମୁଖୀନ ହୁଏ । ଯଥା—ଆଲୋକ, ଶବ୍ଦ, ସ୍ପର୍ଶ ବା ଘ୍ରାଣ । କିନ୍ତୁ ନବଜାତ ଅବସ୍ଥାରେ ଶିଶୁର ଅନୁଭବ ବା ଉପଲବ୍ଧ କରିବାର ଶକ୍ତି ନ ଥିବାରୁ ଏସବୁ ସମ୍ବେଦନାମାନଙ୍କର ଶିଶୁପାଇଁ କୌଣସି ମୂଲ୍ୟ ନ ଥାଏ ।

ଶିଶୁ ତାର ସମ୍ବେଦନାମାନଙ୍କରୁ ପରିବେଷ୍ଟନୀ ସମ୍ବନ୍ଧରେ ସମ୍ୟକ ଜ୍ଞାନ ଲାଭ କରେ । ଶିଶୁର ଜ୍ଞାନେନ୍ଦ୍ରିୟଗୁଡ଼ିକ ଅକାମୀ ବା ଅଚଳ ହୋଇଗଲେ ସେ ବିଭିନ୍ନ ଉଦ୍ଦୀପକମାନଙ୍କ ପ୍ରତି କୌଣସି ଅନୁକ୍ରିୟା ପ୍ରଦର୍ଶନ କରିପାରେ ନାହିଁ । ସମ୍ବେଦନା ସମସ୍ତ କ୍ରିୟାକଳାପର କେନ୍ଦ୍ରବିନ୍ଦୁ । ଏହି ସମ୍ବେଦନା ମାଧ୍ୟମରେ ଆଭ୍ୟନ୍ତରୀଣ ଏବଂ ବାହ୍ୟ ପରିବେଷ୍ଟନୀ ବିଷୟରେ ଆମେ ଜାଣୁ ।

ସମ୍ବେଦନାର ପ୍ରକାର ଉଦ୍ଦୀପକର ଗୁଣ, ତୀବ୍ରତା, ସ୍ଥିତିକାଳ, ବିସ୍ତାର ଇତ୍ୟାଦି ଦ୍ୱାରା ନିର୍ଣ୍ଣୟ କରାଯାଏ । ଏ ସବୁ ଉତ୍ପାଦକମାନଙ୍କରେ ପ୍ରଭେଦ ରହିଲେ ସମ୍ବେଦନାରେ ପ୍ରଭେଦ ରହିପାରେ ।

## ସମ୍ବେଦନାର ପ୍ରକାର

ସମ୍ବେଦନା ଅନେକ ପ୍ରକାରର ହୋଇପାରେ ।

(୧) ଆଙ୍ଗିକ ସମ୍ବେଦନା—ଏହା ଶରୀରର ଆଭ୍ୟନ୍ତରୀଣ ଅବସ୍ଥା ଯୋଗୁ ସମ୍ଭବ ହୋଇଥାଏ । ଯେପରି କି କ୍ଷୁଧା, ତୃଷା, ମୁଣ୍ଡ ଓ ପେଟର ବେଦନା ଇତ୍ୟାଦି ।

(୨) ପୈଶିକ ସମ୍ବେଦନା—ପୈଶିକ ସମ୍ବେଦନାର ସ୍ୱରୂପ ଅତ୍ୟନ୍ତ ଜଟିଳ ଅଟେ । ଜଣାଯାଏ ଯେ ମାଂସପେଶୀ ଉପରେ ଅଧିକ ଜୋର ପଡ଼ିବାରୁ ଏବଂ ସ୍ପର୍ଶ ସମ୍ବେଦନା ସହିତ ମିଶିବାରୁ ପୈଶିକ ସମ୍ବେଦନା ଅନୁଭୂତ ହୁଏ । ଏହି ପ୍ରକାରର ସମ୍ବେଦନାଗୁଡ଼ିକ ବ୍ୟକ୍ତିକୁ ସ୍ଥିତି ତଥା ଗତିର ଅଭିଜ୍ଞତା ଦାନ କରନ୍ତି—ଏହି ସମ୍ବେଦନାମାନଙ୍କର ସହାୟତାରେ ପଦାର୍ଥର ଗୁରୁତ୍ୱକୁ ଅନୁଭବ କରିହୁଏ ।

(୩) ବିଶେଷ ସମ୍ବେଦନା—ଏହି ପ୍ରକାରର ସମ୍ବେଦନା ପାଇଁ ଅଲଗା ଅଲଗା ଜ୍ଞାନେନ୍ଦ୍ରିୟ ଥାଏ । ଏହି ଜ୍ଞାନେନ୍ଦ୍ରିୟକୁ ପାଞ୍ଚ ଭାଗରେ ବିଭକ୍ତ କରାଯାଇପାରେ । ସେଗୁଡ଼ିକ ହେଲା ଦୃଷ୍ଟି, ଶ୍ରବଣ, ସ୍ୱାଦ, ଘ୍ରାଣ, ଚର୍ମ ଓ ସ୍ପର୍ଶ ଏବଂ ସାମ୍ବେଦିକ ଅଙ୍ଗ ପ୍ରତ୍ୟଙ୍ଗଗୁଡ଼ିକ ହେଲା ଯଥାକ୍ରମେ ଚକ୍ଷୁ, କର୍ଣ୍ଣ, ଜିହ୍ୱା, ନାସିକା ଏବଂ ଚର୍ମ । ବାହ୍ୟ ଜଗତରୁ ଉତ୍ତେଜନା ଏହି ଅଙ୍ଗମାନଙ୍କୁ ଉଦ୍ଦୀପିତ କରାଇଲେ ସମ୍ବେଦନା ଅନୁଭୂତ ହୁଏ ।

(୪) ଦୃଷ୍ଟି—ଦୃଷ୍ଟି ସମ୍ବେଦନା ଜ୍ଞାନେନ୍ଦ୍ରିୟ ଚକ୍ଷୁ ଦ୍ୱାରା ଅନୁଭୂତ ହୁଏ । ଏହାର ଉତ୍ତେଜକ ଆଲୋକ ତରଙ୍ଗ ଅଟେ । ଚକ୍ଷୁ ଦ୍ୱାରା ବସ୍ତୁର ଆକାର ପ୍ରକାର, ରଙ୍ଗ, ଦୂରତା ଅନୁଭୂତ ହୁଏ । ଏ ଦୃଷ୍ଟିରୁ ଚକ୍ଷୁ ସର୍ବାପେକ୍ଷା ସମ୍ବେଦକ ଅଙ୍ଗ । ଚକ୍ଷୁ ପ୍ରତି ଉପଯୁକ୍ତ ଧ୍ୟାନ ଦେବା ସଙ୍ଗେ ସଙ୍ଗେ ଏହାର ତତ୍ତ୍ୱାବଧାନ କରିବା ଆବଶ୍ୟକ । ଚକ୍ଷୁ ଯଦି ଆଘାତପ୍ରାପ୍ତ ଓ ନଷ୍ଟ ହୋଇଯାଏ ଏହା ସାହାଯ୍ୟରେ ବାହ୍ୟ ଜଗତରୁ କୌଣସି ସମ୍ବେଦନା ମିଳେନାହିଁ । ଏଣୁ ପିତାମାତା ତଥା ଶିକ୍ଷକ ଶିଶୁର ଚକ୍ଷୁ ଉପଯୁକ୍ତ ଭାବରେ କାର୍ଯ୍ୟ କରୁଛି କି ନାହିଁ ତାହାପ୍ରତି ଦୃଷ୍ଟି ଦେବା ଆବଶ୍ୟକ । ପ୍ରତ୍ୟହ ସକାଳୁ ନିଦରୁ ଉଠି ଆଖିକୁ ଭଲଭାବରେ ଥଣ୍ଡାପାଣିରେ ଧୋଇବା ଉଚିତ । ଚକ୍ଷୁରେ କୌଣସି ରୋଗ ବା ଅସ୍ୱାଭାବିକତା ଦେଖା-ଦେଲେ ଡାକ୍ତରଙ୍କ ପରାମର୍ଶ ନେବା ଆବଶ୍ୟକ । ପ୍ରତ୍ୟେକ ଶିଶୁର ଚକ୍ଷୁଦ୍ୱୟକୁ ନିୟମିତ ଭାବେ ପରୀକ୍ଷା କରିବା ଉଚିତ । ବାଳକବାଳିକାମାନଙ୍କର ଦୃଷ୍ଟି ଶକ୍ତିର ଉନ୍ନତି ନିମନ୍ତେ ଖାଦ୍ୟରେ ଭିଟାମିନ୍ 'କ' ଏବଂ 'ଖ'ର ଆବଶ୍ୟକତା ରହିଛି ।

ଚକ୍ଷୁରେ ଦୋଷ ରହିଲେ ଶିଶୁ ଶ୍ରେଣୀରେ ପାଠ୍ୟ ପ୍ରତି ମନୋନିବେଶ କରିପାରେ ନାହିଁ । ଏହାଦ୍ୱାରା ସେ ପାଠପଢ଼ାରେ ପଛେଇଯାଏ ଏବଂ ତାର ନ୍ୟୂନଭାବ ଜାତ ହୁଏ । ଯେଉଁମାନଙ୍କର ଦୃଷ୍ଟିଶକ୍ତି ହ୍ରାସ ପାଇଥିବ ବା ଚକ୍ଷୁରେ କୌଣସି ଦୋଷ ଥିବ, ସେମାନଙ୍କୁ ଶ୍ରେଣୀରେ ପ୍ରଥମ ବେଞ୍ଚରେ ବସାଇବା ଆବଶ୍ୟକ । ଗୃହ ଓ ବିଦ୍ୟାଳୟରେ ଶିଶୁର ପରିଷ୍କାର ପରିଚ୍ଛନ୍ନତା ଓ ସ୍ୱାସ୍ଥ୍ୟ ପ୍ରତି ଦୃଷ୍ଟି ଦେଲେ ଜ୍ଞାନେନ୍ଦ୍ରିୟଗୁଡ଼ିକ ରୋଗମୁକ୍ତ ହୋଇପାରିବ ।

ଅଧିକାଂଶ ଶିକ୍ଷଣ, ଶ୍ରବଣ ମାଧ୍ୟମରେ ସମାପନ କରାଯାଉଥିବା ଦୃଷ୍ଟିରୁ କର୍ଣ୍ଣର ଗୁରୁତ୍ୱ ଯଥେଷ୍ଟ ଅଧିକ । କର୍ଣ୍ଣରେ ଦୋଷତ୍ରୁଟି ରହିଲେ ଶୁଣିହୁଏ ନାହିଁ । ଏଣୁ ଶୁଣିକରି କଥା ଶିକ୍ଷା କରିବା ଅତ୍ୟନ୍ତ କଷ୍ଟକର ହୁଏ । ସ୍ପଷ୍ଟ ଭାବରେ ଶୁଣି ନ ପାରିଲେ ଉଚ୍ଚାରଣଗତ ଦୋଷ ଦେଖାଯାଏ ।

ଶ୍ରବଣ ସମ୍ବେଦନା ସମ୍ବନ୍ଧରେ ଯାହାକିଛି ଅଧ୍ୟୟନ କରାଯାଇଛି, ସେଥିରୁ ଏତିକି କେବଳ ଜଣାଯାଏ, ଶିକ୍ଷଣର ଯୁଗ୍ଯତା ଶ୍ରବଣ ସମ୍ବେଦନା ଉପରେ ଯଥେଷ୍ଟ ଅଧିକ ଥାଏ । ବାଳକ ଶୁଣିପାରେ, କିନ୍ତୁ ଧ୍ୱନିରେ ପ୍ରଭେଦ ବା ଶ୍ରବଣ ଉତ୍ତେଜନାର ଜଟିଳତା ଅନୁସାରେ ବିଶେଷ ପ୍ରତିକ୍ରିୟା ଜାତ କରାଇବାରେ ତାର କୌଣସି ସାଧନା ନଥାଏ । ଉତ୍ତେଜନାର ତୀବ୍ରତା ଏବଂ ସ୍ଥିତି କାଳର ପ୍ରଭାବ ମଧ୍ୟ ଶ୍ରବଣ ସମ୍ବେଦନା ଉପରେ ପଡ଼େ ।

କର୍ଣ୍ଣରେ କିଛି ଦୋଷ ତ୍ରୁଟି ରହିଲେ ବାଳକର ଶିକ୍ଷଣ ଅତ୍ୟନ୍ତ ବାଧାପ୍ରାପ୍ତ ହୁଏ । ଏହାର ପ୍ରଭାବ ଭବିଷ୍ୟତ ଜୀବନରେ ଅନ୍ୟ ସବୁ କାର୍ଯ୍ୟ ଉପରେ ମଧ୍ୟ ଗୁରୁତ୍ୱପୂର୍ଣ୍ଣ ପ୍ରତିକ୍ରିୟା ସୃଷ୍ଟି କରେ । ଶ୍ରବଣ ସମ୍ବେଦନାରେ ଦୋଷ ତ୍ରୁଟି ରହିଲେ ଭାଷା ତଥା ଉଚ୍ଚାରଣଗତ ତ୍ରୁଟି ଏବଂ ନ୍ୟୂନଭାବ ଜାତ ହୁଏ ।

ବାଳକ ବାଳିକାଙ୍କର ବ୍ୟବହାରରେ ଯେପରି କୌଣସି ସମ୍ବେଗାତ୍ମକ ଦୋଷ ତ୍ରୁଟି ଦେଖାନଯାଏ, ସେଥିପ୍ରତି ମାତା, ପିତା ଓ ଶିକ୍ଷକମାନେ ବିଶେଷ ଧ୍ୟାନ ଦେବା ଆବଶ୍ୟକ । କୌଣସି ଦୋଷତ୍ରୁଟି ଥିବାର ଲକ୍ଷ୍ୟ କରାଗଲେ ତାର ନିରାକରଣ ପାଇଁ ତୁରନ୍ତ ଡାକ୍ତରଙ୍କର ପରାମର୍ଶ ନେବା ଉଚିତ ।

ଶ୍ରେଣୀରେ ବାଳକ ନିଜ ସମ୍ମୁଖରେ ଯେଉଁ ଢଙ୍ଗରେ ପୁସ୍ତକ ରଖେ, ଏହାର ଦୂରତା ବାଳକଠାରୁ କେତେ, କୌଣସି ପ୍ରଶ୍ନ ପଚାରିଲେ ବାଳକର ଶୁଣିବାରେ କିଛି ଅସୁ-ବିଧା ହେଉଛି କି ନାହିଁ, ତାହା ଜାଣିବା ଆବଶ୍ୟକ । ଯେଉଁ ବାଳକକୁ ଜୋରରେ କହିଲେ ଶୁଣାଯାଏ, ତାର ଶ୍ରବଣ ଦୋଷ ରହିବାର ସମ୍ଭାବନା ଥାଏ । ଜୋରରେ କହିବା ଦ୍ୱାରା ବାଳକ ଶୁଣିପାରେ, ମାତ୍ର ଏପରି କରିବା ଦ୍ୱାରା ତାର ଶୁଣିବାରେ ତ୍ରୁଟି ଦୂର ହୁଏନାହିଁ । ଫଳରେ ତାର ମାନସିକ ବିକାଶ ଶିଥିଳ ତଥା ମନ୍ଦୀକୃତ ହୋଇଯାଏ । ସେ ଅକ୍ଷରର ଧ୍ୱନି ଓ ଶବ୍ଦର ସୂକ୍ଷ୍ମଭେଦ ଜାଣିବାପାଇଁ ସକ୍ଷମ ହୁଏ ନାହିଁ । ମାନସିକ ବିକାଶ ଶିଥିଳ ହେବା ସଙ୍ଗେ ସଙ୍ଗେ ତାର ମନସ୍ତାତ୍ତ୍ୱିକ ପ୍ରତିକ୍ରିୟା ମଧ୍ୟ ଜାତ ହୁଏ । ଶ୍ରେଣୀରେ ଅନ୍ୟ ସମସ୍ତେ ତାକୁ କାଲୁ ବୋଲି କହି ଥଟ୍ଟା ଓ ବ୍ୟଙ୍ଗ କରନ୍ତି । ଶିକ୍ଷକ ଯାହା ପଢ଼ାଉଛନ୍ତି ତାହା ଭଲଭାବରେ ଶୁଣିନପାରି ସେ ପଛରେ ପଡ଼ିଯାଏ । ଶିକ୍ଷକଙ୍କର ପ୍ରଶ୍ନ ମଧ୍ୟ ସେ ଠିକ୍ ରୂପେ ଶୁଣିପାରେ ନାହିଁ । ଫଳରେ ସଠିକ ଉତ୍ତର ଦେବା ସମ୍ଭବ ହୁଏ ନାହିଁ । ଶିକ୍ଷକ ଅନେକ କ୍ଷେତ୍ରରେ ବିରକ୍ତି ପ୍ରକାଶ କରନ୍ତି । ଶ୍ରେଣୀରେ ଅନ୍ୟ ଛାତ୍ରମାନେ ହସିଉଠନ୍ତି । ଫଳରେ ବାଳକ ମନରେ ନ୍ୟୂନ ମନୋଭାବ ଜାତ ହୁଏ । ଏହି ନ୍ୟୂନ ମନୋଭାବ ତାର ସମସ୍ତ ବ୍ୟବହାର ଓ କ୍ରିୟାକଳାପକୁ ପ୍ରଭାବିତ କରେ । ସେ ଭୀରୁ ଓ ଡରୁଆ ହୁଏ ଏବଂ କୌଣସି ପ୍ରତିଯୋଗିତାରେ ଯୋଗଦେବା ଦୂରର କଥା—ସାହସର ସହିତ କୌଣସି ସମସ୍ୟାର ସମ୍ମୁଖୀନ ହୋଇପାରେନା । କାରଣ ତାର ଆତ୍ମବିଶ୍ୱାସ ନଥାଏ ।

ଶ୍ରବଣ ତ୍ରୁଟି ଓ ସ୍ନାୟୁ ଦୁର୍ବଳତା ହେତୁ ଅନେକ କ୍ଷେତ୍ରରେ ଭାଷା ଓ ଉଚ୍ଚାରଣଗତ ତ୍ରୁଟି ଦେଖାଯାଏ । ଏସବୁ ପ୍ରତି ପିତାମାତା ଓ ଶିକ୍ଷକ ଉଦାସୀନ ନ ରହି କୌଣସି ବିଶେଷଜ୍ଞଙ୍କୁ ଦେଖାଇବା ଉଚିତ । କେବଳ ଶିଶୁର ମାନସିକ ବିକାଶ ପ୍ରତି ଧ୍ୟାନ ଦେଲେ

ପିତାମାତା ତଥା ଶିକ୍ଷକଙ୍କର କର୍ତ୍ତବ୍ୟ ଶେଷ ହୋଇଯିବ ନାହିଁ । ଏଥିପାଇଁ ଶିଶୁର ସ୍ୱାସ୍ଥ୍ୟ ପ୍ରତି ମଧ୍ୟ ଦୃଷ୍ଟି ଦେବାକୁ ପଡ଼ିବ । ଏ କର୍ତ୍ତବ୍ୟ କେବଳ ପିତାମାତା ବା ଡାକ୍ତରଙ୍କର ନୁହେଁ, ଶିଶୁ ସହିତ ଜଡ଼ିତ ଥିବା ପ୍ରତ୍ୟେକ ବ୍ୟକ୍ତି, ଜାତି ତଥା ଦେଶର ।

ଯେଉଁ ଶିଶୁମାନେ ସେମାନଙ୍କର ଦୃଷ୍ଟି ବା ଶ୍ରବଣ ଯୋଗୁ ସାଧାରଣ ବିଦ୍ୟାଳୟ-ମାନଙ୍କରେ ଶିକ୍ଷା ପାଇବାକୁ ଅକ୍ଷମ ସେମାନଙ୍କୁ ସ୍ୱତନ୍ତ୍ର ବିଦ୍ୟାଳୟମାନଙ୍କରେ ଶିକ୍ଷା ଦେବା ପାଇଁ ବ୍ୟବସ୍ଥା କରିବା ଉଚିତ୍ ।

ଯେଉଁ ଶିଶୁ ଦୁର୍ବଳ ଅଥବା ତାର ଶରୀରର ଅଙ୍ଗପ୍ରତ୍ୟଙ୍ଗ ତଥା କୌଣସି ଜ୍ଞାନେ-ନ୍ଦ୍ରିୟରେ କିଛି ଦୋଷ ଦେଖାଯାଏ, ତା ପାଇଁ ପରିବେଶ ମଧ୍ୟରେ ହୀନତା ଭାବ, ମାନସିକ ଅଶାନ୍ତି ତଥା ନୈରାଶ୍ୟ ଜନିତ ଅବସ୍ଥା ସୃଷ୍ଟି କରିବା ନିତାନ୍ତ ଅନୁଚିତ । କେବଳ ଅନୁଚିତ ନୁହେ, ଏହା ଅବାଞ୍ଛିତ ଏବଂ ଏକ ବିରାଟ ଅନ୍ୟାୟ ଅଟେ ।

ଘ୍ରାଣ ସମ୍ବେଦନ—ଏହି ସମ୍ବେଦନ ମାନବ ଅପେକ୍ଷା ପଶୁମାନଙ୍କ ପାଇଁ ଅଧିକ ଗୁରୁତ୍ୱପୂର୍ଣ୍ଣ ଓ ଦରକାରୀ । ବିଭିନ୍ନ ଗନ୍ଧ ପ୍ରତି ନବଜାତ ଶିଶୁ ପ୍ରତିକ୍ରିୟା ଦେଖାଏ । ଉଗ୍ର, କଡ଼ା ବା ଅସୁଖକର ଗନ୍ଧ ହେଲେ ଶିଶୁ ସେ ଦିଗରୁ ଅନ୍ୟ ଦିଗକୁ ମୁଣ୍ଡ ବୁଲାଇନିଏ । ଦୁଇଟି ଭିନ୍ନ ଭିନ୍ନ ଗନ୍ଧ ମଧ୍ୟରେ ନବଜାତ ଶିଶୁ ପାର୍ଥକ୍ୟ ବାରିପାରେ ବୋଲି ଅଧ୍ୟୟନରୁ ଜଣାଯାଏ । କଡ଼ା ଗନ୍ଧମାନଙ୍କ ପ୍ରତି ଶିଶୁମାନେ ଅଧିକ ପ୍ରତିକ୍ରିୟା ଦେଖାନ୍ତି ।

ଘ୍ରାଣ ସମ୍ବେଦନ ବିଷୟରେ ଜଣାଯାଏ ଯେ, ଆମୋନିଆ ତଥା ଅନ୍ୟ ରାସାୟନିକ ଗନ୍ଧରେ ନିୟମିତ ଭାବରେ କେତେକ ପ୍ରତିକ୍ରିୟା ହୁଏ । କିନ୍ତୁ ଏହି ପ୍ରତିକ୍ରିୟା ସୁଖକର କି ଦୁଃଖକର ଅନୁଭୂତି ନେଇ ହୁଏ, ସେ ସମ୍ବନ୍ଧରେ ନିଶ୍ଚିତ କରି କୁହାଯାଇନପାରେ ।

ସ୍ୱାଦ—ନବଜାତ ଶିଶୁ ଲୁଣିଆ, ମିଠା, ପିତା ଓ ସ୍ୱାଦବିହୀନ ଦ୍ରବ୍ୟମାନଙ୍କ ପ୍ରତି ଭିନ୍ନ ଭିନ୍ନ ପ୍ରତିକ୍ରିୟା ଦେଖାଏ ନାହିଁ । ଜନ୍ମ ସମୟରେ ଶିଶୁମାନଙ୍କର ସ୍ୱାଦ-ସମ୍ବେଦନ ପ୍ରାୟ ନ ଥାଏ । କିନ୍ତୁ ଏହି ସମ୍ବେଦନ ଅଳ୍ପକାଳ ମଧ୍ୟରେ କ୍ଷିପ୍ର ଗତିରେ ବିକାଶ ଲାଭ କରେ । ପ୍ରଥମ ଦୁଇସପ୍ତାହ ମଧ୍ୟରେ ଶିଶୁମାନେ ଚିନି ପ୍ରତି ଅନୁକୂଳ ପ୍ରତିକ୍ରିୟା ଓ କୁଇନାଇନ୍ ପ୍ରତି ପ୍ରତିକୂଳ ପ୍ରତିକ୍ରିୟା ଦେଖାନ୍ତି । ଶିଶୁ କ୍ଷେତ୍ରରେ ନିଧାର୍ଯ୍ୟ ଭାବରେ ମିଠାର ପ୍ରତିକ୍ରିୟା ଅଧିକ ସୁଖଦାୟକ ହୁଏ । କିନ୍ତୁ ଅନ୍ୟକୌଣସି ସ୍ୱାଦକୁ ଶିଶୁ ବେଶୀ ପସନ୍ଦ କରିବାର ଦେଖାଯାଇନାହିଁ ।

ସ୍ପର୍ଶ—ଉତ୍ତାପ, କଷ୍ଟ, ଚାପ ପ୍ରଭୃତି ସମ୍ବେଦନ କର୍ମଦ୍ୱାରା ଅନୁଭୂତ ହୁଏ । ଅଧ୍ୟୟନମାନଙ୍କରୁ ଜଣାଯାଏ ଯେ, ଗରମ ବାୟୁମଣ୍ଡଳ ଅପେକ୍ଷା ଥଣ୍ଡା ବାୟୁମଣ୍ଡଳରେ ଶିଶୁ ଅଧିକ କ୍ରିୟାକଳାପ ଦେଖାଏ । ଅର୍ଥାତ୍ ଗୋଡ଼ ହାତକୁ ବିସ୍ତାର କରେ । ଶିଶୁର କପାଳରେ ଥଣ୍ଡା ଉଦ୍ଦୀପକ ସ୍ପର୍ଶ କରାଇଲେ ତାର ମୁଣ୍ଡ ଗତିଶୀଳ ହୁଏ । ନିଶ୍ୱାସର ଗତି ବଢ଼ିଯାଏ ଏବଂ ନାଡ଼ିର ଗତି ଅନିୟମିତ ହୁଏ ।

ଦୃଷ୍ଟି, ଶ୍ରବଣ ଓ ଘ୍ରାଣ ପରି ମସ୍ତିଷ୍କର କୌଣସି ନିର୍ଦ୍ଦିଷ୍ଟ ଅଞ୍ଚଳ କଷ୍ଟ ଜାତ କରିଉଥିବା ଉତ୍ତେଜକକୁ ଗ୍ରହଣ କରେ ନାହିଁ । ଅଧ୍ୟୟନମାନଙ୍କରୁ ଜଣାଯାଏ ଯେ, ଜନ୍ମ

ସମୟରେ ଶିଶୁର କିଛି ଅଳ୍ପ ପରିମାଣରେ କଷ୍ଟ ସମ୍ବେଦନ ଥାଏ । କାରଣ ଶିଶୁକୁ ପ୍ରଥମେ ଇଞ୍ଜେକ୍‌ସନ ଦେଲେ ସେ କାନ୍ଦେ ନାହିଁ । ୨।୩ ସପ୍ତାହ ବେଳକୁ ଏହି ଶିଶୁକୁ ଇଞ୍ଜେକ୍‌ସନ ଦେଲେ ସେ କାନ୍ଦିଉଠେ ଏବଂ ହାତକୁ ଟାଣିନିଏ ।

## ସମ୍ବେଦନ ଶିକ୍ଷଣ

ଯେଉଁ ଶିଶୁମାନଙ୍କର ସମ୍ବେଦନ ଅଙ୍ଗମାନଙ୍କରେ କିଛି ଦୋଷ ତ୍ରୁଟି ରହିଥାଏ, ସେମାନଙ୍କ ପତି ପୃଥକ ଦୃଷ୍ଟି ଦେବାକୁ ପଡ଼ିବ । ବିଶେଷତଃ ଯେଉଁ ଶିଶୁମାନେ ଜୋରରେ ନ କହିଲେ ଶୁଣିପାରନ୍ତି ନାହିଁ ବା ଦୂରରୁ ଦେଖିପାରନ୍ତି ନାହିଁ ସେମାନଙ୍କୁ ଶ୍ରେଣୀର ପ୍ରଥମ ବେଞ୍ଚରେ ବସାଇବା ଦରକାର । ଏହିପ୍ରରି ଜ୍ଞାନେନ୍ଦ୍ରିୟମାନଙ୍କରେ ଦୋଷ ତ୍ରୁଟି ରହିଥିବା ଶିଶୁମାନେ ସମସ୍ତ ପଦାର୍ଥକୁ ଅନ୍ୟମାନଙ୍କ ଅପେକ୍ଷା ନିମ୍ନ ସ୍ତରରେ ପର୍ଯ୍ୟବେକ୍ଷଣ କରନ୍ତି । ଏପରି ଶିଶୁର ଦୂରତା, ସମୟ, ଆକାର ଓ ଲମ୍ବର ପ୍ରତ୍ୟକ୍ଷ ପ୍ରକ୍ରିୟା ଅତ୍ୟନ୍ତ ତ୍ରୁଟିପୂର୍ଣ୍ଣ ହୋଇଥାଏ । ଏପରି ଶିଶୁକୁ ଅନ୍ୟ ସାଧାରଣ ଶିଶୁଙ୍କ ସହିତ ସମାନ କରି ସେମାନଙ୍କୁ ଏକା ରକମର ବ୍ୟବହାର ଦେଖାଇବା ବା ଏକପ୍ରକାର ଶିକ୍ଷଣ ଦେବା ଉଚିତ ନୁହେଁ । ସେମାନଙ୍କୁ ଅନ୍ୟମାନଙ୍କ ତୁଳନାରେ ସ୍ୱତନ୍ତ୍ର ଭାବରେ ଶିକ୍ଷା ଦେବାକୁ ପଡ଼ିବ ।

ନିଜ ଚତୁର୍ଦ୍ଦିଗରେ ଥିବା ବସ୍ତୁ, ବ୍ୟକ୍ତି ଓ ଘଟଣାବଳୀ ସମ୍ବନ୍ଧରେ ବିଭିନ୍ନ ତଥ୍ୟ ଜ୍ଞାନେନ୍ଦ୍ରିୟ ମାଧ୍ୟମରେ ମିଳିଥାଏ । ଏହି ଜ୍ଞାନେନ୍ଦ୍ରିୟମାନଙ୍କ ସାହାଯ୍ୟରେ ଶିଶୁ ତାର ନିଜ ବିଷୟରେ ଏବଂ ତାର ପରିବେଷ୍ଟନୀ ସମ୍ବନ୍ଧରେ ବିଭିନ୍ନ ଜ୍ଞାନଲାଭ କରେ । ଯେଉଁ ବ୍ୟକ୍ତିର ସାମ୍ବେଦିକ ଅଭିଜ୍ଞତା ଯେତେ ବେଶୀ ତାର ମାନସିକ ବିକାଶ ଓ ମନସ୍ତାତ୍ତ୍ୱିକ କ୍ରିୟା-କଳାପ ସେତିକି ଉନ୍ନତ ହୁଏ । କାରଣ ଏହାଦ୍ୱାରା ତାର ଶିକ୍ଷଣ, ପ୍ରଶିକ୍ଷଣ ସମ୍ବନ୍ଧରେ ବିଭିନ୍ନ କୁଶଳତା ଲାଭ ହୁଏ । ସାମାଜିକତା, ବିଭିନ୍ନ ବିଧିବିଧାନ ଓ ଆଚାର ବ୍ୟବହାର ଶିଶୁ ତାର ଜ୍ଞାନେନ୍ଦ୍ରିୟମାନଙ୍କ ସାହାଯ୍ୟରେ ତାର ପରିବେଶ ସହିତ କ୍ରିୟା ପ୍ରକ୍ରିୟା କରି ଶିକ୍ଷା କରେ । ଜ୍ଞାନେନ୍ଦ୍ରିୟର ବିନା ସାହାଯ୍ୟରେ ଏସବୁ ଶିକ୍ଷା ବ୍ୟାହତ ହୁଏ ।

ବିଭିନ୍ନ ବିଷୟବସ୍ତୁ ଓ ତାର ପରିବେଶକୁ ପର୍ଯ୍ୟବେକ୍ଷଣ କରିବା ବିକାଶ ଅଭ୍ୟାସ ଗଠନ ପାଇଁ ଶିଶୁକୁ ଶିକ୍ଷା ଦେବାକୁ ପଡ଼ିବ । କେବଳ ଉପଦେଶ ବା ଆଦେଶ ଦେଲେ ହେବ ନାହିଁ ; ଶିଶୁମାନଙ୍କୁ ବାସ୍ତବ ଶିକ୍ଷା ଦେବାକୁ ପଡ଼ିବ । ଅର୍ଥାତ୍ ପ୍ରକୃତ ବସ୍ତୁକୁ ଛୁଇଁ, ଧରି, ଶୁଙ୍ଘି ତନ୍ନ ତନ୍ନ କରି ବିଶ୍ଳେଷଣ କରି ସେସବୁ ସମ୍ପର୍କରେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରିବାକୁ ସୁଯୋଗ ଦେବା ଦରକାର ।

ମୌଖିକ ବା ବାଚନିକ ଉପଦେଶ ବା ଶିକ୍ଷଣ ଦେବା ପୂର୍ବରୁ କାର୍ଯ୍ୟରେ କରାଇ କେତେକ କଥା ଯେ ଶିଖାଇବାକୁ ପଡ଼ିବ ଏହା ପିତା ମାତା ଓ ଶିକ୍ଷକମାନଙ୍କର ପ୍ରଧାନ ଏବଂ ପ୍ରଥମ ଲକ୍ଷ୍ୟ ହେବା ଉଚିତ । ଏହାକୁ ବସ୍ତୁନିଷ୍ଠ ଉପାୟରେ ଶିକ୍ଷଣ ଦେବା ପ୍ରଣାଳୀ କୁହାଯାଏ । ପ୍ରତ୍ୟେକ ବିଦ୍ୟାଳୟରେ ବିଭିନ୍ନ ବସ୍ତୁ ଆଦର୍ଶ, ଖେଳନା, ବୃକ୍ଷଲତା ଓ ଯନ୍ତ୍ରପାତି ଇତ୍ୟାଦି ରହିବା ଆବଶ୍ୟକ, ଯାହାକୁ ପ୍ରଦର୍ଶନ କରାଇ ଶିଶୁକୁ ବିଭିନ୍ନ ବସ୍ତୁର ଆକାର,

ପ୍ରକାର ଓ ରଙ୍ଗ ସମ୍ପର୍କରେ ବାସ୍ତବ ଜ୍ଞାନ ଦିଆଯାଇପାରେ । ଉଦାହରଣ ସ୍ୱରୂପ ଗୋଲାପ ଫୁଲର ରଙ୍ଗ ନାଲି ବା ଘାସର ରଙ୍ଗ ସବୁଜ । ଏହାକୁ କହିଲେ ଶିଶୁ ନାଲି ବା ସବୁଜ ରଙ୍ଗ କଣ ଜାଣିପାରେ ନାହିଁ । ମାତ୍ର ଗୋଟିଏ ନାଲି ଫୁଲ ବା ଘାସ ଆଣି ଦେଖାଇଲେ ନାଲି ଓ ସବୁଜ ରଙ୍ଗ କଣ ତାର ଧାରଣା ହୋଇଯାଏ । ପ୍ରତ୍ୟକ୍ଷ ଅଭିଜ୍ଞତା ଏହି ପ୍ରକାରର ଶିକ୍ଷଣକୁ ଅଧିକ ସହଜ ଓ ତ୍ୱରାନ୍ୱିତ କରାଏ ।

କେବଳ ମୁହଁରେ ନ କହି କଳାପଟାରେ ଲେଖି ଚିତ୍ର ଆଙ୍କି ଶିକ୍ଷକଙ୍କୁ ଶିଶୁର ଜ୍ଞାନେନ୍ଦ୍ରିୟମାନଙ୍କୁ ସମ୍ବେଦନା ଦେବାକୁ ପଡ଼ିବ । କୁକୁରଟିର ଆକାର କପରି -- ଗୋଟିଏ ଖେଳନା କୁକୁର ଆଣି କିମ୍ବା କଳାପଟାରେ କୁକୁର ଆଙ୍କିଲେ ଶିଶୁ ବେଶୀ ଆଗ୍ରହୀ ହେବ ଏବଂ ତାର ଜ୍ଞାନେନ୍ଦ୍ରିୟଗୁଡ଼ିକ ଅଧିକ ଉଦ୍ଦୀପନା ପାଇପାରିବ ।

ସମସ୍ତ ସମ୍ବେଦକମାନଙ୍କ ମଧ୍ୟରେ ଦୃଷ୍ଟି ଓ ଶ୍ରବଣ ଶିଶୁପାଇଁ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ଅଟେ । ଶୁଣିବା ଅପେକ୍ଷା ଦେଖିଲେ ଶିଶୁ ଅଧିକ ଶୀଘ୍ର, ସହଜରେ ଓ ବହୁକାଳ ପାଇଁ ମନେରଖିପାରେ । ସମ୍ବେଦନକୁ ପ୍ରତ୍ୟକ୍ଷ କରିବାକୁ ହେଲେ ପ୍ରକୃତ ବସ୍ତୁଗୁଡ଼ିକ ବାସ୍ତବ କ୍ଷେତ୍ରରେ ଦେଖାଇବାକୁ ହେବ । ଶିଶୁକୁ ବିଭିନ୍ନ ରଙ୍ଗର ଜ୍ଞାନ ଦେବାପାଇଁ ଶ୍ରେଣୀରେ ରଙ୍ଗ ବେରଙ୍ଗର ଚିତ୍ର ଟାଙ୍ଗି, ତୂଳୀ ଓ ରଙ୍ଗ ଦେଇ କିଛି ଆଙ୍କିବାକୁ କୁହାଗଲେ ତାର ସେ ସମ୍ପର୍କରେ ଅଧିକ ଧାରଣା ହୋଇପାରିବ ଏବଂ ସଠିକ ପ୍ରତ୍ୟକ୍ଷ ପ୍ରକ୍ରିୟା ବିକଶିତ ହୋଇପାରିବ । ୫।୬ ବର୍ଷର ଶିଶୁପାଇଁ ସମ୍ବେଦନ ପ୍ରଶିକ୍ଷଣ ଉତ୍ତମ ଓ ଫଳପ୍ରଦ । କିନ୍ତୁ ୮।୯ ବର୍ଷର ବା ତାଠାରୁ ବଡ଼ ପିଲା ପାଇଁ ଏପରି ପ୍ରଶିକ୍ଷଣର କୌଣସି ମୂଲ୍ୟ ନାହିଁ । କାରଣ ସେତେବେଳକୁ ସେ ପ୍ରାପ୍ତ ସମସ୍ତ ଉଦ୍ଦୀପକମାନଙ୍କ ସମ୍ବନ୍ଧରେ ଜ୍ଞାନ ଅର୍ଜନ କରିସାରିଥାଏ ।

## ଧ୍ୟାନ

ଅନେକ କ୍ଷେତ୍ରରେ ପିତାମାତା ଅଭିଯୋଗ କରନ୍ତି ଯେ, ତାଙ୍କର ପିଲା ପାଠ୍ୟ ବିଷୟ ପ୍ରତି ଧ୍ୟାନ ଦେଉନି ବା ଶ୍ରେଣୀରେ ଶିକ୍ଷକ ଯାହା ପଢ଼ାଉଛନ୍ତି, ସେଥିପ୍ରତି ସେ ମନୋନିବେଶ କରିପାରୁନାହିଁ । ଏହିପରି ଭାବରେ ଜୀବନର ବିଭିନ୍ନ କ୍ଷେତ୍ରରେ ଧ୍ୟାନ ବା ମନଯୋଗ ସମ୍ପର୍କରେ ଆମ୍ଭେମାନେ ବିଭିନ୍ନ କଥା ଶୁଣିବାକୁ ପାଇଥାଉ । ଅନେକ ସମୟରେ ଗୋଟାଏ ବସ୍ତୁରୁ ଆଉ ଗୋଟାଏ ବସ୍ତୁ ପ୍ରତି ଧ୍ୟାନ ଦେବାଦେଲେ ଏକ ବସ୍ତୁରୁ ଅପର ବସ୍ତୁକୁ ଧ୍ୟାନ ଘୁଞ୍ଚିବାର ମଧ୍ୟ ଦେଖାଯାଏ । ଉଦାହରଣ ସ୍ୱରୂପ ପିଲାର ଖେଳିବାକୁ ଇଚ୍ଛା । ତେଣୁ ଖେଳସାଥୀଙ୍କୁ ଦେଖିଲେ ପାଠରେ ଆଉ ତାର ଧ୍ୟାନ ରହେନାହିଁ । ଏହିପରି ଭାବରେ ନିଜର ଇଚ୍ଛା ଅନୁସାରେ ଏକ ଉଦ୍ଦୀପକରୁ ଅନ୍ୟ ଉଦ୍ଦୀପକକୁ ଧ୍ୟାନ ପରିବର୍ତ୍ତନ କରାଯାଇପାରେ ବା କୌଣସି ବସ୍ତୁ ବା ଘଟଣା ଉପରେ କେନ୍ଦ୍ରିତ କରାଯାଇପାରେ । ମନଯୋଗ ଏକ କ୍ରିୟା ଏବଂ ଜୀବନ କାଳରେ ବାରମ୍ବାର ଏହି କ୍ରିୟା ଲାଗିରହିଥାଏ ।

ପରିବେଷ୍ଟନୀ ମଧ୍ୟରେ ଗତି କରୁଥିବା ବେଳେ ଭିନ୍ନ ଭିନ୍ନ ପ୍ରକାରର ଉଦ୍ଦୀପକ ସମ୍ପର୍ଶରେ ମନୁଷ୍ୟ ଆସେ । କିନ୍ତୁ ସମସ୍ତ ଉଦ୍ଦୀପକ ପ୍ରତି ଏକ ସମୟରେ ଧ୍ୟାନ ଦେବା ସମ୍ଭବ

ହୁଏ ନାହିଁ । ତେଣୁ ସେ ଏମାନଙ୍କ ମଧ୍ୟରୁ ଯେ କୌଣସି ଗୋଟିଏ ଉଦ୍ଦୀପକକୁ ବାଛିନିଏ ଓ ସେଥିପ୍ରତି ମନୋନିବେଶ କରିବାକୁ ଚେଷ୍ଟା କରେ । ଯେଉଁ ଉଦ୍ଦୀପକକୁ ସେ ବାଛିନିଏ, ତାକୁ ନିଜ ଚେତନା କେନ୍ଦ୍ର ମଧ୍ୟରେ ଅବସ୍ଥାପିତ କରେ । ଏହି ଦୃଷ୍ଟିରୁ ଧ୍ୟାନ ଏକ ଚୟନାତ୍ମକ ପ୍ରକ୍ରିୟା ଅଟେ । ଯେଉଁଥିରେ ବ୍ୟକ୍ତି ଅଧିକ ଆଗ୍ରହାନ୍ୱିତ ହୁଏ, ସେଥିପ୍ରତି ଅଧିକ ଧ୍ୟାନ ଦେଖାଏ । ଉଦାହରଣ ସ୍ୱରୂପ, ବଜାରରେ ଗଲାବେଳେ ଶିଶୁ ଅନେକ ପଦାର୍ଥ ଓ ଦ୍ରବ୍ୟ ବିକ୍ରୟ ହେଉଥିବାର ଦେଖିଲେ ମଧ୍ୟ ଖେଳନା ଦୋକାନ ବା ମିଠାଇ ଦୋକାନ ପ୍ରତି ତାର ଧ୍ୟାନ ଅଧିକ ଆକର୍ଷିତ ହୁଏ । ଯେଉଁ ବାଳକ ପୁସ୍ତକ ପ୍ରତି ଆଗ୍ରହାନ୍ୱିତ, ବହି ଦୋକାନ ଦେଖିଲେ ତାର ଆଗ୍ରହ ବଢ଼େ, କାରଣ ସେଥିପ୍ରତି ତାର ଆଗ୍ରହ ବା ଅଭିରୁଚି ଅଧିକ ଅଟେ । ଯେଉଁ ଉଦ୍ଦୀପକ ନିଜର ଚେତନା କେନ୍ଦ୍ରରେ ଅବସ୍ଥାପିତ ବା ନିବେଶିତ ହୁଏ, ତାହା ସମ୍ପୂର୍ଣ୍ଣରୂପେ ଓ ସ୍ପଷ୍ଟଭାବରେ ବୁଝିହୁଏ । ଯେଉଁସବୁ ଉଦ୍ଦୀପକକୁ ସେ ଉପେକ୍ଷା କରେ, ତାହା ତାର ଅବଚେତନରେ ରହେ ଏବଂ ଯେଉଁ ବସ୍ତୁ ପ୍ରତି ଧ୍ୟାନ ଦିଏ ବା ମନୋନିବେଶ କରେ, ତାହା ତାର ଚେତନା କେନ୍ଦ୍ର ମଧ୍ୟରେ ରହେ ।

ଧ୍ୟାନର ପରିଭାଷା :—ପରିବେଶ ମଧ୍ୟରେ ଥିବା ବିଭିନ୍ନ ଉଦ୍ଦୀପକମାନଙ୍କ ମଧ୍ୟରୁ ନିଜର ଆଗ୍ରହ ଓ ରୁଚି ଅନୁଯାୟୀ ଗୋଟିଏ ଉଦ୍ଦୀପକକୁ ବାଛି ଓ ଅନ୍ୟ ସବୁ ଉଦ୍ଦୀପକକୁ ଉପେକ୍ଷା କରି ତାକୁ ନିଜର ଚେତନା କେନ୍ଦ୍ରରେ ଅବସ୍ଥାପିତ କରି ସେଥିପ୍ରତି ମାନସିକ ପ୍ରକ୍ରିୟା ଦେଖାଇଲେ ତାକୁ ଧ୍ୟାନ ବା ମନୋଯୋଗ ବୁଝାଯାଏ ।

ବ୍ୟକ୍ତିର ଅଭ୍ୟାସ, ଶିକ୍ଷା, ଆଗ୍ରହ, ଅଭିଳାଷ ଓ ଅଭିରୁଚି ଇତ୍ୟାଦିକୁ ଯେଉଁ ଉଦ୍ଦୀପକ ପୂରଣ କରେ ସେଥିପ୍ରତି ତାର ଧ୍ୟାନ ସ୍ୱତଃପ୍ରବୃତ୍ତ ଭାବରେ ଚାଲିଯାଏ । ଯେ ଯେଉଁଥିରେ ଅଭ୍ୟସ୍ତ ବା ଯାହାର କୌଣସି ଏକ ଉଦ୍ଦୀପକ ପ୍ରତି ଆଗ୍ରହ ଥାଏ ସେ ସେହି ଉଦ୍ଦୀପକ ପ୍ରତି ଆଗ୍ରହ ଦେଖାଏ । ଯେଉଁ ବାଳକ ଖେଳିବାକୁ ଭଲପାଏ, ବଜାରକୁ ଗଲେ ତାର ଖେଳସାମଗ୍ରୀ ଦୋକାନ ପ୍ରତି ଅଧିକ ଦୃଷ୍ଟିପଡ଼େ । ଅଥଚ ଯେ ଗଳ୍ପ ବହି ପଢ଼ିବାକୁ ଭଲପାଏ, ରଙ୍ଗରଙ୍ଗିଆ ବହିଦୋକାନ ଆଡ଼କୁ ତାର ଧ୍ୟାନ ଅଧିକ ଯାଏ । ଅପର ପକ୍ଷରେ ଲୋଭନୀୟ ଓ ରୁଚିକର ଖାଦ୍ୟପ୍ରତି ଆଗ୍ରହ ଥିବା ଅନ୍ୟ ଏକ ବାଳକର ଜଳଖିଆ ଦୋକାନ ବା ହୋଟେଲ ଆଡ଼କୁ ଆଖି ଘୂରିବୁଲେ । ଯେଉଁ ବାଳକର ପୋଷାକ ବା ଫେସନ ପ୍ରତି ବେଶୀ ଆଗ୍ରହ ଶିକ୍ଷକ ବା ଶିକ୍ଷୟିତ୍ରୀ କେଉଁ ପ୍ରକାରର ପୋଷାକ ପିନ୍ଧି ବିଦ୍ୟାଳୟକୁ ଆସନ୍ତି, ସେଥିପ୍ରତି ସେ ଅଧିକ ଧ୍ୟାନ ଦିଏ । କିନ୍ତୁ ପାଠପଢ଼ା ପ୍ରତି ଧ୍ୟାନ ଥିବା ଅନ୍ୟ ଏକ ବାଳକ ଶିକ୍ଷକ କିପରି ପଢ଼ାଉଛନ୍ତି, ସେଥିପ୍ରତି ଅଧିକ ଧ୍ୟାନ ଦେବ ଓ ସେ କଣ ପିନ୍ଧିଲେ, କିପରି ଚାଲିଲେ, ସେଥିପ୍ରତି ତାର ଧ୍ୟାନ ରହିବ ନାହିଁ । ଜଣେ ବୈଦ୍ୟୁତିକ ଯନ୍ତ୍ରୀଙ୍କର ବିଦ୍ୟୁତ୍ ଯନ୍ତ୍ରପାତି ଆଡ଼କୁ, ଜଣେ ଡାକ୍ତରଙ୍କର ରୋଗ ଓ ରୋଗୀ, ଜଣେ ବୈଜ୍ଞାନିକର ବିଜ୍ଞାନ ସମ୍ବନ୍ଧୀୟ ଗବେଷଣା ପ୍ରତି ଅଧିକ ଧ୍ୟାନ ଥାଏ ।

(୧) **ଅଭ୍ୟାସ** :—ଶିଶୁର ଦୈନନ୍ଦିନ ଜୀବନରେ ଅଭ୍ୟାସବଶତଃ ଉଦ୍ଦୀପକ-ବସ୍ତୁବିଶେଷ ପ୍ରତି ଧ୍ୟାନ ଆକର୍ଷିତ ହୁଏ । ଯେଉଁ ଶିଶୁର ପ୍ରତ୍ୟହ କଦଳୀ ଖାଇବାର ଅଭ୍ୟାସ, କଦଳୀ ଦେଖିଲେ ତାର ଦୃଷ୍ଟି ସେ ଦିଗରେ ଧାବିତ ହୁଏ । ଥରେ ଏକ ବଜାରକୁ ତିନି ବନ୍ଧୁ ବୁଲିବାକୁ ଗଲେ । ପ୍ରଥମ ବ୍ୟକ୍ତିଙ୍କର ବହି ପଢ଼ିବାରେ ବିଶେଷ ଆଗ୍ରହ, ତେଣୁ ସେ କେବଳ ପୁସ୍ତକ ଦୋକାନ ଆଡ଼କୁ ଗଲେ । ଆଉ ଜଣଙ୍କର ସିଗାରେଟ୍ ପାନ କରିବା ଅଭ୍ୟାସ, ସେ ସିଗାରେଟ୍ କିଣିଲେ । ତୃତୀୟ ବନ୍ଧୁଙ୍କର ପାନ ନ ହେଲେ ନ ଚଳେ ; ତେଣୁ ସେ ନିକଟରେ କେଉଁଠି ପାନ ଦୋକାନ ଅଛି କି ନାହିଁ ସେଥିପ୍ରତି ଧ୍ୟାନ ଦେଲେ । ମଦ, ଗଞ୍ଜେଇ ଓ ଅଫିମ ଖାଉଥିବା ବ୍ୟକ୍ତିମାନଙ୍କର ମଧ୍ୟ ରାସ୍ତାରେ ଯାଉଥିବା ବେଳେ ଏହିସବୁ ଦୋକାନ ପ୍ରତି ଅଧିକ ଧ୍ୟାନ ଚାଲିଯାଏ । ଏଣୁ ଅଭ୍ୟାସ ଯେ ଧ୍ୟାନ ଆକର୍ଷଣ କରାଏ ଏହା ଅସ୍ୱୀକାର କରାଯାଇନପାରେ ।

(୨) **ଅଭିରୁଚି ବା ଆଗ୍ରହ** :—ଯେଉଁ ବସ୍ତୁ ପ୍ରତି ଯାହାର ଆଗ୍ରହ ବା ଅଭିରୁଚି ଥାଏ, ସେ ଆଡ଼କୁ ଧ୍ୟାନ ଯିବାର ବହୁଳ ଦୃଷ୍ଟାନ୍ତ ରହିଅଛି । ସଙ୍ଗୀତପ୍ରେମୀ ରାସ୍ତାରେ ଗଲାବେଳେ କେଉଁଠାରେ ସଙ୍ଗୀତ ଶୁଣିଲେ ସେ ଅଟକିଯାଇ ସେଥିପ୍ରତି ଧ୍ୟାନ ଦିଅନ୍ତି । ସିନେମା ପ୍ରତି ଯେଉଁମାନଙ୍କର ଆଗ୍ରହ ସିନେମାଘର ଓ ବିଭିନ୍ନ ସ୍ଥାନରେ ମରାଯାଇଥିବା ସିନେମା ପୋଷ୍ଟର ପ୍ରତି ସେମାନଙ୍କର ଧ୍ୟାନ ପ୍ରଥମେ ପଡ଼ିଥାଏ । ଉଦାହରଣ ସ୍ୱରୂପ ଏକ ୭/୮ ବର୍ଷର ବାଳକର ସିନେମା ପ୍ରତି ଏତେ ଆଗ୍ରହ ଯେ ସେ ଘରୁ ବାହାରିବା କ୍ଷଣି କେଉଁଠାରେ କି ସିନେମା ଚାଲୁଛି, ତାହା ଜାଣିବା ପାଇଁ ରାସ୍ତାକଡ଼ ପ୍ରାଚୀରମାନଙ୍କରେ ମରାଯାଇଥିବା ବିଭିନ୍ନ ପୋଷ୍ଟରଗୁଡ଼ିକୁ ପ୍ରଥମେ ଧ୍ୟାନ ଦିଏ । ଖବର କାଗଜ ଘରକୁ ଆସିଲେ କେଉଁ ପ୍ରେକ୍ଷାଳୟରେ କେଉଁ ସିନେମା ଚାଲୁଛି ତାହା ସେ ଦେଖିବାକୁ ଅତ୍ୟଧିକ ଅଗ୍ରହ ଦେଖାଏ । ଅନ୍ୟ ଏକ ବାଳକର ଖେଳପ୍ରତି ଏତେ ଆଗ୍ରହ ଯେ କାଗଜ ଖୋଲିଲେ ପ୍ରଥମେ ସେ ଖେଳ ଖବର ଜାଣିବାକୁ ଆଗ୍ରହୀ ହୁଏ । ରେଡ଼ିଓରୁ ବିଭିନ୍ନ ଖେଳ ସମ୍ପର୍କରେ ଧାରା ବିବରଣୀ ପ୍ରଚାର ହେଲାବେଳେ ସେ ସବୁ କାମ ଛାଡ଼ି ରେଡିଓ ପାଖରେ ବସି ରହେ । ବାଳିକାମାନେ ସାଧାରଣତଃ ବଜାରକୁ ଗଲେ ଚୁଡ଼ି, ଶାଢ଼ି, ବିଭିନ୍ନ ରକମର ଗହଣା ଓ ପୋଷାକ ଦୋକାନମାନଙ୍କ ପ୍ରତି ଅଧିକ ଧ୍ୟାନ ଦିଅନ୍ତି । କାରଣ ଏ ଦିଗରେ ସେମାନଙ୍କର ଅଭିରୁଚି ବାଳକମାନଙ୍କ ଅପେକ୍ଷା ଅଧିକ । ଏହି ପ୍ରକାର ଅଭିରୁଚି ଅବଶ୍ୟ ଅଭ୍ୟାସଜନିତ । କିନ୍ତୁ ଜନ୍ମଗତ ରୁଚି ହେଲା ବାଳକ ବାଳିକାମାନଙ୍କର ଖେଳପ୍ରତି ଆଗ୍ରହ । ସେହିପରି ବିରାଡ଼ିର ମୂଷା ଓ ମାଛପ୍ରତି, କୁକୁରର ମାଂସପ୍ରତି ଆଗ୍ରହ ଇତ୍ୟାଦି । ଅନ୍ୟ ସମସ୍ତ ଅଭିରୁଚିଗୁଡ଼ିକ ଅଭ୍ୟାସଜନିତ ହୋଇଥାଏ । କୌଣସି ପୁସ୍ତକ ଦୋକାନକୁ ଗଲେ କେହି ଉପନ୍ୟାସ କିଣନ୍ତି, ଆଉ କେହି ଡିଟେକ୍ଟିଭ୍, ଆଉ କେହି ବା କ୍ଷୁଦ୍ରଗଳ୍ପ କିଣନ୍ତି ।

**କୌତୁହଳ**—କେତେଗୁଡ଼ିଏ ବସ୍ତୁକୁ ଜାଣିବାରେ ବା ଘଟଣାବଳୀକୁ ବିଶ୍ଳେଷଣ କରି ତାର ସାରତତ୍ତ୍ୱ ଜାଣିବାରେ ବ୍ୟକ୍ତିମାନଙ୍କର କୌତୁହଳ ରହିଥାଏ । ଯେଉଁ ଉଦ୍ଦୀପକ ପ୍ରତି କୌତୁହଳ ରହିଥାଏ, ସେ ଦିଗକୁ ଧ୍ୟାନ ଆପେ ଆପେ ଚାଲିଯାଏ ।

ବିଜ୍ଞାନ ସମ୍ବନ୍ଧୀୟ ବିଭିନ୍ନ ଘଟଣା ଜାଣିବା ପାଇଁ ଯେଉଁ ଶିଶୁର କୌତୁହଳ ଥାଏ, ସେ ବିଜ୍ଞାନ ସମ୍ବନ୍ଧୀୟ ବିଭିନ୍ନ ପୁସ୍ତକ କିଣି ସେଗୁଡ଼ିକୁ ପାଠ କରିବାକୁ ଚାହିଁବ । ବିଭିନ୍ନ ଉଦ୍ଦୀପକଗୁଡ଼ିକୁ ଶିଶୁ ଆଗରେ ଏପରି ଭାବରେ ଉପସ୍ଥାପିତ କରିବାକୁ ହେବ ଯେ, ସେଥିପ୍ରତି ଶିଶୁ ମନରେ କୌତୁହଳ ଜାତ ହେବ । ଶିଶୁ ମନରେ ବିସ୍ମୟ ଜାତ କରାଇବା ଫଳରେ ଶିଶୁ ସେ ଉଦ୍ଦୀପକ ପ୍ରତି ଧ୍ୟାନ ଦେବାକୁ ଚେଷ୍ଟା କରିବ । ତାର ବିଭିନ୍ନ ବିଷୟ ଜାଣିବାର ଇଚ୍ଛା ମଧ୍ୟ ଜାତ ହେବ ।

ଶିକ୍ଷଣ ଏବଂ ପ୍ରଶିକ୍ଷଣ—ଏହା ଅଭ୍ୟାସ ସହିତ ଜଡ଼ିତ । ଶିକ୍ଷଣରୁ ହିଁ ଅଭ୍ୟାସ ଗଠିତ ହୁଏ । ଶିକ୍ଷଣ ଓ ପ୍ରଶିକ୍ଷଣ ଯୋଗୁ ଏକ ବୈଜ୍ଞାନିକଙ୍କର ଦୃଷ୍ଟି ବିଜ୍ଞାନ ସମ୍ବନ୍ଧୀୟ ଉଦ୍ଭାବନ ତଥା ଗବେଷଣା ଆଡ଼କୁ, ଏକ ଉଦ୍ଭିଦବିତ୍‌ଙ୍କର ବିଶେଷ ଧରଣର ବୃକ୍ଷଲତା ଆଡ଼କୁ ଧ୍ୟାନ ଆକର୍ଷିତ ହୁଏ । ପ୍ରାରମ୍ଭରୁ ଶିକ୍ଷଣ ସାହାଯ୍ୟରେ ବିଭିନ୍ନ ବସ୍ତୁ ପ୍ରତି ଶିଶୁର ଧ୍ୟାନ ଆକର୍ଷଣ କରାଯାଇପାରେ । ସାଧାରଣତଃ ବାଳିକାମାନଙ୍କୁ ରନ୍ଧନ, ଗୃହସଜ୍ଜା, ସିଲେଇ ଓ ଶିଶୁପାଳନ ବିଷୟରେ ଶିକ୍ଷା ଦେବାଦ୍ୱାରା ସେମାନଙ୍କର ଏହିସବୁ ଦିଗରେ ଅଧିକ ଧ୍ୟାନ ଥିବାର ଦେଖାଯାଇଥାଏ ।

ଅଭିଜ୍ଞତା—ଶିଶୁର ଜୀବନର ଅଭିଜ୍ଞତା ସହିତ ଯଦି କୌଣସି ଉଦ୍ଦୀପକ ସମ୍ବନ୍ଧିତ ବା ଜଡ଼ିତ ହୋଇଥାଏ, ତେବେ ସେଥିପ୍ରତି ତାର ଧ୍ୟାନ ଚାଲିଯାଏ । ପୁରସ୍କାର( ଭୌତିକ ବା ବାଚନିକ) ଦେଇ ମଧ୍ୟ କେତେକ ଉଦ୍ଦୀପକ ଆଡ଼କୁ ଶିଶୁର ଧ୍ୟାନ ଆକର୍ଷିତ କରାଯାଇ-ପାରେ ।

ଅର୍ଥ—ଯେଉଁ ଉଦ୍ଦୀପକର ଅର୍ଥ ପ୍ରାଣୀ ବୁଝିପାରେ ନାହିଁ, ଅଥବା ପ୍ରାଣୀପାଇଁ ଯେଉଁ ଉଦ୍ଦୀପକର କିଛି ମୂଲ୍ୟ ନାହିଁ, ସେଥିପ୍ରତି ତା'ର ଧ୍ୟାନ ଆକର୍ଷିତ ହେବା କଷ୍ଟକର । କିନ୍ତୁ ଅର୍ଥପୂର୍ଣ୍ଣ ଉଦ୍ଦୀପକ ଆଡ଼କୁ ମନଧ୍ୟାନ ଅତିଶୀଘ୍ର ଆକର୍ଷିତ ହୁଏ । ତେଲୁଗୁ ଭାଷାରେ ଜ୍ଞାନ ନଥିବା ଗୋଟିଏ ଓଡ଼ିଆପିଲା ଯଦି ସେ ଭାଷା ଶୁଣେ, ତାର ସେଥିପ୍ରତି ଧ୍ୟାନ ଯିବ ନାହିଁ । କାରଣ ତା ପାଇଁ ଏହି ଭାଷାର କୌଣସି ଅର୍ଥ ନ ଥିବାରୁ ଏହା ତାର ଧ୍ୟାନ ଆକର୍ଷଣ କରିବନାହିଁ ।

ମନୋଭାବ—ଏହା ମଧ୍ୟ କେତେକାଂଶରେ ଶିକ୍ଷଣ ଉପରେ ନିର୍ଭର କରେ । ଏଥିରେ ବ୍ୟକ୍ତିଗତ ଭିନ୍ନତା ଲକ୍ଷ୍ୟ କରାଯାଏ । ଭିନ୍ନ ଭିନ୍ନ ବ୍ୟକ୍ତିଙ୍କର ପାରିପାର୍ଶ୍ୱିକ ଅବସ୍ଥା ଓ ଶିକ୍ଷଣରେ ପ୍ରଭେଦ ଯୋଗୁଁ ଭିନ୍ନ ଭିନ୍ନ ମନୋବୃତ୍ତି ରହିଥାଏ । ଯେପରି କ ଘିଅ, ଲହୁଣୀ ଇତ୍ୟାଦି ଦେଖିଲେ କେତେକ ବାଳକ ନାକ ଟେକନ୍ତି । ମାତ୍ର ଆଉ କେତେକ ଏହା ଖାଇବା ପାଇଁ ଅତ୍ୟନ୍ତ ଆଗ୍ରହ ପ୍ରକାଶ କରନ୍ତି । ପ୍ରଥମ ବାଳକ ଘିଅ ଲହୁଣୀ ପ୍ରତି ଧ୍ୟାନ ନ ଦେବା ବେଳେ ଦ୍ୱିତୀୟ ବାଳକ ଦିଏ । ଏହା ମନୋବୃତ୍ତିର ଭିନ୍ନତାର ପରିଣାମରୁ ସମ୍ଭବ ହୋଇଥାଏ ।

ଲକ୍ଷ୍ୟ ଓ ଉଦ୍ଦେଶ୍ୟ—ଯେଉଁସବୁ ଉଦ୍ଦୀପକଗୁଡ଼ିକୁ କେତେକ ଉଦ୍ଦେଶ୍ୟ ହାସଲ କରିବା ପାଇଁ ଧ୍ୟାନ ଦେବାକୁ ଆବଶ୍ୟକ ହୁଏ, ସେଥିପତି ଧ୍ୟାନ ଚାଲିଯାଏ । ବାହ୍ୟ ଓ ଆନ୍ତରିକ ନିର୍ଦ୍ଧାରକମାନଙ୍କ ମଧ୍ୟରୁ ଯେ କୌଣସି ଗୋଟିଏ ନିର୍ଦ୍ଧାରକ ଯୋଗୁଁ ଅଥବା ଏକାଧିକ ନିର୍ଦ୍ଧାରକ ପାଇଁ ବ୍ୟକ୍ତିର ଧ୍ୟାନ ଉଦ୍ଦୀପକ ଆଡ଼କୁ ଧାବିତ ହୁଏ ।

କୌଣସି ଉଦ୍ଦୀପକ ପ୍ରତି ଶିଶୁର ଧ୍ୟାନ ଆକର୍ଷଣ କରିବା ପାଇଁ ଉକ୍ତ ଉଦ୍ଦୀପକକୁ ତାହାର ଦୃଷ୍ଟିରୁ ଶିଶୁ ପାଇଁ ଆକର୍ଷଣୀୟ କରିବାକୁ ହେବ । ଅର୍ଥାତ୍ ଶିକ୍ଷଣ ଓ ଅଭ୍ୟାସ ଦ୍ୱାରା ତା ମନରେ ବଛନ୍ତ ଉଦ୍ଦୀପକକୁ ଧ୍ୟାନ ଦେବାପାଇଁ ମାନସିକ ସ୍ଥିତି ଜାତ କରାଇବାକୁ ପଡ଼ିବ । ଅନେକ କ୍ଷେତ୍ରରେ ବାଳକ ବାଳିକା ପାଠ ପ୍ରତି ଧ୍ୟାନ ନ ଦେବାର ଦେଖାଯାଇଥାଏ । ଧରନ୍ତୁ ଅଙ୍କ ଓ ଇଂରାଜୀ କ୍ଲାସରେ ବାଳକ ବିଶେଷ ଅମନୋ-ଯୋଗୀ ହେଉଛନ୍ତି । ଏହି ବିଷୟ ପ୍ରତି ବାଳକର ଆଗ୍ରହ ଜାତ କରାଇବା ପାଇଁ ଅଙ୍କ ଶିକ୍ଷା ଦେବାର ପ୍ରଣାଳୀକୁ ଅଧିକ ଆକର୍ଷଣୀୟ ତଥା କୌତୂହଳପୂର୍ଣ୍ଣ କରିବାକୁ ପଡ଼ିବ । ଇଂରାଜୀ ଶିକ୍ଷା ପାଇଁ ତାକୁ ଭଲ ଇଂରାଜୀ ଖାତା, ପେନ୍ସିଲ, ରଙ୍ଗ ପେନ୍ସିଲ, ରଙ୍ଗ ବାକ୍ସ ଓ ତୂଳୀ ଇତ୍ୟାଦି ଆଣିଦେଲେ ସେ ଉକ୍ତ ଉପାଦାନରେ ଅଧିକ ଧ୍ୟାନ ଦେବ ।

ବିଷୟବସ୍ତୁଗୁଡ଼ିକ ଏପରି ଭାବରେ ଉପସ୍ଥାପିତ କରିବାକୁ ହେବ ଯେ, ତାହା ଯେପରି ପ୍ରାରମ୍ଭରେ ପିଲାକୁ କଷ୍ଟକର ନ ଜଣାଯାଏ । ଦ୍ୱିତୀୟତଃ ସର୍ବଦା ପିଲାକୁ ପୁରୁଣା କଥା କହିଲେ ତାର ଧ୍ୟାନ ଆକର୍ଷଣ କରାଯାଇପାରେ ନାହିଁ । ତେଣୁ ପୁରୁଣା ଓ ନୂଆ ବିଷୟ-ବସ୍ତୁକୁ ଏକତ୍ର ମିଶାଇ ବାଳକ ସମକ୍ଷରେ ଉପସ୍ଥାପିତ କରାଯାଇପାରେ । ପ୍ରତ୍ୟେକ ବିଷୟ ବା ବସ୍ତୁର ନୂତନ ଦିଗ ପ୍ରତି ଶିଶୁର ଧ୍ୟାନ ଆକର୍ଷଣ କରିବା ଶିକ୍ଷକ ଶିକ୍ଷୟିତ୍ରୀଙ୍କର ଲକ୍ଷ୍ୟ ହେବା ଉଚିତ । ତାହା ହେଲେ ବିଷୟଟି ଶିଶୁ ପାଇଁ ବିରକ୍ତିକର ଓ କ୍ଳାନ୍ତିଦାୟକ ହେବ ନାହିଁ । ଏଥିରୁ ସେ ଆନନ୍ଦ ପାଇପାରିବ । ବାରମ୍ବାର କୌଣସି କଥାକୁ ପୁନରାବୃତ୍ତି କଲେ ତାହା ବିରକ୍ତିକର ହୁଏ । ଯଦିବା ପୁନରାବୃତ୍ତି କରାଯାଏ ତାହା ବୁଦ୍ଧିମତାର ସହିତ କରାଯିବା ଉଚିତ । କଥାବାର୍ତ୍ତାର ଢଙ୍ଗ ମଝିରେ ମଝିରେ ବଦଳାଇ ନୀରସତା ଓ ଶୁଷ୍କତା ବଦଳରେ ଶ୍ରେଣୀରେ ମଜା ମଜା ଉଦାହରଣ ଦେଇ ଶିଶୁକୁ ହସିବାର ସୁଯୋଗ ଦେଲେ ବିଷୟବସ୍ତୁ ପ୍ରତି ସେ ଅଧିକ ଧ୍ୟାନ ତଥା ମନୋଯୋଗ ଦେଖାଇପାରିବ । ନୂତନ ଉଦାହରଣ ଦେଇ ଶିଶୁର ମନକୁ ଅଧିକ ସଚେତ ରଖିବାକୁ ହେବ ।

ତେବେ ଏହା ମନେରଖିବାକୁ ହେବ ଯେ, କୌଣସି ବିଷୟରେ ଧ୍ୟାନ ଦେବା-ବେଳେ ବ୍ୟକ୍ତିର ଅବସ୍ଥା ବ୍ୟତୀତ ଉଦ୍ଦୀପକର ଅବସ୍ଥା ମଧ୍ୟ କାର୍ଯ୍ୟ କରିଥାନ୍ତି ।

ଉଦ୍ଦୀପକର ବିଶେଷତ୍ୱମାନଙ୍କ ମଧ୍ୟରେ ଉଦ୍ଦୀପକର ନବୀନତା, ସ୍ୱରୂପ, ଆକାର, ତୀକ୍ଷ୍ଣତା, ରଙ୍ଗ, ସ୍ଥିତି, ପ୍ରବଳତା, ଗତି ପରିବର୍ତ୍ତନ, ପୁନରାବୃତ୍ତି ଇତ୍ୟାଦି ଉଲ୍ଲେଖ-ଯୋଗ୍ୟ । ବିଶେଷତଃ ଉଦ୍ଦୀପକର ଆକାର, ରଙ୍ଗ, ଆକସ୍ମିକ ପରିବର୍ତ୍ତନ ଯୋଗୁଁ ଶିଶୁମାନଙ୍କର ଧ୍ୟାନ ଉଦ୍ଦୀପକ ଉପରେ କେନ୍ଦ୍ରିତ ହୋଇଥାଏ ।

## ଧ୍ୟାନ ଓ ଆଗ୍ରହ

କୌଣସି ନୂତନ ବିଷୟ ଶିକ୍ଷା ଲାଭ କଲାବେଳେ ବାଳକଠାରେ ତତ୍ପରତା ପ୍ରକାଶ ପାଇବା ଆବଶ୍ୟକ । ଶିଖିବାର ଇଚ୍ଛା ଥିଲେ ଅଧିକ ସହଜରେ ଉଦ୍ଦୀପକ ପ୍ରତି ଧ୍ୟାନ ଦେଇ ହୁଏ । ବାଳକର ଧ୍ୟାନ ପିତା, ମାତା ବା ଶିକ୍ଷକ ଆକର୍ଷିତ କରିପାରୁଛନ୍ତି କି ନାହିଁ ତା ଉପରେ

ଶିକ୍ଷକଙ୍କର ବା ପିତାମାତାଙ୍କ ସଫଳତା ବିଶେଷ ଭାବରେ ନିର୍ଭର କରେ । ଯଦି ସେ କୌଣସି କାର୍ଯ୍ୟରେ ବା ବିଦ୍ୟାଳୟରେ ବାଳକ ଯଦି ଅମନୋଯୋଗୀ ହୁଏ, ତେବେ ଏଥିନିମିତ୍ତ ପିତା-ମାତା ଓ ଶିକ୍ଷକଙ୍କର ଦୋଷ ଦୁର୍ବଳତା ଯେ ଦାୟୀ ଏହା ଅନେକକ୍ଷେତ୍ରରେ କୁହାଯାଇପାରେ ।

ପିଲା ମନରେ ଧ୍ୟାନ ଜାତ କରାଇବା ପାଇଁ ତାକୁ ଠିକ୍ ଭାବରେ ବସିବାକୁ ଶିଖାଇବା ଦରକାର । ଯେପରିକି କୌଣସି କାର୍ଯ୍ୟ ଆରମ୍ଭ କଲାବେଳେ ସିଧା ଭାବରେ ବସି ଗୋଟିଏ ଦିଗକୁ ଚାହିଁ ମନୋନିବେଶ କରିବା ଦରକାର । ଏହାଦ୍ୱାରା ପିଲାର ଭାବାତ୍ମକ ରୁଚିରେ ସହାୟତା କରାଯାଇପାରେ ।

ଜନ୍ମ ସମୟରେ ପିଲାଠାରେ ଧ୍ୟାନ ଦେବାର ଯୋଗ୍ୟତା କମ୍ ପରିମାଣରେ ଥାଏ, ଯେପରିକି ହଠାତ୍ କୌଣସି ଶବ୍ଦ ହେଲେ, ହାତଗୋଡ଼ ବୁଲାଇବାରେ ବାଧା ଦେଲେ ବା ପଡ଼ିଗଲେ ବାଳକର ଧ୍ୟାନ ସେ ଦିଗରେ ଆକର୍ଷିତ ହୁଏ ।

ଜୀବନର ପ୍ରଥମ ବର୍ଷରେ ଶିଶୁଠାରେ ଅନେକ ନୂତନ ରୁଚି ଉତ୍ପନ୍ନ ହୋଇଥାଏ । ଯେପରିକି ଲୁଚକାଳି ରହିଥିବା ଜିନିଷ ପ୍ରତି ଧ୍ୟାନ ଦେବା, ଖେଳନା ପ୍ରଭୃତିରେ ଆଗ୍ରହ ପ୍ରକାଶ କରିବା ଇତ୍ୟାଦି । ଏହି ପରିସ୍ଥିତି ବା ଅବସ୍ଥାରେ ସେ ବହୁତ ରକମର ଉତ୍ତେଜନା ପ୍ରତି ଧ୍ୟାନ ଦେବାପାଇଁ ଯୋଗ୍ୟ ହୋଇଯାଏ । ଏହିସବୁ ପ୍ରାକୃତିକ ରୁଚି ସମୂହ ତାକୁ ନିଜର ପରିବେଶ ମଧ୍ୟରେ ସୁରକ୍ଷିତ ହୋଇ ରହିବା ପାଇଁ ଓ ସମାଜ ସହିତ ମିଳିମିଶି ଚଳିବା ପାଇଁ ସାହାଯ୍ୟ କରନ୍ତି । କେବଳ ବଞ୍ଚି ରହିବା ପାଇଁ ଶିଶୁ କେତେଗୁଡ଼ିଏ ବସ୍ତୁ ପ୍ରତି ରୁଚି ବା ଆଗ୍ରହ ପ୍ରକାଶ କରେ ନାହିଁ । ତାର ଅନ୍ୟ କେତେକ ଆବଶ୍ୟକତା ଥାଏ, ଯାହାପ୍ରତି ତାକୁ ଧ୍ୟାନ ଦେବାକୁ ପଡ଼େ ।

ଶୈଶବାବସ୍ଥାରେ ପିଲାର ମନଯୋଗୀ ହେବାର ଯୋଗ୍ୟତା ଥାଏ । ତେଣୁ ଏହି ଅବସ୍ଥାରେ ତାକୁ ଧ୍ୟାନ ଦେବାକୁ ଶିଖାଇଲେ ସେ ଯଥେଷ୍ଟ ଲାଭବାନ ହୁଏ । କେତେକ ଏପରି ବସ୍ତୁ ବା କ୍ରିୟା ରହିଛି, ଯେଉଁଥିରେ କି ସମସ୍ତେ ସ୍ୱାଭାବିକ ବାଳକର ଆଗ୍ରହ ରହେ । କିନ୍ତୁ କେତେଗୁଡ଼ିକର ସ୍ୱଭାବ ଓ ଗୁଣ ଏପରି ଯେ ପିଲା ଏଥିରେ ସ୍ୱାଭାବିକ ଭାବରେ ନିଜେ ନିଜେ ଆକୃଷ୍ଟ ବା ଆଗ୍ରହୀ ହେବ ନାହିଁ । ଯେପରିକି ଗଣିତ କଷିବା ବା ସଂସ୍କୃତ ପଢ଼ିବା । ଏସବୁ ବିଷୟରେ ଶିଶୁକୁ ଆଗ୍ରହୀ କରିବାକୁ ପଡ଼ିବ । ବାଳକର ସ୍ୱଭାବ ଏପରି ଯେ କିଛି ସମୟ ମନଯୋଗୀ ହୋଇ କାମ କରିବା ଅପେକ୍ଷା ଦୌଡ଼ାଦୌଡ଼ି, ଲୁଚକାଳି, ଖେଳ ଓ ବୁଲାବୁଲି ଇତ୍ୟାଦି କରିବାରେ ଶିଶୁ ଅଧିକ ଆଗ୍ରହ ପ୍ରକାଶ କରେ ।

କୌଣସି ବସ୍ତୁ ଆଡ଼କୁ ଧ୍ୟାନ ଦେଲେ ସେଆଡ଼କୁ ଆଗ୍ରହୀ ହେବାର ସମ୍ଭାବନା ଯଥେଷ୍ଟ ଅଧିକ ଥାଏ; କାରଣ ଧ୍ୟାନ ଓ ଆଗ୍ରହ ପରସ୍ପର ସହ ସମ୍ବନ୍ଧିତ । ଯେଉଁ ବସ୍ତୁ ବା ଘଟଣା ପ୍ରତି ଆମର ଆଗ୍ରହ ରହିଛି, ତା ପ୍ରତି ସାଧାରଣତଃ ଆମେ ଅଧିକ ଧ୍ୟାନ ଦେଉ । କିନ୍ତୁ ବେଳେ ବେଳେ ଏପରି ବସ୍ତୁ ପ୍ରତି ଶିଶୁର ଦୃଷ୍ଟି ବା ଧ୍ୟାନ ଆକର୍ଷଣ କରିବାକୁ ପଡ଼ିବ, ଯେଉଁଥିରେ କି ତାର ଆଗ୍ରହ ନଥାଇପାରେ । ସେଥିପ୍ରତି ଶିଶୁ ମନରେ ଆଗ୍ରହ ଜାତ

କରାଇବାକୁ ପଡ଼ିବ । ଭବିଷ୍ୟତ ଜୀବନଯାପନ କରିବାପାଇଁ ଏପରି କେତେଗୁଡ଼ିଏ ବସ୍ତୁ ପ୍ରତି ଧ୍ୟାନ ଦେବା ନିତାନ୍ତ ଆବଶ୍ୟକ ।

ଯେକୌଣସି ବସ୍ତୁ ବା ଘଟଣାପ୍ରତି ଧ୍ୟାନ ଦେବା ପଛରେ ପ୍ରଧାନ କାରଣ ହେଉଛି ରୁଚି ଓ ଆଗ୍ରହ । ଏ କ୍ଷେତ୍ରରେ ଧ୍ୟାନ ଓ ରୁଚିର ସମ୍ବନ୍ଧ ସାଧାରଣ ନ ହେଲେ ମଧ୍ୟ ବାସ୍ତବିକ ଅଟେ । ବାଳକର କୌଣସି ପାଠ୍ୟ ବିଷୟରେ ଆଗ୍ରହ ନ ଥାଇପାରେ, ମାତ୍ର ପରୀକ୍ଷା ଫଳକୁ ତାର ଆଗ୍ରହ ଥିବାରୁ ଏହି ବିଷୟ ପ୍ରତି ମନଧ୍ୟାନ ଦେଇ ସେ ଆଗ୍ରହ ପ୍ରକାଶ କରେ । ଯଥା—ଅଙ୍କ ବା ସଂସ୍କୃତରେ ବାଳକ ଆଗ୍ରହୀ ହୋଇନପାରେ, କିନ୍ତୁ ଅଙ୍କ ଓ ସଂସ୍କୃତରେ ଧ୍ୟାନ ଦେଲେ ସେ ଭଲ ନମ୍ବର ରଖି ପରୀକ୍ଷାରେ କୃତକାର୍ଯ୍ୟ ହେବ । ପରୀକ୍ଷାରେ କୃତକାର୍ଯ୍ୟ ହେବାକୁ ତାର ଆଗ୍ରହ ଥିବାରୁ ଅଙ୍କ ଓ ସଂସ୍କୃତ ପ୍ରତି ସେ ଧ୍ୟାନ ଦେବ । ଏହିପରି ଭାବରେ ବିଷୟବସ୍ତୁଟି ପ୍ରତି ଧ୍ୟାନ ଦେବା ତା ପାଇଁ କେତେ ଦୂର ଆବଶ୍ୟକ ତାହା ଉପଲବ୍ଧି କଲେ ଅନେକଗୁଡ଼ିଏ ବିଷୟ ପ୍ରତି ସେ ଧ୍ୟାନ ଦେଇପାରିବ । ଜନମତର ଡର, ସମାଜ ସହ ଉପଯୋଜନ, ନାନା ବାଧାବିଘ୍ନ ଓ ଅସୁବିଧାରୁ ଦୂର କରିବା ପାଇଁ ବାଳକ ଏପରି ବହୁତ ରକମର କାର୍ଯ୍ୟରେ ଆଗ୍ରହୀ ହୋଇପାରେ । ବିଷୟ-ବସ୍ତୁଟିର ପ୍ରକୃତ ସ୍ୱରୂପ ରୁଚିକର ନ ହେଲେ ମଧ୍ୟ ଅନ୍ତତଃ ଶିଶୁପାଇଁ ଗୁରୁତ୍ୱ ଦୃଷ୍ଟିରୁ ତାହାକୁ ରୁଚିକର କରିବାକୁ ପଡ଼େ । ଏସବୁ ବିଷୟକୁ ଏପରି ଭାବରେ ଗଠନ କରିବାକୁ ହେବ ଯାହାଦ୍ୱାରା ଶିଶୁ ମନରେ ସ୍ୱତଃ ଆଗ୍ରହ ଜାତ ହେବ ବା ତାର ପ୍ରାକୃତିକ ରୁଚିଗୁଡ଼ିକ ଜାଗ୍ରତ ହୋଇପାରିବ । ଯଥା—ଯେଉଁ ବାଳକ ଚିତ୍ର ବା ଡ୍ରଇଂ କରିବାକୁ ଆଗ୍ରହୀ ଅଥଚ ଗଣିତ ବା ବିଜ୍ଞାନ ପ୍ରତି ତାର ଆଗ୍ରହ ନାହିଁ, ଚିତ୍ର ମାଧ୍ୟମରେ ଗଣିତ ବା ବିଜ୍ଞାନଶିକ୍ଷା ଦିଆଯାଇ ଏହି ବିଷୟ ପ୍ରତି ତାର ଆଗ୍ରହ ଜାତ କରାଯାଇପାରିବ । ଗଣିତ ଓ ଡ୍ରଇଂ, ବିଜ୍ଞାନ ଓ ଡ୍ରଇଂ ମଧ୍ୟରେ ଥିବା ସମ୍ବନ୍ଧ ପିଲା ଜାଣିପାରିଲେ ଏବଂ ଗୋଟିକରେ ଆଗ୍ରହୀ ହେଲେ ଅନ୍ୟଟିରେ ଆଗ୍ରହୀ ହେବ ବୋଲି ଆଶା କରାଯାଏ ।

ଅବଶ୍ୟ ଅନେକ କ୍ଷେତ୍ରରେ ଶିକ୍ଷକ ଦଣ୍ଡ ଦେଇ ଗଣିତ ଆଡ଼କୁ ତାର ଆଗ୍ରହ ଜାତ କରାଇ ପାରନ୍ତି । କିନ୍ତୁ ଏହି ଦଣ୍ଡ ଫଳରେ ପିଲାର ଧ୍ୟାନ ଗଣିତର ସମସ୍ୟା ଆଡ଼କୁ ଯିବ । କାରଣ ସେ ଦଣ୍ଡରୁ ମୁକ୍ତ ପାଇବାକୁ ଚାହିଁବ ଏବଂ ଫଳରେ ଏହି ରୁଚି ପିଲାପାଇଁ ନକାରାତ୍ମକ ବା ପ୍ରତିକୂଳ ହେବ । ଏପରି ଅବସ୍ଥାରେ ବାଳକ ଗଣିତକୁ କଷ୍ଟ ଓ ଦୁଃଖ-ଦାୟକ ଭାବି ଡରିବ । କିନ୍ତୁ ପୂର୍ବୋକ୍ତ ପରିସ୍ଥିତିରେ ଗଣିତ ଶିଶୁପାଇଁ ସନ୍ତୋଷଜନକ ବା ଆନନ୍ଦଦାୟକ ହେବ ଏବଂ ଗଣିତ ଆଡ଼କୁ ତାର ଆଗ୍ରହ ସ୍ୱତଃ ଜାତ ହେବ । ପିଲା ଭଲ ପାଉଥିବା, ପସନ୍ଦ କରୁଥିବା ତଥା ଆଗ୍ରହ ଦେଖାଉଥିବା ବିଭିନ୍ନ ବିଷୟ ସହିତ ଅନ୍ୟ କଠିନ ବସ୍ତୁକୁ ସମ୍ବନ୍ଧିତ କରି ଏକ ସୁଖକର ଭାବନା ତା' ମନରେ ଜାତ କରାଇଲେ, କଷ୍ଟକର ବିଷୟ ପ୍ରତି ମଧ୍ୟ ତା ମନରେ ଆଗ୍ରହ ଜାତ କରାଯାଇପାରିବ । ପିଲାକୁ ଭୟଭୀତ କରାଇ କୌଣସି ବିଷୟ ପ୍ରତି ଆକୃଷ୍ଟ କରାଇବାକୁ ଚେଷ୍ଟା କଲେ ତାର ରୁଚି ନକାରାତ୍ମକ ହୁଏ । ଶିଶୁର ଶିକ୍ଷଣରେ ମୂଳ ପ୍ରବୃତ୍ତିଗତ ରୁଚିମାନଙ୍କର ନକାରାତ୍ମକ ପ୍ରୟୋଗ କରିବା

ଅନୁଚିତ । ବରଂ ଗ୍ରହଣାତ୍ମକ ରୁଚିମାନଙ୍କରୁ ଲାଭବାନ ହେବାପାଇଁ ଶିଶୁକୁ ଶିକ୍ଷାଦେବା ବିଧେୟ ।

ଏହିପରି ଭାବରେ ପିତାମାତା ଓ ଶିକ୍ଷକ ଶିଶୁ ମନରେ ନୂତନ ଆଗ୍ରହ ଜାତ କରାଇପାରିବେ । ଫଳରେ ଶିଶୁର ଆଗ୍ରହ ଓ ରୁଚିର ବିସ୍ତାର ଘଟିବ ।

ଯଦି ଶିଶୁର ପ୍ରାକୃତିକ ରୁଚିମାନଙ୍କୁ ବଢ଼ାଇ ଦିଆଯାଏ, ତେବେ କେବଳ ରୁଚିକର ବସ୍ତୁମାନଙ୍କ ପ୍ରତି ଧ୍ୟାନ ଦେବାର ଅଭ୍ୟାସ ଶିଶୁର ବଢ଼ିଯିବ ଏବଂ ଯେଉଁ ବିଷୟଗୁଡ଼ିକ ତାକୁ ରୁଚିକର ବୋଧ ହେବ ନାହିଁ, ତାହା ପ୍ରତି ସେ ଧ୍ୟାନ ଦେବନାହିଁ । ଫଳରେ ତାର ପରିଶ୍ରମ କରିବାର ଅଭ୍ୟାସ ମଧ୍ୟ ରହିବ ନାହିଁ ।

ଗୋଟିଏ କାର୍ଯ୍ୟରେ ଆଗ୍ରହ ଥିଲେ, ସେଥିରେ ବାରମ୍ବାର ପ୍ରଯତ୍ନ କରିବାକୁ ମନ ହୁଏ; କିନ୍ତୁ ଯେଉଁଥିରେ ପିଲାର ଆଗ୍ରହ ବା ରୁଚି ନ ଥାଏ ତାକୁ ସେ ଶୀଘ୍ର ପରିତ୍ୟାଗ କରେ । ଏହିପରି ଭାବରେ ରୁଚି ଓ ପିଲାଠାରେ ପରିଶ୍ରମ କରିବାର ଆଗ୍ରହ ମଧ୍ୟ ଜାତ କରାଯାଇପାରେ । ଆଗ୍ରହ ନ ଥାଇ କୌଣସି କାର୍ଯ୍ୟ କଲେ ତାର ଧ୍ୟାନ ସହଜରେ କାର୍ଯ୍ୟ ଆଡ଼କୁ ଯାଏ ନାହିଁ । ଯେଉଁ କାର୍ଯ୍ୟ ରୁଚିକର ହୋଇଥାଏ, ଅଧିକାଂଶ ଶକ୍ତି ସେ କାର୍ଯ୍ୟରେ ବିନିଯୋଗ ହୁଏ, କିନ୍ତୁ ଅରୁଚିକର କାର୍ଯ୍ୟରେ ଅଧିକାଂଶ ଶକ୍ତି କାର୍ଯ୍ୟରେ ଖର୍ଚ୍ଚ ନ ହୋଇ, ଧ୍ୟାନ ଦେବାରେ ଖର୍ଚ୍ଚ ହୁଏ ।

ଏହା ମଧ୍ୟ ଦେଖାଯାଇଛି ଯେ, ପିଲା ଅଧିକ ସରଳ କାର୍ଯ୍ୟରେ ଆଗ୍ରହୀ ହୁଏ ନାହିଁ । କାର୍ଯ୍ୟର କଠିନତା ତା ପାଇଁ ଏକ ଚେଲେଞ୍ଜ ରୂପେ କାର୍ଯ୍ୟ କରେ । ଫଳରେ କାର୍ଯ୍ୟ ପ୍ରତି ସେ ଅଧିକ ଧ୍ୟାନ ଦିଏ ।

କୌଣସି କାର୍ଯ୍ୟକୁ ସଂପୂର୍ଣ୍ଣ ଭାବରେ ରୁଚିକର ବା ସମ୍ପୂର୍ଣ୍ଣ ଭାବରେ ଅରୁଚିକର ବୋଲି କୁହାଯାଇନପାରେ । ସର୍ବାଧିକ ରୁଚିକର କାର୍ଯ୍ୟରେ ମଧ୍ୟ କିଛିଭାଗ ଅରୁଚିକର କାର୍ଯ୍ୟ ଥାଇପାରେ । ଗୋଟିଏ ରୁଚିକର କାର୍ଯ୍ୟ ବା ବିଷୟକୁ ରୁଚିକର ଢ଼ଙ୍ଗରେ ଶିକ୍ଷା ନ ଦେଲେ, ସେହି କାର୍ଯ୍ୟକୁ ନୀରସ ଭାବରେ ସମାଧାନ କରିବାର ଅଭ୍ୟାସ ପଡ଼ିଯାଏ ଏବଂ ଭବିଷ୍ୟତରେ ସେ ଏହାକୁ ଆଗ୍ରହ ସହକାରେ ସମାଧାନ କରିପାରେ ନାହିଁ ।

କେତେକ ସ୍ୱାଭାବିକ କାରଣ ଯୋଗୁ ପିଲା କେତେଗୁଡ଼ିଏ ବିଷୟ ପ୍ରତି ଅଧିକ ଧ୍ୟାନ ଦେଇଥାଏ । ଯେପରି କି (୧) ଚିତ୍ର ଆଙ୍କିବା । ଏହା ଏକ ସହଜାତ ରୁଚି ଅଟେ । (୨) ପରୀକ୍ଷାରେ ଭଲ କରିବାରେ ଗଣିତର ନମ୍ବର ସାହାଯ୍ୟ କରେ, ଏଣୁ ଗଣିତରେ ଆଗ୍ରହୀ ହେବା । ଏହା ଏକ ପରୋକ୍ଷ ସ୍ୱାଭାବିକ ରୁଚି ଅଟେ । (୩) ଶ୍ରେଣୀରେ ଉଚ୍ଚସ୍ଥାନ ପାଇବା ନିମିତ୍ତ ଗଣିତରେ ପରିଶ୍ରମ କରିବା । ଏହା ଏକ ପରୋକ୍ଷ ଅର୍ଜିତ ରୁଚି ।

ଉପରୋକ୍ତ କାରଣମାନଙ୍କ ମଧ୍ୟରୁ ଏକ ବା ତା'ଠାରୁ ଅଧିକ କାରଣ ଯୋଗୁ ପିଲା କୌଣସି ଜିନିଷ ପ୍ରତି ଧ୍ୟାନ ଦିଏ । ଏହି କାରଣଗୁଡ଼ିକ ପରସ୍ପର ସହିତ ସମ୍ବନ୍ଧିତ ।

## ଅନ୍ୟମନସ୍କତା ବା ଧ୍ୟାନ ନ ଦେବାର କାରଣ

ମାନସିକ କ୍ଲାନ୍ତି ଓ ଅବସାଦ ଅଥବା ଉଦ୍ଦୀପକ ପ୍ରତି ଆଗ୍ରହ ନଥିଲେ, ଗୋଟିଏ ଉଦ୍ଦୀପକ ବାରମ୍ବାର ଏବଂ ବହୁ ସମୟଧରି ପିଲାର ଚେତନା କେନ୍ଦ୍ରରେ ଅବସ୍ଥାପିତ ହେଲେ ସେଥିରୁ ଆଗ୍ରହ କମିଯାଏ ଏବଂ ଧ୍ୟାନ-ବିଚଳନ ଦେଖାଯାଏ ।

(୨) ଶାରୀରିକ ଦୁର୍ବଳତା ଓ କ୍ଲାନ୍ତି ଯୋଗୁ ମଧ୍ୟ କୌଣସି ବିଷୟ ପ୍ରତି ଧ୍ୟାନ ଦେବାରେ ତ୍ରୁଟି ଦେଖାଯାଏ । ତେଣୁ ଦୁର୍ବଳ ଶିଶୁମାନେ ଶାରୀରିକ କାରଣ ଯୋଗୁ ଶ୍ରେଣୀରେ ଅନ୍ୟମନସ୍କ ହୁଅନ୍ତି ଏବଂ ପାଠ ପ୍ରତି ଧ୍ୟାନ ଦେଇପାରନ୍ତି ନାହିଁ ।

(୩) ଶାରୀରିକ ତ୍ରୁଟି, ଯଥା—ଆଖି ଓ କାନରେ ତ୍ରୁଟି ଭଲଭାବରେ ଦେଖାଯାଉ ନ ଥିଲେ ବା ଶୁଣାଯାଉ ନ ଥିଲେ ବିଷୟଟି ଉତ୍ତମ ରୂପେ ବୁଝିହୁଏ ନାହିଁ । ଫଳରେ ସେଥିରେ ଆଗ୍ରହ ଜାତ ହୁଏ ନାହିଁ ଓ ଅନ୍ୟମନସ୍କତା ଦେଖାଦିଏ ।

(୪) ଉପଯୁକ୍ତ ସୁଷମ ଓ ପୁଷ୍ଟିକର ଖାଦ୍ୟର ଅଭାବ ଯୋଗୁ ଧ୍ୟାନ ଦେବାକୁ ଆବଶ୍ୟକ ହେଉଥିବା ଶକ୍ତିର ଅଭାବ ଘଟେ । ଫଳରେ ଶିଶୁ ଗୋଟିଏ ବିଷୟରେ ବେଶୀ ସମୟ ଧ୍ୟାନକୁ କେନ୍ଦ୍ରୀଭୂତ କରିପାରେ ନାହିଁ ଓ ତାର ଧ୍ୟାନର ବିଚଳନ ଘଟେ ।

(୫) କାର୍ଯ୍ୟ ମଝିରେ ଯଦି ଅଳ୍ପ ସମୟ ପାଇଁ ବିଶ୍ରାମ ଦିଆନଯାଏ ବା କାମରେ ପରିବର୍ତ୍ତନ ନ ହୁଏ, ତେବେ ଧ୍ୟାନ ବିଚଳନ ଦେଖାଯାଏ ।

ଶିକ୍ଷକ ଯଦି ନିଜେ କ୍ଲାନ୍ତ ହୋଇଥାନ୍ତି ସେ ଆଗ୍ରହ ଓ ଉତ୍ସାହର ସହିତ ପିଲା ସମକ୍ଷରେ ପାଠ୍ୟ ବିଷୟ ଉପସ୍ଥାପିତ କରିପାରନ୍ତି ନାହିଁ । ଫଳରେ ତାଙ୍କୁ ଆଗ୍ରହାନ୍ୱିତ କରିପାରେ ନାହିଁ ।

କୌଣସି କ୍ରିୟାରେ ଆଗ୍ରହ ନ ଥିଲେ, ଏହା ଅତି ଅଳ୍ପ ସମୟ ପାଇଁ କରିଥିଲେ ମଧ୍ୟ କ୍ଲାନ୍ତି ଓ ଅବସାଦ ଜାତ ହୁଏ । ମାନସିକ କ୍ଲାନ୍ତି ବା ଅବସାଦ ଜାତ ହୋଇଥିଲେ, କାର୍ଯ୍ୟରେ ପରିବର୍ତ୍ତନ କଲେ କ୍ଲାନ୍ତି ଦୂର ହୁଏ । କିନ୍ତୁ ଶାରୀରିକ କ୍ଲାନ୍ତି ପାଇଁ ଅତିରିକ୍ତ କାର୍ଯ୍ୟ କଲେ ଶକ୍ତି ଖର୍ଚ୍ଚ ହୋଇ ଶାରୀରିକ କ୍ଲାନ୍ତି ଜାତ ହୁଏ । ଶାରୀରିକ କ୍ଲାନ୍ତି ଜାତ ହେଲେ ଧ୍ୟାନ ବିଚଳନ ଘଟେ । ତେଣୁ ଏଥିପାଇଁ ବିଶ୍ରାମ ଆବଶ୍ୟକ ହୁଏ ।

ଧ୍ୟାନ ଓ ରୁଚି ପରସ୍ପର ସହିତ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । କୌଣସି କାର୍ଯ୍ୟରେ ରୁଚି ଥିଲେ ସେଥିପ୍ରତି ଧ୍ୟାନ ଦେବାକୁ ମନ ହୁଏ । ରୁଚି ଉପରେ ହିଁ ଧ୍ୟାନ ନିର୍ଭର କରେ ।

ପିଲା କୌଣସି ବିଷୟ ପ୍ରତି ଧ୍ୟାନ ଦେଉ ବୋଲି ଯଦି ଆମେ ଚାହୁଁ, ତେବେ ପାଠ୍ୟକ୍ରମକୁ ଏପରି ଭାବରେ ତିଆରି କରିବାକୁ ହେବ, ଯେପରି କି ଏଥିରେ ପରିବର୍ତ୍ତନ ହୁଏ । ନୂତନ ଦୃଷ୍ଟିକୋଣ ମାଧ୍ୟମରେ କୌଣସି ଉଦାହରଣ ଦେଇ କ୍ରିୟାର ରୂପ ବଦଳାଇବାକୁ ହେବ । ମୌଖିକ ପାଠ ମଝିରେ ମଝିରେ ପିଲାଙ୍କୁ ଅଳ୍ପ ସମୟ ପାଇଁ ଅବସର ଦେବା ଉଚିତ । ଏହି ସମୟରେ ବାଳକ ଚିତ୍ର ଦେଖିବ, ପୁସ୍ତକକୁ ତନ୍ନ ତନ୍ନ କରି ପଢ଼ି ବୁଝିପାରୁନଥିବା ପ୍ରଶ୍ନକୁ ପଚାରିବ ।

କେତେକ କ୍ଷେତ୍ରରେ ଦେଖାଯାଏ ଯେ, ବିଷୟବସ୍ତୁରେ ପରିବର୍ତ୍ତନ ହେଲେ ମଧ୍ୟ ଧ୍ୟାନ ସର୍ବଦା ରହେ ନାହିଁ । କେବେ କେବେ ଏଥିରେ କିଛି ବାଧା ଜାତ ହୁଏ । କିନ୍ତୁ ଏହି ବାଧା ଅସ୍ଥାୟୀ ହୋଇଥାଏ । ଯଦି ଏଥିରେ ବାଳକର ରୁଚି ବା ଆଗ୍ରହ ଅଧିକ ହୋଇଥାଏ, ତେବେ ଏହା ପୁଣି ତାର ଧ୍ୟାନ ଆକର୍ଷଣ କରେ ।

ସାଧାରଣତଃ ପିଲା ବାସ୍ତବିକ ବସ୍ତୁ ପ୍ରତି ଅଧିକ ଧ୍ୟାନ ଦେଖାଏ । ବିଶେଷ କରି ସେ ଯେଉଁ ବସ୍ତୁଗୁଡ଼ିକୁ ଛୁଇଁବାକୁ, ଧରିବାକୁ, ଦେଖିବାକୁ ଓ ଶୁଙ୍ଘିବାକୁ ପାଇଥାଏ, ତା ପ୍ରତି ଅଧିକ ଧ୍ୟାନ ଦିଏ । କୌଣସି ପ୍ରକାର ବ୍ୟସ୍ତତା ଭିତରେ ରହିଲେ ବା ବସିବାରେ ଅସୁବିଧା ହେଲେ ଧ୍ୟାନ ରଖିବା କଷ୍ଟକର ହୋଇପଡ଼େ । ତେଣୁ ପିଲାର ଧ୍ୟାନକୁ ବସ୍ତୁ ଉପରେ କେନ୍ଦ୍ରିତ କରି ରଖିବାକୁ ହେଲେ ଏସବୁ ବିଷୟ ପ୍ରତି ଦୃଷ୍ଟି ଦେବାକୁ ପଡ଼ିବ ।

## ଶିକ୍ଷଣ ଓ ଅଭ୍ୟାସ ଗଠନ

ବିଶେଷ ପ୍ରକାରର ପ୍ରଶିକ୍ଷଣ ବା ପୂର୍ବାଭ୍ୟାସ, ପୂର୍ବର ଅନୁଭବ ତଥା ଅଭିଜ୍ଞତା ଯୋଗୁ ବ୍ୟବହାରରେ ସ୍ଥାୟୀ ଭାବରେ ବିକାଶାତ୍ମକ ପରିବର୍ତ୍ତନକୁ ଶିକ୍ଷଣ କୁହାଯାଏ । ପରିବେଷ୍ଟନୀର ବିଭିନ୍ନ ସ୍ଥିତିମାନଙ୍କରେ ଉଚିତ ପ୍ରତିକ୍ରିୟା ଦେଖାଇବା ପାଇଁ ଏବଂ ପାରିପାର୍ଶ୍ୱିକ ଅବସ୍ଥା ସହିତ ନିଜକୁ ଉପଯୋଜନ କରିବାପାଇଁ ଏହି ପ୍ରକାରର ପରିବର୍ତ୍ତନ ଆବଶ୍ୟକ ହୁଏ ।

ଶିକ୍ଷଣ ଏକ ନିରବଚ୍ଛିନ୍ନ ପ୍ରକ୍ରିୟା । ଜନ୍ମ ହେବା ସମୟରୁ ମୃତ୍ୟୁ ପର୍ଯ୍ୟନ୍ତ ପରିବେଶ ସହ ନିଜକୁ ଉପଯୋଜନ କରିବା ପାଇଁ ବ୍ୟକ୍ତିକୁ ଶିକ୍ଷଣର ସାହାଯ୍ୟ ନେବାକୁ ପଡ଼ିଥାଏ । ତେବେ ଏହା ସତ୍ୟ ଯେ ଶୈଶବାବସ୍ଥାରେ ଶିକ୍ଷଣ ଅନ୍ୟ ଅବସ୍ଥାମାନଙ୍କ ତୁଳନାରେ ଅତ୍ୟନ୍ତ କ୍ଷିପ୍ରଗତିରେ ଅଗ୍ରଗତି କରେ । ଜନ୍ମ ସମୟରେ ଶିଶୁର ମନକୁ ମୋଟ ଉପରେ ଖଣ୍ଡିଏ ଅଲେଖା କାଗଜ ସହିତ ତୁଳନା କରାଯାଇପାରେ । ଅନୁବଂଶ ପ୍ରଦତ୍ତ କେତେକ ଲକ୍ଷଣ (traits) ବ୍ୟତୀତ ଶିଶୁ ତାର ସମସ୍ତ ଲକ୍ଷଣ ତଥା ସ୍ୱଭାବ ପାରିପାର୍ଶ୍ୱିକ ଅବସ୍ଥା ସଂସ୍ପର୍ଶରେ ଆସି ଅର୍ଜନ କରେ । ଏହି ଅର୍ଜିତ ସ୍ୱଭାବଗୁଡ଼ିକୁ ଅନ୍ୟ ଭାଷାରେ ଶିକ୍ଷଣ ଆଖ୍ୟା ଦିଆଯାଇପାରେ । ନିଜର ବିଭିନ୍ନ ଆବଶ୍ୟକତା ପୂରଣ କରିବାପାଇଁ ମାନବ ଶିଶୁକୁ ପ୍ରାରମ୍ଭରେ ବୟସ୍କମାନଙ୍କ ଉପରେ ନିର୍ଭର କରିବାକୁ ପଡ଼ିଥାଏ । ନିଜକୁ କିପରି ଆତ୍ମ-ନିର୍ଭରଶୀଳ କରି ଗଢ଼ିବାକୁ ହେବ, ତାହା ସେ ସେମାନଙ୍କ ସଂସ୍ପର୍ଶରୁ ହିଁ ଶିକ୍ଷା କରିବାକୁ ଆରମ୍ଭ କରିଥାଏ । ଶିଶୁର ଆବଶ୍ୟକତା ଯେତେ ଅଧିକ ହୁଏ, ତାର ଶିକ୍ଷଣ ସେତେ କ୍ଷିପ୍ର ଓ ତୀବ୍ର ହୁଏ । ଯେଉଁ ଶିଶୁର ସମସ୍ତ ଆବଶ୍ୟକତାଗୁଡ଼ିକ ଆପେ ଆପେ ବୟସ୍କମାନଙ୍କଦ୍ୱାରା ପୂରଣ ହୋଇଯାଏ, କୌଣସି ଅଭାବ ବା ସମସ୍ୟାର ସମ୍ମୁଖୀନ ହେବା ପୂର୍ବରୁ ତାର ଅଭାବ ଯଦି ପୂରଣ ହୋଇଯାଏ, ତେବେ ତାର ଶିକ୍ଷଣ ପ୍ରକ୍ରିୟା ଶିଥିଳ ଓ ମନ୍ଦ ହୋଇଯାଏ । ଉଦାହରଣ ସ୍ୱରୂପ, ଏକକ ସନ୍ତାନ ପରିବାରରେ ପିତାମାତା ଓ ପରିବାରର ଅନ୍ୟ ସଭ୍ୟମାନେ ଶିଶୁର ଅତ୍ୟଧିକ ଯତ୍ନ ନିଅନ୍ତି । ତାର ସମସ୍ତ କାର୍ଯ୍ୟ କରିଦିଅନ୍ତି । ଏପରିକି ୧୦।୧୨ ବର୍ଷ ପର୍ଯ୍ୟନ୍ତ ଗାଧୋଇ ଦିଅନ୍ତି, ଲୁଗାପଟା ପିନ୍ଧାଇ ମୁଣ୍ଡ କୁଣ୍ଡାଇ

ଉଠାଇନ୍ତି ଏବଂ ଖୁଆଇ ଦିଅନ୍ତି । ମାତ୍ର କେବେ କେମିତି ଦରକାର ହେଲେ ପିଲା ହାତରେ ଖାଇପାରେ ନାହିଁ ବା ନିଜେ ପରିଷ୍କାର କରି ଗାଧୋଇ ପାରେ ନାହିଁ । ଅଥଚ ଯେଉଁ ପରିବାରରେ ମାତା ବହୁ ସନ୍ତାନର ଜନନୀ ଓ ସର୍ବଦା କାର୍ଯ୍ୟବ୍ୟସ୍ତ, ସେଠାରେ ସାଧାରଣତଃ ଶିଶୁମାନେ ଅତ୍ୟନ୍ତ ଆତ୍ମନିର୍ଭରଶୀଳ ହୋଇଥାନ୍ତି । ନିଜର ସମସ୍ତ କାର୍ଯ୍ୟ ସ୍ୱୟଂରୂପେ ତୁଲାଇବା ସଙ୍ଗେ ସଙ୍ଗେ ପରିବାରକୁ ମଧ୍ୟ ବିଭିନ୍ନ କାର୍ଯ୍ୟରେ ସାହାଯ୍ୟ କରିବାର ଦେଖାଯାଇଥାଏ । ଏହି ପ୍ରକାରର ନାନା ଦୃଷ୍ଟାନ୍ତରୁ ଜଣାଯାଏ ଯେ, ଆବଶ୍ୟକତା ହେଉଛି ଶିକ୍ଷଣର କେନ୍ଦ୍ରବିନ୍ଦୁ । ଆବଶ୍ୟକତା ନଥିଲେ ଯଥାର୍ଥ ଓ ଇପ୍ସିତମ ଶିକ୍ଷଣ ସମ୍ଭବ ହୁଏ ନାହିଁ । ଶିକ୍ଷା କରିବାର ଅଭିପ୍ରେରଣା ବା ମନୋଭାବ ଆବଶ୍ୟକତା ଦ୍ୱାରା ପ୍ରବର୍ତ୍ତିତ ହୁଏ । ଅଭିପ୍ରେରଣା ଜାତ ନହେଲେ ଶିକ୍ଷଣ କଷ୍ଟକର ହୋଇପଡ଼େ । ଏହା ସହିତ କେଉଁ ପଦ୍ଧତିରେ ଶିକ୍ଷା ଦେଲେ ଶିଶୁ ତାହାକୁ ବିନା ଦ୍ୱିଧା, ବିନା କଷ୍ଟରେ ଗ୍ରହଣ କରିପାରିବ, ତାହା ପ୍ରତି ମଧ୍ୟ ଲକ୍ଷ୍ୟ ରଖିବାକୁ ହେବ । ମୋଟ ଉପରେ ଦେଖିବାକୁ ଗଲେ, ଶିଶୁ ହେଉ ବା ବୟସ୍କ ହେଉ, ସମସ୍ତଙ୍କ ପାଇଁ ଶିକ୍ଷଣର ମୂଳତତ୍ତ୍ୱ ପ୍ରାୟ ସମାନ । ତାନ୍ତ୍ରିକପେଶୀକ ପରିପକ୍ୱତା ପରେ ଅଭିପ୍ରେରଣା ଓ ପୂର୍ବର ଅଭିଜ୍ଞତା ଓ ଅନୁଭବରେ ପ୍ରଭେଦ ଏବଂ ଶିକ୍ଷଣ ପଦ୍ଧତିରେ ଭିନ୍ନତା ହେତୁ ଶିଶୁ ଓ ବୟସ୍କମାନଙ୍କର ଶିକ୍ଷଣ ବିଶେଷତଃ ସାମ୍ବେଦିକ ପ୍ରେରକ ଶିକ୍ଷଣରେ ତାରତମ୍ୟ ଲକ୍ଷ୍ୟ କରାଯାଏ ।

ଶିକ୍ଷଣଦ୍ୱାରା ଶିଶୁର ବିଭିନ୍ନ ଅନ୍ତର୍ନିହିତ ଶକ୍ତି ଜ୍ଞାନ ନାନାପ୍ରକାରର ଅଭ୍ୟାସ ଓ ବିଭିନ୍ନ ମନୋବୃତ୍ତି ତଥା କୁଶଳତାଗୁଡ଼ିକ ବିକାଶ ଲାଭ କରେ । ସେ ଶିକ୍ଷଣ ଯୋଗୁ କେତେକ ସାଧାରଣ କୌଶଳ ଜଟିଳ ଯାନ୍ତ୍ରିକ କ୍ରିୟା ଓ କେତେ ପ୍ରକାର ଜ୍ଞାନ ଶିକ୍ଷା କରେ । ତାହା ଛଡ଼ା ଶିକ୍ଷଣ ଦ୍ୱାରା ଶିଶୁ ତାର ପୂର୍ବର ସ୍ୱଭାବ, ମନୋବୃତ୍ତି ବା ମତକୁ ମଧ୍ୟ ପରିବର୍ତ୍ତିତ କରିଥାଏ । ଉଦାହରଣ ସ୍ୱରୂପ ଗୋଟିଏ ଶିଶୁ ଯେ କି ନିଆଁରେ ହାତ ପୂରାଇଲେ ପରିଣାମ କଣ ହୁଏ, ସେ ସମ୍ବନ୍ଧରେ ଅଜ୍ଞ, ଜଳନ୍ତା ନିଆଁର ଲେଲିହାନ ଶିଖାରେ ଆକୃଷ୍ଟ ହୋଇ ନିଆଁରେ ଅଙ୍ଗୁଳି ପୂରାଇଦେଲେ ତାକୁ ଭୀଷଣ କଷ୍ଟ ହୁଏ । ଭବିଷ୍ୟତରେ ଆଉ କେବେ ଜଳନ୍ତା ନିଆଁରେ ହାତ ପୂରାଇବାକୁ ସେ ମନ କରେ ନାହିଁ । ବରଂ ନିଆଁ ଦେଖିଲେ ସେଠାରୁ ଦୂରେଇଯାଏ । ଶିଶୁର ବ୍ୟବହାରରେ ଏହି ପ୍ରକାରର ପରିବର୍ତ୍ତନ ଶିକ୍ଷଣ ଯୋଗୁ ସମ୍ଭବ ହୋଇଥାଏ । ମୋଟ ଉପରେ ଦେଖିବାକୁ ଗଲେ ଶିକ୍ଷଣ ଯୋଗୁ ପୂର୍ବର ବ୍ୟବହାରରେ ପରିବର୍ତ୍ତନ ହୋଇପାରେ ବା ନୂତନ ବ୍ୟବହାର ବା ଲକ୍ଷଣର ସୂତ୍ରପାତ ହୋଇପାରେ ।

ଇନ୍ଦ୍ରିୟମାନଙ୍କର ଉପଯୋଜନ, ପରିପକ୍ୱତା, ନିଶାର ପ୍ରଭାବ ଓ କ୍ଳାନ୍ତି ଇତ୍ୟାଦି ଯୋଗୁଁ ବ୍ୟବହାରରେ ଯେଉଁ ପରିବର୍ତ୍ତନ ଲକ୍ଷ୍ୟ କରାଯାଏ, ତାହା ଶିକ୍ଷଣ ଯୋଗୁ ବ୍ୟବହାରରେ ଦେଖାଦେଇଥିବା ପରିବର୍ତ୍ତନଠାରୁ ପୃଥକ । ଶିକ୍ଷଣ ଯୋଗୁ ହୋଇଥିବା ପରିବର୍ତ୍ତନ ସ୍ଥାୟୀ ହୋଇଥିବା ସ୍ଥଳେ ଉପଯୁକ୍ତ କାରଣ ଯୋଗୁ ହୋଇଥିବା ପରିବର୍ତ୍ତନ ଅସ୍ଥାୟୀ ହୋଇଥାଏ ।

ଶିକ୍ଷଣ ପ୍ରକ୍ରିୟାରେ ଅଭ୍ୟାସ ଗଠନ ଏକ ପ୍ରଧାନ ଅଙ୍ଗ କହିଲେ ଅତ୍ୟୁକ୍ତି ହେବ ନାହିଁ । କୌଣସି କାର୍ଯ୍ୟ ପ୍ରଥମଥର ପାଇଁ ଶିକ୍ଷା କଲାବେଳେ ଏଥିପାଇଁ କିଛି ପରିମାଣରେ ଶକ୍ତି, ସମୟ ଓ ମନୋବଳ ତଥା ଧୈର୍ଯ୍ୟ ଆବଶ୍ୟକ କରେ । ଶିକ୍ଷଣ ସମ୍ବନ୍ଧୀୟ ବିଭିନ୍ନ ତଥ୍ୟ ଓ ଫଳାଫଳକୁ ଭିତ୍ତି କରି ଥର୍ଣ୍ଡାଇକ ଯେଉଁ କେତୋଟି ପ୍ରଧାନ ନୀତି ପ୍ରୟୋଗ କରିଅଛନ୍ତି ତା ମଧ୍ୟରେ ଅଭ୍ୟାସ ନୀତି ପ୍ରଧାନ । ଅନ୍ୟାନ୍ୟ ବ୍ୟବସ୍ଥା ଅପରିବର୍ତ୍ତିତ ରହି କୌଣସି ଉଦ୍ଦୀପକ ଓ ଅନୁକ୍ରିୟା ମଧ୍ୟରେ ବାରମ୍ବାର ସମ୍ବନ୍ଧ ସ୍ଥାପିତ ହେଲେ ଉଦ୍ଦୀପକ ସହିତ ଅନୁକ୍ରିୟାର ସମ୍ପର୍କ ଦୃଢ଼ତର ହୁଏ । ଏହା ଫଳରେ ଅଭ୍ୟାସ ଗଠନ ହୁଏ ଏବଂ କୌଣସି ଗୋଟିଏ କାର୍ଯ୍ୟ ବା କୌଶଳ ଶିକ୍ଷା କରିବା ସହଜ ଓ ସୁଗମ ହୁଏ । ଅନ୍ୟ ପକ୍ଷରେ ଦୀର୍ଘଦିନ ପାଇଁ ଉଦ୍ଦୀପକ ଏବଂ ଅନୁକ୍ରିୟା ମଧ୍ୟରେ କୌଣସି ସମ୍ବନ୍ଧ ସ୍ଥାପିତ ନ ହେଲେ ବା ଅଭ୍ୟାସର ଅଭାବ ହେଲେ କାଳକ୍ରମେ କୌଶଳ ଶିଥିଳ ବା ଦୁର୍ବଳ ହୋଇଯାଏ । ଅନ୍ୟ ଭାଷାରେ କହିବାକୁ ଗଲେ ଅଭ୍ୟାସଦ୍ୱାରା ଉଦ୍ଦୀପକ ଓ ପ୍ରତିକ୍ରିୟା ମଧ୍ୟରେ ସମ୍ବନ୍ଧ ସୁଦୃଢ଼ ହୁଏ ଏବଂ ଅଭ୍ୟାସ ନ ରଖିଲେ ସମ୍ବନ୍ଧ ଦୁର୍ବଳ ହୁଏ ଯଥା— ଟାଇପ୍ କରିବା, ସାଇକେଲ ଚଳାଇ ଶିଖିବା, ସିଲାଇ କରିବା ଇତ୍ୟାଦି ଅଭ୍ୟାସ ଉପରେ ନିର୍ଭର କରେ ।

ଯେକୌଣସି କାର୍ଯ୍ୟ ଶିକ୍ଷା କରିବା ପୂର୍ବରୁ ତାର ଉପଯୁକ୍ତ ଯୋଜନା ଓ ପରିକଳ୍ପନା କରିବା ଉଚିତ୍ ଏବଂ ଏହା କରିବା ପାଇଁ ପ୍ରତ୍ୟକ୍ଷ ଚେଷ୍ଟା କରିବାକୁ ପଡ଼ିବ । ଯେତେବେଳେ ଏକ ନିର୍ଦ୍ଦିଷ୍ଟ ଧରଣର ପ୍ରକ୍ରିୟା ବାରମ୍ବାର ଅର୍ଥାତ୍ ପୁନଃପୁନଃ କରାଯାଏ, ତାହା ଅଭ୍ୟାସରେ ପରିଣତ ହୋଇଯାଏ । ଅଭ୍ୟାସରେ ପରିଣତ ହୋଇଗଲେ କାର୍ଯ୍ୟଟି କମ୍ ସମୟ ଲାଗେ ଓ ସହଜରେ ସମ୍ପାଦନ ହୁଏ ; ଆଉ ବିଶେଷ ଚେଷ୍ଟା କରିବାକୁ ପଡ଼େ ନାହିଁ । ଅଭ୍ୟାସରେ ପଡ଼ିଗଲେ ବ୍ୟକ୍ତି କାର୍ଯ୍ୟଟି ଯନ୍ତ୍ରଚାଳିତ ପରି କରିଯାଏ । ପ୍ରଥମେ କାର୍ଯ୍ୟଟି ଶିକ୍ଷା କରିବା ପାଇଁ ଯେତିକି ଶକ୍ତି ଓ ସମୟ ଖର୍ଚ୍ଚ ହେଉଥିଲା, ବର୍ତ୍ତମାନ ତାଠାରୁ ଯଥେଷ୍ଟ କମ୍ ସମୟ ଖର୍ଚ୍ଚ ହୁଏ । ଉଦାହରଣସ୍ୱରୂପ, ପ୍ରଥମେ ଟାଇପ କରି ଶିଖିବା, ସାଇକେଲ ଚଢ଼ି ଶିଖିବା ବା ପହଁରିବା ପାଇଁ ଯେତିକି ସମୟ ଲାଗେ, ବା ଯେତେ କଷ୍ଟ କରିବାକୁ ପଡ଼େ, ଅଭ୍ୟାସ ହୋଇଗଲା ପରେ ତାଠୁ ଯଥେଷ୍ଟ କମ୍ ସମୟ ଲାଗେ ଏବଂ କାର୍ଯ୍ୟଟି ସହଜରେ ହୋଇଯାଏ, ଆଉ କଷ୍ଟସାଧ୍ୟ ମନେହୁଏ ନାହିଁ । ବିଶେଷତଃ ବିଭିନ୍ନ ପ୍ରକାର ସାମ୍ବେଦିକ ପ୍ରେରକ କ୍ରିୟାକଳାପଗୁଡ଼ିକ ଅଭ୍ୟାସ ଗଠନ ପରେ ଅତି ସହଜରେ ଓ ପୂର୍ବାପେକ୍ଷା କମ୍ ସମୟରେ କରିହୁଏ । ଅଭ୍ୟାସ ଗଠନ ହେଲେ କିପରି କମ୍ ସମୟ ଓ ସହଜରେ ବିଭିନ୍ନ କୁଶଳତା ଶିକ୍ଷା କରାଯାଇପାରିବ, ମନୋବିଜ୍ଞାନ ପରୀକ୍ଷାଗାରରେ ତାହା ଉପରେ ଗୋଟିଏ ସରଳ ପରୀକ୍ଷା କରାଯାଇଅଛି । ଯଥା —ଦର୍ପଣ ଚିତ୍ରଣ ପରୀକ୍ଷଣରେ ଦର୍ପଣରେ ତାରକା ଅଙ୍କିତ ଚିତ୍ରର ପ୍ରତିବିମ୍ବକୁ ଦେଖି ତାରକାର ଦୁଇଟି ଗାର ମଧ୍ୟବର୍ତ୍ତୀ ଜାଗାରେ ଅନ୍ୟ ଏକ ଗାର ଟାଣିବାକୁ ଶିକ୍ଷା କଲାବେଳେ, ପ୍ରଥମେ ଅନେକ ସମୟ ଲାଗେ ଓ ବହୁତ ପ୍ରମାଦ ହୁଏ । ଗାରଟି ମଧ୍ୟ ସିଧା ନହୋଇ ଅଙ୍କାବଙ୍କା ହୋଇଯାଏ କିନ୍ତୁ କିଛିଥର ଏହିପରି ଆଙ୍କିଲା ପରେ ଏବଂ ପ୍ରୟତ୍ନ ପରେ କ୍ରମେ ଗାର ଟାଣିବାକୁ ଅଳ୍ପ ସମୟ ଲାଗିବା ସଙ୍ଗେ ସଙ୍ଗେ ମୋଟେ ପ୍ରମାଦ ହୁଏ ନାହିଁ ।

ବିଭିନ୍ନ ଉଦାହରଣ ଓ ଅଭିଜ୍ଞତାରୁ ଜଣାଯାଏ ଯେ, କୌଣସି ବିଷୟ ଶିକ୍ଷା କଲା-ବେଳେ ପ୍ରାରମ୍ଭିକ ଅବସ୍ଥାରେ ଯେଉଁ ବାଧାବିଘ୍ନ ଓ ଅସୁବିଧା ଦେଖାଯାଏ, ତାକୁ ଦୂର କରିବାପାଇଁ ଯଦି ନିୟମିତ ଓ ଧାରାବାହିକ ଚେଷ୍ଟା କରାନଯାଏ, ଧୈର୍ଯ୍ୟ, ଦମ୍ଭ, ମନୋବଳ ଓ ଆତ୍ମବିଶ୍ୱାସ ସହିତ ଯଦି ଗୋଟିଏ କାର୍ଯ୍ୟରେ ଅଗ୍ରଗତି କରାନଯାଏ, ତେବେ ଅଭ୍ୟାସ ଗଠନ ହୋଇପାରେ ନାହିଁ ।

ଅଭ୍ୟାସ ଗଠନ ପରିପକ୍ୱତା ବିଭିନ୍ନ ଶିକ୍ଷଣ ପ୍ରଣାଳୀ ଉପରେ ନିର୍ଭର କରେ ।

## ଅଭ୍ୟାସ ଗଠନରେ ଶିକ୍ଷଣ ଓ ପରିପକ୍ୱତାର ଗୁରୁତ୍ୱ

ଶିକ୍ଷଣ ଓ ଅଭ୍ୟାସ ଗଠନ ସମ୍ବନ୍ଧରେ ଆଲୋଚନା କଲାବେଳେ ପରିପକ୍ୱତାର ପ୍ରଭାବକୁ ବାଦ ଦିଆଯାଇନପାରେ । ଗୁରୁଣ୍ଡିବା, ଠିଆହେବା, ଚାଲିବା, ଅସ୍ପୃଷ୍ଟ ଭାଷା, ଯଥା : ବାବା, ମା ମା ଉଚ୍ଚାରଣ କରିବା ଇତ୍ୟାଦି କ୍ରିୟାକଳାପଗୁଡ଼ିକ ଶିକ୍ଷଣ ଅପେକ୍ଷା ପରିପକ୍ୱତା ଉପରେ ଅଧିକ ନିର୍ଭର କରେ । ଯଦିବା କୌଣସି କ୍ଷେତ୍ରରେ ଏହି ପ୍ରକାରର କୁଶଳତା କିଛି ପରିମାଣରେ ଶିକ୍ଷଣଦ୍ୱାରା ତ୍ୱରାନ୍ୱିତ ହୋଇଥାଏ, ତେବେ ଏହା ସ୍ୱଳ୍ପସ୍ଥ ଅଟେ । କୌଣସି ନିର୍ଦ୍ଦିଷ୍ଟ ପ୍ରକାରର ପ୍ରଶିକ୍ଷଣ ପରିବର୍ତ୍ତେ ଏହି ପ୍ରକାରର ଶିକ୍ଷଣ କୌଶଳ ଶିଶୁର ସ୍ୱତଃପ୍ରବୃତ୍ତ କ୍ରିୟାକଳାପ ଦ୍ୱାରା ସମ୍ଭବ ହୋଇଥାଏ ।

ଅନ୍ୟ ପକ୍ଷରେ ଭାଷା ବିକାଶ, ଲେଖିବା, ଚାଲିବାର ଢଙ୍ଗ, ବିଭିନ୍ନ ପ୍ରକାରର ସାମ୍ବେଦିକ ପ୍ରେରକ, କ୍ରିୟାକଳାପ, ପୋଷାକରେ ବୋତାମ ଲଗାଇବା, ବେଶଭୂଷା ହେବା, ଖାଦ୍ୟ ଖାଇବା ଶୈଳୀ ଇତ୍ୟାଦି ଅନୁକରଣଦ୍ୱାରା ସମ୍ଭବ ହୋଇଥାଏ । ଏହା ସ୍ୱତନ୍ତ୍ର ଧରଣର ପ୍ରଶିକ୍ଷଣ ଉପରେ ନିର୍ଭର କରେ ।

ବିଭିନ୍ନ କୌଶଳ ଅର୍ଜନ କରିବାରେ ଏବଂ କେତେକ ନିର୍ଦ୍ଦିଷ୍ଟ ଧରଣର ଅଭ୍ୟାସ ଗଠନରେ ଶିକ୍ଷଣ ସହିତ ପରିପକ୍ୱତା ମଧ୍ୟ ସାହାଯ୍ୟ କରେ । ଏହା ସ୍ପଷ୍ଟ ମନେରଖିବାକୁ ହେବ ଯେ, ଶିକ୍ଷଣ ଓ ପରିପକ୍ୱତା ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ଏବଂ ଏହି ଦୁଇ ପ୍ରକ୍ରିୟା କାନ୍ଧକୁ କାନ୍ଧ ମିଳାଇ ଗତି କରନ୍ତି । ବିଶେଷ କରି ପ୍ରାରମ୍ଭିକ ବାଲ୍ୟାବସ୍ଥାରେ ଶିଶୁର ତାନ୍ତ୍ରିକ ପେଶୀକ ସଂସ୍ଥା ଦ୍ରୁତଗତିରେ ବିକାଶ ଲାଭ କରୁଥିବା ବେଳେ ଶିଶୁର ଶିକ୍ଷଣକୁ ବହୁ ପ୍ରକାର ଉପାଦାନ ପ୍ରଭାବିତ ଓ ଉତ୍ସାହିତ କରନ୍ତି । ଏହି ଅବସ୍ଥାରେ ଶିକ୍ଷଣ ଓ ପରି-ପକ୍ୱତାର ସମ୍ପର୍କ ବିଶେଷ ଗୁରୁତ୍ୱପୂର୍ଣ୍ଣ ମନେହୁଏ । କିନ୍ତୁ ବୟସ ଗଡ଼ିଲେ ପରିପକ୍ୱତାର ଗୁରୁତ୍ୱ କ୍ରମେ ହ୍ରାସ ପାଏ । ଷ୍ଟ୍ରେଜର (୧୯୩୦)ଙ୍କର ଭାଷା ବିକାଶ, ମ୍ୟାଗ (୧୯୩୫) ଙ୍କର କେତେକ ପ୍ରକାରର କ୍ରିୟାକଳାପ, ମିଚର୍ଲ (୧୯୩୫)ଙ୍କର ଡେଇଁବା, ଲକ୍ଷ୍ୟ ନିରୂପଣ କରିବା ଉପରେ ଅଧ୍ୟୟନମାନଙ୍କରୁ ଅଳ୍ପ ବୟସରେ ପରିପକ୍ୱତାର ଶକ୍ତିଶାଳୀ ପ୍ରଭାବର ସୂଚନା ମିଳିଅଛି । ଶିକ୍ଷଣ ଓ ପରିପକ୍ୱତାର ସମ୍ପର୍କ ଉପରେ ହୋଇଥିବା ବହୁ ଗବେଷଣାରୁ ଜଣାଯାଏ ଯେ, ନିର୍ଦ୍ଦିଷ୍ଟ ପର୍ଯ୍ୟାୟରେ କେତେକ ନିର୍ଦ୍ଦିଷ୍ଟ ଓ ସ୍ୱତନ୍ତ୍ର ପ୍ରକାରର କାର୍ଯ୍ୟକଳାପ ତଥା ମାନସିକ ବିକାଶ ପାଇଁ ଶିକ୍ଷଣର ପ୍ରଭାବ ଅପରିହାର୍ଯ୍ୟ । ଶିକ୍ଷଣ ଓ ପ୍ରଶିକ୍ଷଣ ବିନା ବିଭିନ୍ନ ସାମ୍ବେଦିକ ପ୍ରେରକ କ୍ରିୟାକଳାପ ସମ୍ଭବ ହୁଏ ନାହିଁ । ଶିଶୁ ଯଥେଷ୍ଟ ପରିପକ୍ୱ

ହୋଇଥିଲେ ଶିକ୍ଷଣର ସମୟ ହ୍ରାସ ପାଏ । ଉଦାହରଣ ସ୍ୱରୂପ ଗୋଟିଏ ୨।୩ ବର୍ଷର ପିଲାକୁ ପଣିକିଆ ଶିଖାଇଲେ, ତାକୁ ଗୋଟିଏ ପଣିକିଆ ଶିଖିବାକୁ ଯେତିକି ସମୟ ଲାଗିବ, ଗୋଟିଏ ୫।୬ ବର୍ଷର ପିଲାକୁ ଏହି ପଣିକିଆ ଶିକ୍ଷା କରିବାକୁ ତାଠାରୁ ଯଥେଷ୍ଟ କମ୍ ସମୟ ଲାଗିବ । କାରଣ ପ୍ରଥମ ଶିଶୁର ମସ୍ତିଷ୍କ ଯଥେଷ୍ଟ ପରିପକ୍ୱ ହୋଇନଥିବା ସ୍ଥଳେ ଦ୍ୱିତୀୟ ଶିଶୁର ମସ୍ତିଷ୍କ ଅପେକ୍ଷାକୃତ ଅଧିକ ପରିପକ୍ୱ ହୋଇଥାଏ ।

ପ୍ରତ୍ୟେକ ବିଷୟ ଶିକ୍ଷା କରିବାପାଇଁ ଏକ ନିର୍ଦ୍ଦିଷ୍ଟ କାଳ ବା ପର୍ଯ୍ୟାୟ ଥାଏ ଏବଂ ଏହି ସମୟରେ ଶିକ୍ଷଣ ପାଇଁ ଶିଶୁର ମାନସିକ ପ୍ରସ୍ତୁତି ଓ ଆଗ୍ରହ ଥାଏ । କିନ୍ତୁ ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ବା ପରେ ଶିକ୍ଷଣ ପାଇଁ ସୁବିଧା ଦେଲେ ବା ଶିଶୁକୁ ଉତ୍ସାହିତ କଲେ ଶିକ୍ଷଣର ମୂଲ୍ୟ କମିଯାଏ ଓ ଶିଶୁର ଜନ୍ମଜାତ ଶକ୍ତି ଓ ସମ୍ଭାବ୍ୟର ଉପଯୁକ୍ତ ବିନିଯୋଗ ହୋଇପାରେ ନାହିଁ । ପରସ୍ରାକୁ ନିୟନ୍ତ୍ରଣ କରିବାକୁ ଶିଶୁମାନଙ୍କୁ ଦ୍ୱିତୀୟ ବର୍ଷର ଶେଷ ପର୍ଯ୍ୟାୟ ବେଳକୁ ଶିକ୍ଷା ଦିଆଗଲେ ଉତ୍ତମ ଫଳ ମିଳେ ବୋଲି ମାକ୍ ଗ୍ର (୧୯୪୦) ମତ ଦେଇଛନ୍ତି । ଓ୍ୱାସବର୍ଣ୍ଣ (୧୯୨୮) କହନ୍ତି ଯେ ଅଙ୍କ କଷିବାର ବିଭିନ୍ନ ପ୍ରଣାଳୀ ଅଳ୍ପ ବୟସରୁ ଶିଶୁକୁ ଶିକ୍ଷା ଦେଲେ ମସ୍ତିଷ୍କର ଉପଯୁକ୍ତ ପରିପକ୍ୱତା ହୋଇନଥିବାରୁ ସେ ଅଙ୍କ ଭଲ ଭାବରେ ବୁଝି ପାରେ ନାହିଁ । ଶିଶୁର ଶିକ୍ଷଣ ତାର ଜନ୍ମଜାତ ଯୋଗ୍ୟତା, ପାରିପାର୍ଶ୍ୱିକ ଅବସ୍ଥାର ପ୍ରଭାବ ଓ ରୁଚି ଉପରେ ନିର୍ଭର କରେ । ପ୍ରୟୋଗାତ୍ମକ ଅଧ୍ୟୟନରୁ ଅନୁମିତ ହୁଏ ଯେ, ଅଭ୍ୟାସକୁ ଯଦି ପରିପକ୍ୱତାର ସ୍ତର ସହିତ ସମ୍ବନ୍ଧିତ କରିଦିଆଯାଏ ତେବେ ଅଧିକ ଲାଭଦାୟକ ଫଳ ମିଳିଥାଏ । ହିଲଗାର୍ଡ, ମାକ୍‌ଗ୍ର ଓ ଷ୍ଟ୍ରେନରଙ୍କ ମତରେ ଶିକ୍ଷଣ ଶାରୀରିକ ତଥା ମାନସିକ ପରିପକ୍ୱତା ଉପରେ ନିର୍ଭର କରେ ।

## ଅଭ୍ୟାସ ଗଠନରେ ସାମ୍ବେଦିକ ପ୍ରେରକ କୌଶଳ ଶିକ୍ଷାର ଭୂମିକା

ଶିଶୁ ଯେତେବେଳେ ଚାଲିବାକୁ, କଥା କହିବାକୁ ଆରମ୍ଭ କରେ ତାର ଏପରି ଶିକ୍ଷଣର ଆବଶ୍ୟକତା ହୁଏ, ଯାହାଦ୍ୱାରା କି ସେ ତାର ସାମାଜିକ ପରିବେଶର ଉପଯୁକ୍ତ ବ୍ୟବହାର କରିପାରେ । ଏହି ସାମାଜିକ ଯୋଗ୍ୟତା ଦୈହିକ ଅନୁବଂଶତା ଅପେକ୍ଷା, ପରିବେଶ ଦ୍ୱାରା ଅଧିକ ପ୍ରଭାବିତ ହୁଏ । ପରିବେଷ୍ଟନୀର ଆବଶ୍ୟକତା ଓ ଦାବୀକୁ ମେଣ୍ଟାଇବା ପାଇଁ ତଥା ନିଜର ବିଭିନ୍ନ ପ୍ରକାରର ଆବଶ୍ୟକତା ପୂରଣ କରିବା ପାଇଁ ଶିଶୁକୁ ବିଭିନ୍ନ କ୍ରିୟାକଳାପ ଓ କୁଶଳତା ଶିକ୍ଷା କରିବାକୁ ପଡ଼େ । ବିଶେଷକରି ବସିବା, ଠିଆହେବା ଇତ୍ୟାଦି କାର୍ଯ୍ୟରେ ସହାୟତା କରୁଥିବା ଶରୀରର ବଡ଼ ବଡ଼ ମାଂସପେଶୀ ପୂର୍ଣ୍ଣ ଭାବରେ ଗଠିତ ହୋଇଗଲା ପରେ ଏବଂ ସେମାନଙ୍କ ମଧ୍ୟରେ ସମନ୍ୱୟ ସ୍ଥାପିତ ହୋଇଗଲା ପରେ ଶିଶୁ ବିଭିନ୍ନ ସାମ୍ବେଦିକ ପ୍ରେରକ କ୍ରିୟାକଳାପ ଓ ଭିନ୍ନ ପ୍ରକାରର କୁଶଳତା ଶିକ୍ଷା କରିବାକୁ ସମର୍ଥ ହୁଏ । ବିଭିନ୍ନ ଅଭ୍ୟାସ ଓ ନାନାପ୍ରକାର କୁଶଳତା ଶିକ୍ଷା କରିବା ଦ୍ୱାରା ଶିଶୁର ଉପଯୁକ୍ତ ଉପଯୋଜନ ସମ୍ଭବ ହୋଇଥାଏ । ୪।୫ ବର୍ଷର ଶିଶୁ ଯଦି ଚାମଚରେ ଖାଇନପାରେ ବା ୧।୨ ବର୍ଷର ଶିଶୁ ଗ୍ଲାସରେ ପାଣି ପିଇବାକୁ ସକ୍ଷମ ନ ହୁଏ, ସେ ଅନ୍ୟମାନଙ୍କଦ୍ୱାରା ତିରସ୍କୃତ ହୁଏ ଏବଂ ତାର ନ୍ୟୂନ ଭାବ ଜାତ ହୁଏ ।

ପ୍ରାଣୀମାନଙ୍କ ଉପରେ ଥର୍ଣ୍ଣଡାଇକ (୧୮୯୮) ଓ ସ୍ମଲ (୧୮୯୯)ଙ୍କର ପରୀକ୍ଷା ପରେ ଶିଶୁମାନଙ୍କର ପ୍ରେରକ କୌଶଳ ଶିକ୍ଷା ଉପରେ ଅନେକ ଗବେଷଣା କରାଯାଇଛି । ବିଭିନ୍ନ ସାମ୍ବେଦନ ପ୍ରେରକ କ୍ରିୟାକଳାପ ଅଭ୍ୟାସ ଓ ପ୍ରଯତ୍ନ ପ୍ରମାଦ କ୍ରିୟାକଳାପଦ୍ୱାରା ଗଠନ କରାଯାଇଥାଏ । କୁଶଳତାର ବିକାଶର ପ୍ରାରମ୍ଭିକ ସ୍ଥିତିରେ କ୍ରିୟାକଳାପ ଅସମନ୍ୱିତ ଅବସ୍ଥାରେ ଥାଏ । ବହୁତ ପ୍ରକାର ଶାରୀରିକ କ୍ରିୟା ବ୍ୟର୍ଥ ହୁଏ । କାରଣ ଏହା ସେପର୍ଯ୍ୟନ୍ତ ଏକୀକରଣ ହୋଇପାରିନଥାଏ । ଏହି ପ୍ରକାର ଶାରୀରିକ କ୍ରିୟାରେ ଶିଶୁର ଅଧିକ ଶକ୍ତି ଖର୍ଚ୍ଚ ହୁଏ । କିନ୍ତୁ ବାରମ୍ବାର ଅଭ୍ୟାସ କରିବା ଯୋଗୁ କୁଶଳତା-ମାନଙ୍କର ଉନ୍ନତି ହୁଏ ଏବଂ ବିଭିନ୍ନ ଅଭ୍ୟାସ ଗଠିତ ହୋଇଯାଏ । ଏହି ଅଭ୍ୟାସଗୁଡ଼ିକ ସଙ୍ଗଠିତ ସମନ୍ୱିତ ତଥା ଅନେକ କ୍ଷେତ୍ରରେ ରୂପାନ୍ତରିତ ମଧ୍ୟ ହୋଇଥାଏ । ପ୍ରମାଦ ଓ ବ୍ୟର୍ଥଗତି କମିଯାଏ । କ୍ରମେ କ୍ରମେ କାର୍ଯ୍ୟଟି ସମ୍ପାଦନ କରିବାପାଇଁ କମ୍ ସମୟ ମଧ୍ୟ ଲାଗେ । ବେଗ ଓ ଶୁଦ୍ଧତାରେ ଉନ୍ନତି ହୁଏ ଏବଂ କ୍ଳାନ୍ତି ହ୍ରାସ ପାଏ । ଶିଶୁ ବିଭିନ୍ନ କୁଶଳତା ଓ ଅଭ୍ୟାସ ଗଠନ କରି ସାରିବା ପରେ ତାର ନିଜର ଶକ୍ତି ଉପରେ ବିଶ୍ୱାସ ବଢ଼ିଯାଏ ଏବଂ ସେ ଆତ୍ମସନ୍ତୋଷ ଲାଭ କରେ । କିନ୍ତୁ ଯାହା ପୂର୍ବରୁ କୁହାଯାଇଛି ଯେ ଅଭ୍ୟାସ ଗଠନରେ ଯେପରି ଉଚିତ ସମୟରେ କରାଯାଏ, ସେଥିପ୍ରତି ଦୃଷ୍ଟିଦେବା ନିତାନ୍ତ ଆବଶ୍ୟକ । ପରିପକ୍ୱତା ଯୋଗୁ ସାମ୍ବେଦନ ପ୍ରେରକ କ୍ରିୟାକଳାପରେ ଶୀଘ୍ର କୁଶଳତା ଲାଭ କରାଯାଏ । ଏହା ମଧ୍ୟ ନିଶ୍ଚିତତାର ଉନ୍ନତିରେ ସହାୟକ ହୁଏ । ବାଲ୍ୟ ଅବସ୍ଥାର ପ୍ରାରମ୍ଭିକ ସ୍ଥିତିରେ ସାମ୍ବେଦନ ପ୍ରେରକ କ୍ରିୟାକଳାପର ବେଗ ଅଧିକ ହୁଏ ଏବଂ କିଶୋରାବସ୍ଥା ଆରମ୍ଭ ହେବାକ୍ଷଣି କ୍ରମେ କ୍ରମେ ଏହା ହ୍ରାସ ପାଏ । ମୋଟଉପରେ ସାମ୍ବେଦନ ପ୍ରେରକ କ୍ରିୟାକଳାପ ଓ ବିଭିନ୍ନ କୁଶଳତାରେ ୧୩।୧୪ ବର୍ଷ ପର୍ଯ୍ୟନ୍ତ ଉନ୍ନତି ହୁଏ, ଏବଂ ପୁନଶ୍ଚ ଏଥିରେ ମଧ୍ୟ ନାନା ଅସୁବିଧା ଓ ବାଧାବିଘ୍ନ ଦେଖାଯାଏ । କେତେ-ଗୁଡ଼ିଏ କୁଶଳତା ଶିକ୍ଷାକରିବାପାଇଁ ହାତ ଆଙ୍ଗୁଠି ଓ ଗୋଡ଼ ପ୍ରଭୃତିକୁ ସ୍ଥିର ରଖାଯାଇ ଶିକ୍ଷା କରିବାକୁ ପଡ଼ିଥାଏ । ଏପରି କ୍ଷେତ୍ରରେ ଶିଶୁପକ୍ଷରେ କାର୍ଯ୍ୟଟି ଶିକ୍ଷା କରିବାପାଇଁ ଯଥେଷ୍ଟ ଧୈର୍ଯ୍ୟ ଆବଶ୍ୟକ ହୁଏ, ଯାହାକି ପ୍ରାରମ୍ଭରେ କଷ୍ଟକର ହୋଇଥାଏ । କିନ୍ତୁ ଆୟୁଷ ବଢ଼ିବା ସଙ୍ଗେ ସଙ୍ଗେ Steadiness ବୃଦ୍ଧି ଲାଭ କରେ । ଶାରୀରିକ ବିକାଶ ଓ ପରିପକ୍ୱତା ସହିତ କୁଶଳତାର ଶକ୍ତି ମଧ୍ୟ ବୃଦ୍ଧି ପାଏ । କିଶୋରାବସ୍ଥାରେ ମାଂସପେଶୀ-ଗୁଡ଼ିକ ଶୀଘ୍ର ଶୀଘ୍ର ବୃଦ୍ଧିଲାଭ କରୁଥିବାରୁ ଏହି ଅବସ୍ଥାରେ ବିଭିନ୍ନ କୁଶଳତାଗୁଡ଼ିକର ବିକାଶ କ୍ଷିପ୍ରଗତିରେ ହୁଏ ।

## କୁଶଳତା ଶିକ୍ଷାରେ ଅଭ୍ୟାସର ଭୂମିକା

ବିଭିନ୍ନ ପ୍ରକାର କୁଶଳତାର ବିକାଶ ପାଇଁ ଅଭ୍ୟାସ ଗଠନର ଆବଶ୍ୟକତା ସହିତ ଉତ୍ସାହ ଓ ପ୍ରୋତ୍ସାହନ ତଥା ଅଭିପ୍ରେରଣର ମଧ୍ୟ ଆବଶ୍ୟକତା ରହିଛି । ଅଭ୍ୟାସ ଗଠନରେ ଯଦି କୌଣସି ବାଧା ଜାତ ହୁଏ ତେବେ ଏହାକୁ ଦୂରକରିବା ଉଚିତ ଏବଂ ଅଭ୍ୟାସ ଗଠନ କରିବାକୁ ଯଥେଷ୍ଟ ପ୍ରେରଣା ଓ ପ୍ରଶଂସା ଯୋଗାଇବା ଆବଶ୍ୟକ । ଏପରି

ହେଲେ ଶିଶୁକୁ କାର୍ଯ୍ୟରେ ଆନନ୍ଦ ଓ ସନ୍ତୋଷ ମିଳିବ । ଶିଶୁ କୌଣସି ନୂତନ ଅଭ୍ୟାସ କରିବାକୁ ଆରମ୍ଭ କଲେ ବା କୌଣସି ନୂତନ କୌଶଳ ଶିକ୍ଷାକଲେ, ଯଥା : ଗୋଟିଏ ଗୋଡ଼ରେ ଚାଲିବାକୁ ଆରମ୍ଭ କଲେ ବା କଥା କହିବାକୁ ଅଭ୍ୟାସ କଲେ ତାକୁ ଏହି ଅଭ୍ୟାସ ଗଠନ ଦିଗରେ ଆଗେଇ ଯିବା ପାଇଁ ଉତ୍ସାହିତ କରିବାପାଇଁ ସମସ୍ତ ସୁବିଧା ସୁଯୋଗ ଦେବା ପ୍ରୟୋଜନ । କିନ୍ତୁ ଅଭ୍ୟାସ ଗଠନରେ ପ୍ରତିବନ୍ଧକ ସୃଷ୍ଟି କଲେ ନୂତନ କୁଶଳତା ଶିଖିବାରେ ବାଧା ଜାତ ହୁଏ ।

## ସାମ୍ବେଦକ ପ୍ରେରକ କ୍ରିୟାକଳାପ ଓ ବିଭିନ୍ନ କୁଶଳତା ଶିକ୍ଷା କରିବାରେ ବିଭିନ୍ନ ଉପାଦାନମାନଙ୍କର ପ୍ରଭାବ

**ବୟସ**—ସାମ୍ବେଦକ ପ୍ରେରକ କୁଶଳତା ଶିକ୍ଷା କରିବାରେ ପରିପକ୍ୱତା ଓ ଶିକ୍ଷଣରେ ଆପେକ୍ଷିକ ପ୍ରଭାବ ଉପରେ ଅଧ୍ୟୟନ କରି ଜଣାଯାଇଛି ଯେ ପ୍ରାରମ୍ଭିକ ବୟସରେ ସହଜ ଓ ସରଳ କୁଶଳତା ଶିକ୍ଷାକରିବା ଅଭ୍ୟାସକୁ ଉତ୍ତମ ପରିପକ୍ୱତା ଅଧିକ ଫଳପ୍ରଦ କରିଥାଏ । ବୟସ୍କ ଶିଶୁମାନେ ସେମାନଙ୍କର ଅପେକ୍ଷାକୃତ ଉତ୍ତମ ପରିପକ୍ୱତା, ଅଧିକ ଅଭିଜ୍ଞତା ଓ ଉଦ୍ଦେଶ୍ୟ ପାଇଁ ବିଭିନ୍ନ କୁଶଳତା ଓ ଅଭ୍ୟାସ ପ୍ରଦର୍ଶନ କରିବାରେ ଅଧିକ କୃତିତ୍ୱ ପ୍ରଦର୍ଶନ କରନ୍ତି । ବିଭିନ୍ନ ବୟସରେ ପୈଶିକ ବିକାଶ ଉପରେ ଅଧ୍ୟୟନ କରି ଜଣାଯାଇଛି ଯେ, ଏକ ସାଧାରଣ ବାଳକଠାରେ ଅଳ୍ପରୁ ଭିନ୍ନ ଭିନ୍ନ ସ୍ତରରେ ବିଭିନ୍ନ ପ୍ରକାରର ହସ୍ତକୁଶଳତା ଦେଖିବାକୁ ମିଳେ ।

**ଲିଙ୍ଗ**—ବିଭିନ୍ନ ଅଧ୍ୟୟନ ଯୋରସ୍ (୧୯୨୨), ମାକ୍‌ଗିଶସ୍ (୧୯୨୯), ଇଗ୍‌ଲର (୧୯୩୨)ଙ୍କର ଫଳାଫଳରୁ ଜଣାଯାଏ ଯେ, ସରଳ ସାମ୍ବେଦନ ପ୍ରେରକ କ୍ରିୟାକଳାପରେ ଲିଙ୍ଗର କୌଣସି ନିର୍ଦ୍ଦିଷ୍ଟ ପ୍ରଭାବ ଲକ୍ଷ୍ୟ କରାଯାଏନାହିଁ । ଯଦିଓ ପ୍ରାରମ୍ଭିକ ପର୍ଯ୍ୟାୟରେ ବାଳକମାନେ ବାଳିକାମାନଙ୍କ ଅପେକ୍ଷା କେତେକ କ୍ଷେତ୍ରରେ ଅଧିକ କୃତିତ୍ୱ ହାସଲ କରିଥାନ୍ତି, ମୋଟ ଉପରେ କୌଣସି ପାର୍ଥକ୍ୟ ଲକ୍ଷ୍ୟ କରାଯାଏ ନାହିଁ । କ୍ଲିଣ୍ଟନ (୧୯୩୦)ଙ୍କ ଦର୍ପଣଚିତ୍ରଣ ଅଧ୍ୟୟନରେ କମ୍ ବୟସର ବାଳିକାମାନେ ବାଳକମାନଙ୍କ ଅପେକ୍ଷା ନିମ୍ନ ଧରଣର କୁଶଳତା ଦେଖାଇଥିଲେ ମଧ୍ୟ ଅଧିକ ବୟସରେ ସେମାନେ ବାଳକମାନଙ୍କୁ ଏହି କୁଶଳତାରେ ଟପିଯାଇଥିଲେ । ବାଳକମାନଙ୍କ ଅପେକ୍ଷା ବାଳିକାମାନଙ୍କର ଶିଖନରେଖ (Learning Curve) ଅଧିକ ନିୟମିତ ହୋଇଥିଲା ।

ମୋଟାମୋଟି ଦେଖିବାକୁ ଗଲେ ବାଳକ ଓ ବାଳିକାମାନଙ୍କୁ ସମାନ ପ୍ରକାରର ବାତାବରଣ ମଧ୍ୟରେ ଏକପ୍ରକାରର ଶିକ୍ଷଣ ଦିଆଗଲେ ଲିଙ୍ଗଭେଦ ଅତ୍ୟନ୍ତ କମ୍ ଦେଖା-ଯାଏ । କିନ୍ତୁ ସାଂସ୍କୃତିକ ପ୍ରଭାବ ହେତୁ ଦୁହିଁଙ୍କର କୁଶଳତା ଶିକ୍ଷା କରିବାରେ ପ୍ରଭେଦ ପରବର୍ତ୍ତୀ ବୟସମାନଙ୍କରେ ଲକ୍ଷ୍ୟ କରାଯାଇଥାଏ । ଯେପରିକି ଖେଳରେ - ଯେଉଁପ୍ରକାର ଖେଳରେ ଶରୀରର ବୃହତ୍ତ୍ର ମାଂସପେଶୀ ବ୍ୟବହାରର ଅଧିକ ଆବଶ୍ୟକତା ଥାଏ, ସେପରି

ଖେଳରେ ଭାଗ ନେବାପାଇଁ ବାଳିକାମାନଙ୍କୁ ପ୍ରାୟ ଅନୁମତି ଦିଆଯାଏ ନାହିଁ । ଯଥା— ଫୁଟବଲ, ହକି, କ୍ରିକେଟ୍, ଭଲି, ଲନ୍‌ଟେନିସ୍ ଇତ୍ୟାଦି । ସାଧାରଣତଃ ବାଳିକାମାନଙ୍କୁ ଅଧିକତର ଘରେଇ ଖେଳ ଖେଳିବାକୁ ଦିଆଯାଏ । ଏହି କାରଣରୁ ବାଳିକାମାନେ ସୂକ୍ଷ୍ମ କାର୍ଯ୍ୟରେ ଅଧିକ ସଫଳତା ହାସଲ କରନ୍ତି । ଅନ୍ୟପକ୍ଷରେ ଯେଉଁ କାର୍ଯ୍ୟରେ ଶକ୍ତି ଓ ଗତିର ପରାକାଷ୍ଠା ଦେଖାଇବାକୁ ପଡ଼େ, ବାଳକମାନେ ସେହିପରି କୁଶଳତାରେ ସାଧାରଣତଃ ଅଧିକ ସଫଳତା ହାସଲ କରନ୍ତି । ଯଥା : ଗଛଚଢ଼ିବା, ପହଁରିବା, ଦୌଡ଼ିବା, କସରତ କରିବା ଇତ୍ୟାଦି କାର୍ଯ୍ୟ ।

## ପାରିପାର୍ଶ୍ୱିକ ଅବସ୍ଥା

ପେଶିକ ଏକୀକରଣ ପରେ ଶିଶୁଠାରେ ଭିନ୍ନ ଭିନ୍ନ ପ୍ରକାରର କୁଶଳତା ଲକ୍ଷ୍ୟ କରାଯାଏ । ଏଥିରେ ବ୍ୟକ୍ତିଗତ ଭିନ୍ନତା ମଧ୍ୟ ଦେଖାଯାଏ । ଗୋଟିଏ ଶିଶୁ ଯେଉଁପ୍ରକାରର କୁଶଳତା ଶିକ୍ଷା କରିବ, ତାହା ତାର ପରିବେଷ୍ଟନୀ ଉପରେ ନିର୍ଭର କରେ । ଏଥିସହିତ ତାକୁ କିପରି ସୁବିଧା ସୁଯୋଗ ମିଳୁଛି, ତାହା ମଧ୍ୟ ବିଚାର କରିବାର କଥା । ଯଥା— ମଫସଲ ବାଳକମାନେ ଗଛ ଉପରେ ଚଢ଼ିବା, ନଈ ପହଁରିବା, ଅନ୍ଧାରରାତିରେ ଜଙ୍ଗଲରେ ନିର୍ଭୟରେ ଯିବାଆସିବା କରିବା ଓ ଡୁଡୁ, କିତକିତ, ବାଗୁଡ଼ି ପ୍ରଭୃତି ଖେଳରେ ସଫଳତା ହାସଲ କରିବା ସ୍ଥଳେ, ସହରର ବାଳକମାନେ ଏପରି କୁଶଳତା ଶିଖିପାରନ୍ତି ନାହିଁ । କାରଣ ସେମାନଙ୍କୁ ଏସବୁ କୁଶଳତା ଶିକ୍ଷା କରିବାକୁ ସୁବିଧା ଓ ସୁଯୋଗ ମିଳେନାହିଁ ।

ବୁଦ୍ଧି—ବିଭିନ୍ନ ଅଧ୍ୟୟନ ରଚ୍ (୧୯୩୫) ଓ ପର୍ଯ୍ୟବେକ୍ଷଣରୁ ଜଣାଯାଏ ଯେ, ଅନ୍ତତଃ ପ୍ରାରମ୍ଭିକ ବୟସରେ ଧୀଶକ୍ତି ସହିତ ସାମ୍ବେଦିକ ପ୍ରେରକ ଓ କ୍ରିୟାକଳାପ ଶିକ୍ଷାର କୌଣସି ସମ୍ପର୍କ ନାହିଁ । Maze ଶିକ୍ଷଣ ଛଡ଼ା ଅନ୍ୟପ୍ରକାରର ସାମ୍ବେଦିକ ପ୍ରେରକ ଶିକ୍ଷଣରେ ଧୀଶକ୍ତିର ପ୍ରଭାବ ଅତି ଅଳ୍ପ ବା ମୋଟେ ନଥିବାର ଜଣାଯାଏ । (Good Enough and Brain 1929)

ପୁରସ୍କାର—ଫ୍ଲୁଗାଲ (୧୯୨୮), ରେସ୍ (୧୯୩୨), ଆଣ୍ଡରସନ ଏବଂ ସ୍ମିଟ୍ (୧୯୩୩) ଇତ୍ୟାଦିଙ୍କ ଅଧ୍ୟୟନରୁ ଜଣାଯାଏ ଯେ, ଭୌତିକ ଓ ବାଚନିକ ପୁରସ୍କାର ସାମ୍ବେଦିକ ପ୍ରେରକ ଶିକ୍ଷକୁ ତ୍ୱରାନ୍ୱିତ କରିବାରେ ଯଥେଷ୍ଟ ସାହାଯ୍ୟ କରେ । ଯଦି କେତେକ କ୍ଷେତ୍ରରେ ସାମ୍ବେଦିକ ପ୍ରେରକ ଶିକ୍ଷଣ ପୁରସ୍କାରର ବିନା ସାହାଯ୍ୟରେ ସମ୍ଭବ ହୋଇଥାଏ, ତେବେ ଏହା କାର୍ଯ୍ୟରେ ଆଗ୍ରହ ଯୋଗୁଁ ବା ସମ୍ପରୀକ୍ଷା ଶେଷକରି ଶୀଘ୍ର ଘରକୁ ପ୍ରତ୍ୟାବର୍ତ୍ତନ କରିବାପାଇଁ ଅଥବା ସମ୍ପରୀକ୍ଷକଙ୍କୁ ଖୁସି କରାଇବା ପାଇଁ ବା ଅନ୍ୟମାନଙ୍କୁ ତୁଳନାରେ ଭଲ କରିବା ପାଇଁ ସମ୍ଭବ ହୋଇପାରିଥାଏ ।

## ଅଭ୍ୟାସ ଗଠନରେ ପ୍ରସୀମନ ବା ସାପେକ୍ଷ
## ଶିକ୍ଷଣ ପ୍ରଣାଳୀର ଭୂମିକା

ଆଇ. ଭି. ପାଭଲୋଭଙ୍କର ପ୍ରସୀମନ ପ୍ରଣାଳୀ ମାଧ୍ୟମରେ ଶିଶୁମାନଙ୍କର ବିଭିନ୍ନ-ପ୍ରକାରର ଶିକ୍ଷଣ ଓ ଅଭ୍ୟାସଗଠନ କିପରି କରାଯାଇପାରିବ, ତାହା ଉପରେ ଅନେକ ଗବେଷଣା କରାଯାଇଛି । ପାଭ୍‌ଲୋଭ ଏବଂ ବେଚରେଭ ଏବଂ ତାଙ୍କର ସହକର୍ମୀ ଏହା ଉପରେ ନାନା ଗବେଷଣା କରିଅଛନ୍ତି ।

ପ୍ରସୀମନ ପ୍ରଣାଳୀରେ ଗଠନ କରାଯାଉଥିବା କ୍ରିୟାପ୍ରତିକ୍ରିୟାକୁ ସରଳ ଓ ସାଧାରଣ ଅଭ୍ୟାସ ବୋଲି ଆଖ୍ୟା ଦିଆଯାଇପାରେ । ଦୈନନ୍ଦିନ ଜୀବନରେ ସରଳ ଓ ସାଧାରଣ ଅଭ୍ୟାସଗୁଡ଼ିକ ଏହି ପ୍ରଣାଳୀରେ ଗଠିତ ହୋଇଥାଏ ବୋଲି ପାଭ୍‌ଲୋଭ୍ ଓ ୱାଟ୍‌ସନଙ୍କ-ପରି ବ୍ୟବହାରବାଦୀମାନେ ମତଦିଅନ୍ତି ।

ପ୍ରାକ୍ ଜନ୍ମ ଅବସ୍ଥାରେ ବିଭିନ୍ନପ୍ରକାରର ପ୍ରତିବର୍ତ୍ତୀ ନବଜାତ ଶିଶୁଠାରେ ପ୍ରସୀମନ ପଦ୍ଧତିରେ ଉଦ୍ରେକ କରାଯାଇପାରେ । ଜନ୍ମର ପ୍ରଥମ ସପ୍ତାହରେ ନବଜାତ ଶିଶୁମାନଙ୍କୁ ପ୍ରସୀମନ ପ୍ରଣାଳୀରେ ଯେଉଁ ସବୁ ଶିକ୍ଷା ଦିଆଯାଇଛି, ସେ ସମ୍ବନ୍ଧରେ ମାଇକ୍ରୁଇସ(୧୯୩୧) ୱେନ୍‌ଗର (୧୯୩୬), ୱଇକେନ୍‌ସ ଓ ୱଇକେନ୍‌ସ (୧୯୪୦) କେତେକ ତଥ୍ୟ ପ୍ରକାଶ କରିଅଛନ୍ତି । ମାର୍କୁଇସ୍ ୨ଠାରୁ ୯ଦିନର ୧୦ଜଣ ଶିଶୁଙ୍କୁ ଦୁଗ୍ଧପାନ କରିବାର ୫ ସେକେଣ୍ଡ ପୂର୍ବରୁ ଏକ ବଜର୍ ଶବ୍ଦକରି ଉଦ୍ଦୀପିତ କରାଇଲେ । ପ୍ରଶିକ୍ଷଣ ଦେବାର ୫ଦିନ ପରେ ଏହି ଶିଶୁମାନଙ୍କ ମଧ୍ୟରୁ ୮ ଜଣ ବୈଦ୍ୟୁତିକ ଯନ୍ତ୍ରଦ୍ୱାରା ସୃଷ୍ଟି ହେଉଥିବା ଗୁଣୁଗୁଣୁ ଶବ୍ଦ ଶୁଣି ଦୁଗ୍ଧବୋତଲ ପାଟିରେ ପୁରାଇବା ଆଗରୁ ଚଚୂମିବା ଓ ପାଟି ମେଲା କରିବା ଆଦି କ୍ରିୟାକଳାପ ଦେଖାଇଲେ । ନିୟନ୍ତ୍ରିତ ସ୍ଥିତିରେ ୪ଜଣ ଶିଶୁଙ୍କୁ ନେଇ ଦେଖାଗଲା ଯେ ଦୁଗ୍ଧପାନ ସହିତ ସମ୍ବନ୍ଧିତ ହୋଇନଥିବା ବଜର ଶବ୍ଦ ଶିଶୁମାନଙ୍କଠାରେ ଦୁଗ୍ଧପାନ କରିବା ପୂର୍ବରୁ କୌଣସି ପ୍ରସୀମିତ ଅନୁକ୍ରିୟା ବା ସାପେକ୍ଷ କ୍ରିୟା ଜାତ କରାଇ ପାରିନଥିଲେ ।

ମାର୍କୁଇସ୍‌ଙ୍କ ମତରେ ନବଜାତ ଶିଶୁମାନେ ଖୁବ୍ ଶୀଘ୍ର ଖାଦ୍ୟ ଖାଇବାର ସମୟ ସହିତ ନିଜକୁ ଉପଯୋଜନ କରିନିଅନ୍ତି । ଖାଦ୍ୟ ଖାଇବାର ଅଭ୍ୟାସ ବା ସମୟର ପରିବର୍ତ୍ତନ ଯୋଗୁଁ ବିଭିନ୍ନ କ୍ରିୟାକଳାପରେ ମଧ୍ୟ ପରିବର୍ତ୍ତନ ଲକ୍ଷ୍ୟ କରାଯାଏ ।

କେତେକ ଅନୁସନ୍ଧାନକାରୀ ବିଭିନ୍ନ ଆବେଗିକ କ୍ରିୟା ପ୍ରସୀମନ ପ୍ରଣାଳୀରେ ଜାତ କରାଇବାକୁ ଚେଷ୍ଟା କରିଅଛନ୍ତି ।

ୱାଟସନ୍ ଓ ରେନର (୧୯୨୦) ଏବଂ ଜୋନ୍‌ସ୍ (୧୯୩୦ a, ୧୯୩୦ b) ପ୍ରସୀମନ ପ୍ରଣାଳୀ ମାଧ୍ୟମରେ ଶିଶୁମନରେ କିପରି ଭୟ ଉଦ୍ରେକ କରାଯାଇପାରିବ, ତାହା

ସଂପରୀକ୍ଷା ଦ୍ୱାରା ଦର୍ଶାଇଛନ୍ତି । ଜୋନ୍ସ ଲକ୍ଷ୍ୟ କରିଥିଲେ ଯେ, ୭ ମାସ ପର୍ଯ୍ୟନ୍ତ ଏହି ଭୟ ଶିଶୁମାନଙ୍କଠାରେ ସ୍ଥାୟୀ ହୋଇଥିଲା । ବିଶେଷତଃ ଶବ୍ଦ ସହିତ ସମ୍ବନ୍ଧିତ ହୋଇଥିବା ପରିସ୍ଥିତି ବା ଘଟଣା ପ୍ରତି ଶିଶୁ ନ କ କାର୍ଯ୍ୟ ବା ପ୍ରତିକୂଳ ପ୍ରତିକ୍ରିୟା ପ୍ରଦର୍ଶନ କରୁଥିଲା ।

ବିଭିନ୍ନ ଅଧ୍ୟୟନ, ପର୍ଯ୍ୟବେକ୍ଷଣ ଓ ସଂପରୀକ୍ଷାମାନଙ୍କରୁ ସଂଗୃହୀତ ହୋଇଥିବା ତଥ୍ୟମାନଙ୍କରୁ ଅନୁମିତ ହୁଏ ଯେ, ଶୈଶବାବସ୍ଥାରେ ଚୁଚୁମିବା, ପଲକ ପକେଇବା, ଗୋଡ଼ ହାତ ପ୍ରଭୃତି ଘୁଞ୍ଚାଇନେବା, ଶ୍ୱାସକ୍ରିୟା, ସ୍ପନ୍ଦନ, ସାଧାରଣ କ୍ରିୟାକଳାପ, Galvanic skin response ଏବଂ ଭୟ ପ୍ରଭୃତି ଦୃଷ୍ଟି, ସ୍ପର୍ଶ ଓ ଶ୍ରବଣ ଉଦ୍ଦୀପକମାନଙ୍କ ସହିତ ସମ୍ବନ୍ଧିତ କରି ଉଦ୍ରେକ କରାଯାଇପାରେ ।

ପ୍ରସୀମନ ପ୍ରଣାଳୀ ଦ୍ୱାରା ଗଠିତ ହୋଇଥିବା ଅଭ୍ୟାସ ନବଜାତ ଶିଶୁମାନଙ୍କ ଅପେକ୍ଷା ବୟସ୍କ ଶିଶୁମାନଙ୍କ କ୍ଷେତ୍ରରେ ଅଧିକ ସ୍ଥାୟୀ ହୋଇଥାଏ । ନବଜାତ ଶିଶୁଙ୍କ କ୍ଷେତ୍ରରେ ଏହି ଅଭ୍ୟାସ ସାତମାସ ବା ତତୋଧିକ କାଳ ପର୍ଯ୍ୟନ୍ତ ସ୍ଥାୟୀ ରହିପାରେ ।

ବାଲ୍ୟାବସ୍ଥାରେ ପ୍ରସୀମନ ପ୍ରଣାଳୀ ମାଧ୍ୟମରେ ଗଠିତ କରାଯାଇଥିବା ବିଭିନ୍ନ ଅନୁକ୍ରିୟା ଓ ଅଭ୍ୟାସ ସମ୍ବନ୍ଧରେ ଅନେକ ଅଧ୍ୟୟନ ହୋଇଅଛି । ରୁଷିଆର ପରୀକ୍ଷାଶାଳାମାନଙ୍କରେ ହୋଇଥିବା ୩୦ରୁ ଅଧିକ ଗବେଷଣାର ଫଳାଫଳର ସାରତତ୍ତ୍ୱ ରାଜ୍‌ରାନ (୧୯୩୩) ପ୍ରକାଶ କରିଅଛନ୍ତି । ଠିକ୍ ସମୟରେ ଖାଦ୍ୟ ଖାଇବା, ମଳମୂତ୍ର ତ୍ୟାଗକରିବା ଇତ୍ୟାଦି ଅଭ୍ୟାସ, ପ୍ରସୀମନ ପ୍ରଣାଳୀରେ ଗଠିତ ହୋଇପାରିବ । ମୋର୍‌ଗାନ(୧୯୩୮), ମାରର୍ ଓ ମାରର୍ (୧୯୩୮), ମର୍ଗାନ୍ ଏବଂ ଉଇଟନର୍ (୧୯୩୯) ବିଛଣାରେ ମଳମୂତ୍ର ତ୍ୟାଗ ନ କରି ଉଚିତ ସ୍ଥାନରେ ମଳମୂତ୍ର ତ୍ୟାଗ ଅଭ୍ୟାସ ପ୍ରସୀମନ ପ୍ରଣାଳୀରେ ଉଦ୍ରେକ ଅତ୍ୟନ୍ତ ସଫଳତା ସହିତ କରିପାରିଛନ୍ତି ।

ପ୍ରାରମ୍ଭରେ ମୂତ୍ରତ୍ୟାଗ କଲାବେଳେ କୌଣସି ଶବ୍ଦ କଲେ ଏବଂ ବାରମ୍ବାର ଏହି କ୍ରିୟାକୁ ପୁନରାବୃତ୍ତି କଲେ ଶିଶୁ ଏହି ଶବ୍ଦ ସହିତ ମୂତ୍ରତ୍ୟାଗ କରିବାର ଅଭ୍ୟାସକୁ ସଂପୃକ୍ତ କରିପାରେ ଏବଂ ଶବ୍ଦ କଲାକ୍ଷଣି ମୂତ୍ର ତ୍ୟାଗ କରେ । ସେହିପରି ପ୍ରତି ୧-୨ ଘଣ୍ଟାରେ ଶିଶୁକୁ ବିଛଣାରୁ ଉଠାଇ ଆଣି ସି....ସି ଶବ୍ଦ କରି ବାହାରେ ପରିସ୍ରା କରାଇବାର ଅଭ୍ୟାସ କରାଇଲେ ଭବିଷ୍ୟତରେ ସେ ଏହି ଶବ୍ଦ ଶୁଣି ପରିସ୍ରା କରେ ଏବଂ କାଳକ୍ରମେ ସେ ଯେକୌଣସି ସମୟରେ ପରିସ୍ରା ନ କରି ପ୍ରତି ୧-୨ ଘଣ୍ଟାରେ ପରିସ୍ରା କରେ । ବୟସ ବଢ଼ିଲେ ଏହି ସମୟ ସୀମା ମଧ୍ୟ ବୃଦ୍ଧି ପାଏ ।

ବିଛଣାରେ ମୂତ୍ର ତ୍ୟାଗ ଅଭ୍ୟାସକୁ କିପରି ପ୍ରସୀମନ ପ୍ରଣାଳୀରେ ଦୂର କରାଯାଇ ପାରିବ, ତାହା ଉପରେ ମାରର୍ ଓ ମାରର୍ (୧୯୩୮) ଏକ ଅଧ୍ୟୟନ କରିଥିଲେ । ଶିଶୁ ଶୋଇଥିବା ମଶିଣାରେ ଏପରି ବ୍ୟବସ୍ଥା କରାଯାଇଥିଲା ଯେ ଯେତେବେଳେ ଶିଶୁ ପରିସ୍ରା କରିବାକୁ ଆରମ୍ଭ କରେ, ଏକ ଘଣ୍ଟି ବାଜି ଉଠେ । ପ୍ରତି ଶିଶୁକୁ ନିର୍ଦ୍ଦେଶ ଦିଆଯାଇଥିଲା ସେ ଘଣ୍ଟି ବାଜିଲାକ୍ଷଣି ଉଠିପଡ଼ି ସୁଇଚ୍ ଟିପିଦେଲେ ଘଣ୍ଟି ବନ୍ଦ ହୋଇଯିବ ଏବଂ ଘଣ୍ଟି ସଙ୍ଗେ ସଙ୍ଗେ ସେମାନେ ପରିସ୍ରା ଘରକୁ ଯିବେ । ଏହି ପ୍ରଣାଳୀରେ ୩ରୁ ୧୩ ବର୍ଷ ବୟସର

୩୦ଟି ବାଳକଙ୍କର ବିଛଣାରେ ମୂତ୍ର ତ୍ୟାଗ କରିବାର ବଦ ଅଭ୍ୟାସକୁ ୪ରୁ ୮ ସପ୍ତାହ ମଧ୍ୟରେ ଦୂର କରାଯାଇପାରିଥିଲା । ଅର୍ଥାତ୍ ପରିସ୍ରା ଯୋଗରେ ଲାଗିବା ପୂର୍ବରୁ ପିଲାମାନେ ଘଣ୍ଟି ଶବ୍ଦକୁ ପ୍ରତୀକ୍ଷା କରି ନିଦରୁ ଉଠିପଡ଼ୁଥିଲେ ଏବଂ ପରିସ୍ରାଗାରକୁ ପରିସ୍ରା କରିବା ପାଇଁ ଚାଲିଯାଉଥିଲେ । ସ୍କିନର୍ ଉପରୋକ୍ତ ପଦ୍ଧତି ଓ କେତେକ ପ୍ରଶମନ ପ୍ରଣାଳୀ ପ୍ରୟୋଗ କରି ବିଛଣାରେ ମୂତ୍ର ତ୍ୟାଗ ଅଭ୍ୟାସକୁ ଦୂରୀଭୂତ କରିପାରିଥିଲେ । ମୋରଗାନ୍ ଓ ୱିଟ୍‌ମରଙ୍କର ବିବରଣୀ ଅନୁସାରେ ପାଞ୍ଚଜଣ ମଧ୍ୟରୁ ଚାରିଜଣ ବାଳକ ସ୍କୁଲରୁ ଚଉଦ ରାତି ମଧ୍ୟରେ ଏହି ଉପାୟରେ ବିଛଣାରେ ମୂତ୍ରତ୍ୟାଗ ଅଭ୍ୟାସକୁ ପରିତ୍ୟାଗ କରିପାରି-ଥିଲେ । ମୋରଗାନ୍ ଅଧିକ ମତବ୍ୟକ୍ତ କରିଛନ୍ତି ଯେ "ଯେଉଁ ଶିଶୁ ନିଜର ଏହି ବଦ ଅଭ୍ୟାସ ଦୂର କରିବା ନିମିତ୍ତ ସଂପରୀକ୍ଷକଙ୍କ ସହିତ ସହଯୋଗ କରିବ, ତାର ବିଛଣାରେ ମୂତ୍ର ତ୍ୟାଗ କରିବା ଅଭ୍ୟାସ ଶୀଘ୍ର ଦୂରହୋଇଯିବ ।" ଏହି କୌଶଳ ପ୍ରୟୋଗ କରି ଓକନ୍ (୧୯୩୯) ମନ୍ଦମତି ଶିଶୁର ବିଛଣାରେ ମୂତ୍ର ତ୍ୟାଗ ଅଭ୍ୟାସକୁ ଦୂରୀଭୂତ କରିଥିଲେ ।

## ମନ୍ଦ ଅଭ୍ୟାସ

ଅଭ୍ୟାସ ଗଠନ ହେଲାବେଳେ ଉଭୟ ଭଲ ଓ ମନ୍ଦ ଅଭ୍ୟାସ ଗଠିତ ହୋଇଥାଏ । ପିତାମାତା ଯେ ଜାଣିଶୁଣି ଶିଶୁକୁ ମନ୍ଦ ଅଭ୍ୟାସ ଗଠନ କରିବାରେ ସାହାଯ୍ୟ କରନ୍ତି, ତାହା ନୁହେଁ, ମାତ୍ର ସେମାନଙ୍କର ଅଜ୍ଞାତସାରରେ ବା ଅଜ୍ଞତା ଯୋଗୁଁ ଅଥବା ପ୍ରମାଦ-ପୂର୍ଣ୍ଣ ପ୍ରଶିକ୍ଷଣ ତଥା ପ୍ରତିକୂଳ ପାରିପାର୍ଶ୍ୱିକ ଅବସ୍ଥା ଓ ପିତାମାତାଙ୍କର ସ୍ୱକୀୟ ମନ୍ଦ ଅଭ୍ୟାସ ଯୋଗୁ ବହୁ ଶିଶୁ ନାନା ମନ୍ଦ ଅଭ୍ୟାସର ଅଧିକାରୀ ହୋଇଥାନ୍ତି; ଯଥା : ଯେକୌଣସି ସ୍ଥାନରେ ବସି ଗୋଡ଼ ହଲାଇବା, ନଖ କାମୁଡ଼ିବା, ଆଙ୍ଗୁଠି ଚୂଚୂମିବା, ବିଛଣାରେ ବା ଅଜାଗାରେ ଝାଡ଼ା ପରିସ୍ରା କରିବା, ସାମାନ୍ୟ କଥାରେ ଅତ୍ୟଧିକ କ୍ରୁଦ୍ଧ ହୋଇ ଭୂଇଁରେ ଗଡ଼ି ବାନ୍ଧିବା, ମୂଷା ବା କୁକୁରକୁ ଡରିବା, ଅନ୍ଧାର ଘର, ବିଜୁଳି ଘଡ଼ଘଡ଼ିକୁ ଡରିବା, କୌଣସି କାର୍ଯ୍ୟ କରିବାର ଶକ୍ତି ଥିଲେ ମଧ୍ୟ ତାହା ନିଜେ ନକରି ଅନ୍ୟ ଉପରେ ସେଥିପାଇଁ ନିର୍ଭର କରିବା, ଏଣେତେଣେ ଛେପ ପକାଇବା, ମାଦକ ଦ୍ରବ୍ୟ ସେବନ କରିବା, ମିଛ କହିବା, ଚୋରି କରିବା ଇତ୍ୟାଦି ମନ୍ଦ ଅଭ୍ୟାସମାନଙ୍କ ମଧ୍ୟରୁ ମାତ୍ର କେତୋଟି ଅତିଶୟ ଅଯତ୍ନରକ୍ଷଣ ଯୋଗୁଁ ମଠ ଶିଶୁଠାରେ ଜାତ ହୋଇଥାଏ ।

ଶିଶୁର ବ୍ୟକ୍ତିତ୍ୱକୁ ସୁସ୍ଥ ଓ ଉପଯୁକ୍ତ କରି ଗଢ଼ିବାକୁ ହେଲେ ତା'ର ମନ୍ଦ ଅଭ୍ୟାସ-ଗୁଡ଼ିକୁ ଦୂର କରିବା ବିଧେୟ । ଅବଶ୍ୟ ପ୍ରତ୍ୟେକ ଶିଶୁର ସମସ୍ତ ମନ୍ଦ ଅଭ୍ୟାସକୁ ଦୂରକରି-ଦିବା ସମ୍ଭବପର ନ ହୋଇପାରେ । ମାତ୍ର ଯେତେଦୂର ସମ୍ଭବ, ଅଧିକ କ୍ଷତିକାରକ ମନ୍ଦ ଅଭ୍ୟାସକୁ ଦୂର କରିବା ନିତାନ୍ତ ଆବଶ୍ୟକ । ପିଲାଦିନରୁ ମନ୍ଦ ଅଭ୍ୟାସଗୁଡ଼ିକୁ ଦୂର କରିବାର ପଦକ୍ଷେପ ନ ନେଲେ ବୟସ୍କ ଅବସ୍ଥାରେ ତାହା ଦୂର କରିବା କଷ୍ଟକର ବ୍ୟାପାର ହୋଇପଡ଼େ ଏବଂ ଏହା ଏକ ସମସ୍ୟାରେ ପରିଣତ ହୋଇଯାଏ ।

ଗୋଟିଏ ମନ୍ଦ ଅଭ୍ୟାସକୁ ଦୂର କରିବା ଅର୍ଥ ହେଉଛି କୌଣସି ଏକ ନିର୍ଦ୍ଦିଷ୍ଟ ପରିସ୍ଥିତି ପ୍ରତି ଦେଖାଯାଉଥିବା ଏକ ଅଭ୍ୟସ୍ତ ପ୍ରତିକ୍ରିୟାକୁ ତ୍ୟାଗ କରିବା । ତେଣୁ କୌଣସି ମନ୍ଦ

ଗୋଟିଏ ମନ୍ଦ ଅଭ୍ୟାସକୁ ଦୂର କରିବା ଅର୍ଥ ହେଉଛି କୌଣସି ଏକ ନିର୍ଦ୍ଦିଷ୍ଟ ପରିସ୍ଥିତି ପ୍ରତି ଦେଖାଯାଉଥିବା ଏକ ଅଭ୍ୟସ୍ତ ପ୍ରତିକ୍ରିୟାକୁ ତ୍ୟାଗ କରିବା । ତେଣୁ କୌଣସି ମନ୍ଦ ଉପାୟକୁ ତ୍ୟାଗ କରିବାରେ ସଫଳ ଉପାୟ ହେଲା ନୂତନ ପ୍ରତିକ୍ରିୟାମାନଙ୍କର ବିକାଶ ଯାହାକି ପୁରାତନ ଅଭ୍ୟାସଗୁଡ଼ିକୁ ଦମନ କରିବାରେ ସକ୍ଷମ ହୋଇଥିବ ।

ମନ୍ଦ ଅଭ୍ୟାସକୁ ଦୂର କରିବା ପାଇଁ ଗଥ୍‌ରି ତିନି ଗୋଟି ଉପାୟର ସୂଚନା ଦେଇଛନ୍ତି ।

୧ । ଅସଙ୍ଗତ ଅନୁକ୍ରିୟା ପଦ୍ଧତି

ପୁନଃପ୍ରବର୍ତ୍ତନ ପ୍ରତିକ୍ରିୟା ସହିତ ଏହି ପଦ୍ଧତିର ଅନେକ ସାମଞ୍ଜସ୍ୟ ରହିଛି । ଏହି ଉପାୟର ଲକ୍ଷ୍ୟ ହେଲା, ଏକ ନୂତନ ଏବଂ ଆବଶ୍ୟକ ପଦ୍ଧତି ପ୍ରତିଷ୍ଠା କରିବା, ଯାହାକି ପୁନଃପ୍ରବର୍ତ୍ତନ ପ୍ରତିକ୍ରିୟା ସହିତ ପ୍ରାୟ ସମାନ । ଅସୁଖକର କିମ୍ବା ସୁଖଦାୟକ ଉଦ୍ଦୀପକ ସହ ସଂଯୁକ୍ତ କରି ପୁନଃ ପ୍ରବର୍ତ୍ତନ ପ୍ରତିଷ୍ଠା କରାଯାଇଥାଏ । ଏହି ପଦ୍ଧତି ସାହାଯ୍ୟରେ ପୁରୁଣା ଅନୁକ୍ରିୟା ଦୂର ହୁଏ ଏବଂ ନୂତନ ଅନୁକ୍ରିୟା ଜାତ ହୁଏ । ଉଦାହରଣ : ଇଞ୍ଜେକ୍‌ସନ୍ ନବାର କଷ୍ଟ ସହିତ ଡାକ୍ତରଙ୍କ ଉପସ୍ଥିତି ବାରମ୍ବାର ସମ୍ବନ୍ଧିତ କରି ଡାକ୍ତରଙ୍କୁ ଦେଖିଲେ ଶିଶୁ ଭୟରେ କାନ୍ଦୁଛି । ଏପରିକି ଡାକ୍ତର ଘରକୁ ବୁଲିଆସିଲେ ମଧ୍ୟ ସେ ତାଙ୍କୁ ଦେଖି ଭୟରେ ଲୁଚେ । ଶିଶୁର ଏହି ବଦଭ୍ୟାସକୁ ଦୂର କରିବା ପାଇଁ ଡାକ୍ତର ଆସିଲାବେଳେ ପ୍ରତିଥର ଯଦି ସୁଖ ପାଉଥିବା କୌଣସି ପଦାର୍ଥ ତାକୁ ଖାଇବାକୁ ଦିଆଯାଏ, ବା ଡାକ୍ତରଙ୍କ ଉପସ୍ଥିତି ସହ କୌଣସି ସୁଖକର ଉଦ୍ଦୀପକକୁ ବାରମ୍ବାର ସମ୍ବନ୍ଧିତ କରାଯାଏ, ଶିଶୁ ଡାକ୍ତରଙ୍କୁ ଦେଖିଲେ ଆଉ କାନ୍ଦିବ ନାହିଁ କି ଭୟରେ ଲୁଚିବ ନାହିଁ । ନଖ କାମୁଡ଼ା ବା ଆଙ୍ଗୁଠି ଚୁଚୁମା ଅଭ୍ୟାସ ଏହିପରି ଦୂର କରାଯାଇ ପାରେ । ନଖ କାମୁଡ଼ିଲା ବେଳେ କୌଣସି ଭୟାନକ ବା ଅସ୍ୱାଭାବିକ ଶବ୍ଦ କଲେ ଶିଶୁ ନଖ କାମୁଡ଼ା ସହିତ ଏହି ଶବ୍ଦକୁ ସମ୍ବନ୍ଧିତ କରି ନଖ କାମୁଡ଼ା ଛାଡ଼ିଦେଇପାରେ ।

୨ । ନିଃଶେଷକରଣ କ୍ଷୟ ପଦ୍ଧତି

ଅଭ୍ୟସ୍ତ ଅନୁକ୍ରିୟାକୁ ବାରମ୍ବାର ପ୍ରଦର୍ଶନ କଲେ ଏକ ସମୟ ଉପସ୍ଥିତ ହୁଏ ଯେତେବେଳେ ଏହା ନିଃଶେଷ ହୋଇଯାଏ ଏବଂ ଆଉ ଏହି ବ୍ୟବହାର ପ୍ରଦର୍ଶନ କରି ହୁଏନାହିଁ । ମାତ୍ର କେତେକ ନିର୍ଦ୍ଦିଷ୍ଟ ଅବସ୍ଥାରେ ଏହି ପ୍ରତିକ୍ରିୟା ଅତ୍ୟନ୍ତ ଲାଭଦାୟକ ହୋଇ-ଥାଏ, କିନ୍ତୁ ଅଭ୍ୟସ୍ତ ଅନୁକ୍ରିୟାମାନଙ୍କୁ ସରଳ ଭାବରେ ପୁନରାବୃତ୍ତି କଲେ, ନିଃଶେଷକରଣ କ୍ଷୟ ପଦ୍ଧତି ଦ୍ୱାରା ପୁରାତନ ଅଭ୍ୟାସ ଦୂର ହୁଏନାହିଁ । ଅବଶ୍ୟ କେତେକ ମନ୍ଦ ଅଭ୍ୟାସ ଦୂର କରିବାରେ ଏହି ଉପାୟ ଲାଭଜନକ ହୋଇପାରେ । ଯେପରିକି କୌଣସି ବାଳକର ନଖ କାମୁଡ଼ା ଅଭ୍ୟାସ ଅଛି, ଏହାକୁ ଦୂର କରିବା ପାଇଁ ଦର୍ପଣ ଆଗରେ ଠିଆ ହୋଇ ସେ ନିଜର ଇଚ୍ଛାସାରରେ ଦିନକୁ ୪,୫ ଥର ପର୍ଯ୍ୟନ୍ତ ଅନେକ ଦିନ ଧରି ନଖ କାମୁଡ଼ିଲା ପରେ ଯେତେବେଳେ ଅନୁଭବ କରେ ଯେ ଏଇଟା ଗୋଟାଏ ଖରାପ ଅଭ୍ୟାସ ଏବଂ ଏହାକୁ

ଯେ କୌଣସି ମତେ ଦୂର କରିବାକୁ ଚେଷ୍ଟା କଲେ, ତାର ଏହି ବଦ୍ ଅଭ୍ୟାସ ଅଳ୍ପଦିନ ମଧ୍ୟରେ ଦୂର ହୋଇଯିବାର ସମ୍ଭାବନା ଥାଏ ।

ଅଭ୍ୟାସଗୁଡ଼ିକ ସାଧାରଣତଃ ଅଚେତନ ବା ଅବଚେତନ କ୍ରିୟା ହୋଇଥାଏ, ଏବଂ ଏହା ଉପରେ ବ୍ୟକ୍ତିର କୌଣସି ନିୟନ୍ତ୍ରଣ ନଥାଏ କହିଲେ ଚଳେ । କିନ୍ତୁ ଯେତେବେଳେ ଉଦ୍ଦେଶ୍ୟମୂଳକ ଭାବରେ ଏହାକୁ ବାରମ୍ବାର କରାଯାଏ, ଏହା ଏକ ସଚେତନ କ୍ରିୟାରେ ପରିଣତ ହୁଏ ଏବଂ ଏହା ଆମର ନିୟନ୍ତ୍ରଣାଧୀନ ହୋଇଯାଏ, ଅର୍ଥାତ୍ ସମସ୍ତ ଗତିରେ ସଚେତନ ମନ ଏହି ବଦ୍ ଅଭ୍ୟାସ ଉପରେ ନିଜର ପ୍ରଭୁତ୍ୱ ବିସ୍ତାର କରିପାରେ, ମନୋବଳ ଏବଂ ଦୃଢ଼ ସଂକଳ୍ପ ସାହାଯ୍ୟରେ ବ୍ୟକ୍ତି ଏହି ଅଭ୍ୟାସକୁ ତ୍ୟାଗ କରିବାକୁ ସକ୍ଷମ ହୁଏ ।

## ୩ । ସହନଶୀଳ ପଦ୍ଧତି

ଯେଉଁ ଉଦ୍ଦୀପକ କୌଣସି ମନ୍ଦ ଅଭ୍ୟାସ ଜାତ କରାଇବାରେ ସାହାଯ୍ୟ କରିଥାଏ, ସେହି ଉଦ୍ଦୀପକ ପ୍ରତି ଆସ୍ତେ ଆସ୍ତେ ସହନଶୀଳତା ମନୋଭାବ ବିକାଶ କରାଇଲେ କାଳକ୍ରମେ ବଦ୍ ଅଭ୍ୟାସ ଦୂର ହୋଇଯାଏ । ବିଶେଷକରି ଶିକ୍ଷଣ ବା ଅନୁକରଣ ଦ୍ୱାରା ଉଦ୍ରେକ ହୋଇଥିବା ଭୟକୁ ଦୂର କରିବା ପାଇଁ ଏହା ଏକ ପ୍ରକୃଷ୍ଟ ଉପାୟ । ଏହା ପ୍ରକୃତରେ ଅନୁବନ୍ଧ ପ୍ରଣାଳୀ ଉପରେ ପର୍ଯ୍ୟବସିତ । ଉଦାହରଣ ସ୍ୱରୂପ, ଯେଉଁ ଶିଶୁ କୁକୁରକୁ ଡରୁଥିବ ତାକୁ ପ୍ରଥମରେ କୁକୁର ଛୁଆଟିଏ ଦେଖାଇବ, ଆସ୍ତେ ଆସ୍ତେ କୁକୁର ଛୁଆଟିକୁ ଶିଶୁର ନିକଟରୁ ନିକଟକୁ ଆଣିବ ଏବଂ ଶିଶୁକୁ ଦେଖାଇଦେବ ଯେ କୁକୁର ଛୁଆ କୌଣସି କ୍ଷତି କରୁନାହିଁ । ଏହିପରି ଭାବରେ କୁକୁର ଛୁଆର ଉପସ୍ଥିତିକୁ ଶିଶୁ ସହିନେବାକୁ ଶିଖିଲା ପରେ କ୍ରମେ କ୍ରମେ କୁକୁର ଛୁଆ ପ୍ରତି ତାର ଭୟ ରହେ ନାହିଁ । ଏହା ପରେ କୁକୁରର ଉପସ୍ଥିତି ସହିତ କୌଣସି ସୁଖକର ବସ୍ତୁ ବା ଘଟଣାକୁ ସମ୍ବନ୍ଧିତ କରି କୁକୁର ପ୍ରତି ଭୟ ନ ଦେଖାଇବାକୁ ସେ ଅଭ୍ୟସ୍ତ ହୋଇଯାଏ । ଭୟ ଉଦ୍ରେକ କରାଉଥିବା ପ୍ରାଣୀ ବା ବସ୍ତୁ ତାର କୌଣସି କ୍ଷତି କରୁନାହିଁ ବୋଲି ଯେତେବେଳେ ସେ ଦେଖେ, ସେତେବେଳେ ତାର ସେହି ପ୍ରାଣୀ ପ୍ରତି ଭୟ ଦୂର ହୋଇଯାଏ ।

## ପରିବେଷ୍ଟନୀକୁ ପରିବର୍ତ୍ତନ କରିବା ପଦ୍ଧତି

ମନ୍ଦ ଅଭ୍ୟାସ ଜାତ କରାଉଥିବା ବା ମନ୍ଦ ଅଭ୍ୟାସ ଗଠନ କରିବାପାଇଁ ଅନୁକୂଳ ବାତାବରଣ ସୃଷ୍ଟି କରାଉଥିବା ପରିସ୍ଥିତିଠାରୁ ଯେତେ ଦୂର ସମ୍ଭବ ନିଜକୁ ଦୂରେଇ ରଖିଲେ ଖରାପ ଅଭ୍ୟାସ ଗଠନ ହେବାର ସମ୍ଭାବନା କମିଯିବ । ଅର୍ଥାତ୍ ଶିଶୁକୁ ଏପରି ପରିବେଷ୍ଟନୀ ମଧ୍ୟରେ ବଢ଼ାଇବାକୁ ପଡ଼ିବ ଯେ ମନ୍ଦ ଅଭ୍ୟାସ ଗଠନ କରିବା ପାଇଁ ସେ ସୁବିଧା, ସୁଯୋଗ, ବା ଉତ୍ସାହ ପାଇବ ନାହିଁ । ଏଥିନିମନ୍ତେ ତା'ର ପାରିପାର୍ଶ୍ୱିକ ଅବସ୍ଥାକୁ ଉତ୍ତମରୂପେ ନିୟନ୍ତ୍ରଣ କରିବାକୁ ପଡ଼ିବ । କିନ୍ତୁ ଏହା କେତେଦୂର ବାସ୍ତବ କ୍ଷେତ୍ରରେ କାର୍ଯ୍ୟକାରୀ କରିବା ସମ୍ଭବ ତାହା ବିଚାର୍ଯ୍ୟ । ଏକଥା କେହି ଅସ୍ୱୀକାର କରିପାରିବେ ନାହିଁ ଯେ,

ପ୍ରତ୍ୟେକ ପିତା, ମାତା ଓ ଶିଶୁର ଶୁଭାକାଂକ୍ଷୀମାନେ ଇଚ୍ଛା କରନ୍ତି ଶିଶୁର କପରି କୌଣସି ମନ୍ଦ ଅଭ୍ୟାସ ନ ହେଉ, ଏଥିପାଇଁ ସେମାନେ ଚେଷ୍ଟା କରନ୍ତି । କିନ୍ତୁ ଶିଶୁ ଚଳପ୍ରଚଳ ହେଉଥିବା ବାତାବରଣକୁ ସମ୍ପୂର୍ଣ୍ଣରୂପେ ନିୟନ୍ତ୍ରଣ କରିବା ପିତାମାତାଙ୍କ ପକ୍ଷରେ ସମ୍ଭବ ହୁଏନାହିଁ । ଯଥା : ଗୃହରେ ହୁଏତ ପିତାମାତା ଶିଶୁକୁ ଉତ୍ତମ ଅଭ୍ୟାସ ଗଠନ ଦିଗରେ ଉତ୍ସାହିତ କରିପାରନ୍ତି ଏବଂ ଏଥିପାଇଁ ଉଦାହରଣ ଓ ଉପଦେଶ ମାଧ୍ୟମରେ ପ୍ରଶିକ୍ଷଣ ମଧ୍ୟ ଦେଇପାରନ୍ତି । ମାତ୍ର ବିଦ୍ୟାଳୟରେ ବାଳକ ଅନ୍ୟ ଶିଶୁମାନଙ୍କୁ ଅନୁକରଣକରି ଅନେକ ମନ୍ଦ ଅଭ୍ୟାସ ଗଠନ କରିଥାଏ । ଯେପରିକି ଜାମା ବା ପେନ୍‌ସିଲ କାମୁଡ଼ିବା, ଖାତା ବହିରେ ଗାର ପକାଇ ଅପରିଷ୍କାର କରିବା, ପାନ ଖାଇବା, ନାନାପ୍ରକାର ଗାଳି କରିବା, କଳି କରିବା । ଏସବୁ ଶିଶୁ ଅନୁକରଣ କରି ଶିକ୍ଷା କରିଥାଏ । ଆଉ କେତେକ ପିତାମାତା ଶିଶୁର ଉତ୍ତମ ଅଭ୍ୟାସ ଗଠନ କରିବାପାଇଁ ଚାହୁଁଥିଲେ ମଧ୍ୟ ନିଜର ବଦ ଅଭ୍ୟାସ ତ୍ୟାଗ କରିନପାରିବା ଦ୍ୱାରା ଶିଶୁକୁ ପରୋକ୍ଷରେ ଏହି ଅଭ୍ୟାସଗୁଡ଼ିକୁ ଗଠନ କରିବାରେ ସାହାଯ୍ୟ କରନ୍ତି । ଯେପରିକି ବାପା ଯଦି ସିଗାରେଟ୍ ଖାଉଥାନ୍ତି କିମ୍ବା ମା ଯଦି ପାନ ଖାଉଥାନ୍ତି, ଅଥବା ମିଛ କୁହନ୍ତି ବା ଅଭଦ୍ର ଭାଷାରେ ଗାଳି ଗୁଲଜ କରନ୍ତି, ଅଗ୍ରଧର୍ଷୀ ବ୍ୟବହାର ପ୍ରଦର୍ଶନ କରନ୍ତି, ଦମ୍ଭାଳୁ ହୋଇଥାନ୍ତି, ତେବେ ଶିଶୁ ମଧ୍ୟ ଏହି ମନ୍ଦ ଅଭ୍ୟାସଗୁଡ଼ିକ ଅନୁକରଣ କରେ । ଘଡ଼ଘଡ଼ି, ବିଜୁଳି ଦେଖି ଯେଉଁ ପିତାମାତା ଡରନ୍ତି, ଘରରେ ବା ଅନ୍ଧାରରେ ଯିବାକୁ ବାହାରିବାକୁ ଭୟ ପ୍ରଦର୍ଶନ କରନ୍ତି, ଜନଗହଳି ରାସ୍ତା ଅତିକ୍ରମ କରିବାକୁ ପଛଘୁଞ୍ଚା ଦିଅନ୍ତି, ସେମାନଙ୍କର ସନ୍ତାନ ସନ୍ତତି ସାହସୀ ନ ହୋଇ ଏହିସବୁ ବସ୍ତୁ ପ୍ରାଣୀ ବା ଅବସ୍ଥା ପ୍ରତି ଭୟ ପ୍ରଦର୍ଶନ କରନ୍ତି । 'ପାନ, ସିଗାରେଟ ଖାଇବ ନାହିଁ, ମିଛ କହିବ ନାହିଁ' ବୋଲି ପିଲାଙ୍କୁ ଉପଦେଶ ଦେଇ ଶିକ୍ଷକ ନିଜେ ଯଦି ଶ୍ରେଣୀରେ ପକେଟରୁ ପାନ କାଢ଼ି ଖା'ନ୍ତି ବା ପିଲାଙ୍କୁ ଚୁପ୍ ହୋଇ ବସିବାକୁ କହି ଶ୍ରେଣୀରେ ନିଜେ ଢୁଳାନ୍ତି ତେବେ ପିଲା ଆଉ କଣ ଶିକ୍ଷା କରିବ ? ପିତାମାତା ବା ଭାଇ ଭଉଣୀ ଯଦି ସାମାନ୍ୟ କଥାରେ କ୍ରୋଧାନ୍ୱିତ ହୋଇ ବିଭିନ୍ନ ଅସ୍ୱାଭାବିକ ପ୍ରତିକ୍ରିୟା ପ୍ରଦର୍ଶନ କରନ୍ତି ଶିଶୁ ମଧ୍ୟ ସେହିପରି ଅଭ୍ୟାସ ଗଠନ କରିବାକୁ ଶିକ୍ଷା କରେ । ସେ ଯାହାହେଉ ମନ୍ଦ ଅଭ୍ୟାସ ଦୂର କରିବାପାଇଁ ପାରିପାର୍ଶ୍ୱିକ ଅବସ୍ଥାକୁ ପରିବର୍ତ୍ତନ କରାଯାଇପାରେ, କିନ୍ତୁ ପାରିପାର୍ଶ୍ୱିକ ଅବସ୍ଥାକୁ ସମ୍ପୂର୍ଣ୍ଣ ରୂପେ ପରିବର୍ତ୍ତନ କରିବା ଅସମ୍ଭବ ।

ଉପରୋକ୍ତ ପଦ୍ଧତିଗୁଡ଼ିକ ବ୍ୟତୀତ ବଦଳକରଣ ପଦ୍ଧତିଦ୍ୱାରା କେତେକ ମନ୍ଦ ଅଭ୍ୟାସ ଦୂର କରାଯାଇପାରେ । ଯେପରିକି ସିଗାରେଟ, ପାନ ଅଭ୍ୟାସ ଛାଡ଼ିବା ପାଇଁ ଚୁଇଙ୍ଗମ ଚୋବାଇବା ବା ସ୍ତନ୍ୟପାନ ଅଭ୍ୟାସ ଛଡ଼ାଇବାପାଇଁ ବୋତଲରେ ଦୁଧ ପିଆଇବା ଇତ୍ୟାଦି ଅଭ୍ୟାସ ଶିଶୁଠାରେ ଗଠନ କରାଯାଇପାରେ ।

## ଉପସଂହାର

ଅଭ୍ୟାସ ଗଠନ ଏକ ନିରନ୍ତର ଓ ନିରବଚ୍ଛିନ୍ନ ପ୍ରକ୍ରିୟା । ଜନ୍ମର ପ୍ରାରମ୍ଭରୁ ମୃତ୍ୟୁ ପର୍ଯ୍ୟନ୍ତ ମନୁଷ୍ୟର ଅଭ୍ୟାସ ଗଠନ ହେଉଥାଏ ଏବଂ ଆବଶ୍ୟକ ହେଲେ ଏଥିରେ ପରିବର୍ତ୍ତନ ମଧ୍ୟ ହୁଏ । ଆବଶ୍ୟକତା ଅନୁଯାୟୀ ପୁରାତନ ଅଭ୍ୟାସ ତ୍ୟାଗ କରାଯାଏ ଓ ନୂତନ ଅଭ୍ୟାସ ଉଦ୍ରେକ ହୁଏ । ପାରିପାର୍ଶ୍ୱିକ ଅବସ୍ଥା, ବିଭିନ୍ନ ଆବଶ୍ୟକତା ଓ ଶିକ୍ଷଣ ଉପରେ ଏହି ଅଭ୍ୟାସ

ଗଠନ ବହୁତ ପରିମାଣରେ ନିର୍ଭର କରିଥାଏ । ବିଶେଷକରି ଶୈଶବାବସ୍ଥାରେ ଶିଶୁର ମନ ଅତ୍ୟନ୍ତ ନମନୀୟ ଥିବାରୁ ବିଭିନ୍ନ ଅବସ୍ଥା ସହିତ ନିଜକୁ ସେ ଅତିଶୀଘ୍ର ଉପଯୋଜନ କରିପାରେ ଏବଂ ବିଭିନ୍ନ ଅଭ୍ୟାସ ଗଠନ. ବିଶେଷକରି ସରଳ ଅଭ୍ୟାସଗୁଡ଼ିକ ଅତି ସହଜରେ ଗଠିତ ହୋଇଥାଏ । ଝାଡ଼ା ପରିସ୍ରା କରିବା, ନିଜର ନିତ୍ୟକର୍ମ ସମ୍ପାଦନ କରିବା, ପୋଷାକ ପିନ୍ଧିବା, ଖାଦ୍ୟ ଖାଇବା, ବିଭିନ୍ନ ଆଗ୍ରହ ବ୍ୟବହାର ଦେଖାଇବା, ଖାଦ୍ୟାଭ୍ୟାସ, ସାମାଜିକତା ପ୍ରଭୃତି ଶିକ୍ଷା କରିବା, ଏ ସମସ୍ତ ଶିଶୁ ଅତି ଚଞ୍ଚଳ ଶିକ୍ଷା କରିଥାଏ । ଏହି ସମୟରେ ନିଜ ଅପେକ୍ଷା ଅନ୍ୟମାନଙ୍କ ଉପରେ ସେ ଅଧିକ ବିଶ୍ୱାସ ରଖିଥିବାରୁ ସେମାନଙ୍କ ଉପଦେଶ ଓ ଆଦର୍ଶକୁ ବିନାଦ୍ୱିଧାରେ ଗ୍ରହଣ କରିନେଇ ଅଭ୍ୟାସରେ ପରିଣତ କରିଦିଏ । ଶୈଶବାବସ୍ଥାରେ ବିଭିନ୍ନ ଅଭ୍ୟାସଗୁଡ଼ିକ କାଳକ୍ରମେ ତାର ବ୍ୟକ୍ତିତ୍ୱରେ ବିଭିନ୍ନ ଲକ୍ଷଣ ହିସାବରେ ପରିଚିତ ହୋଇଥାଏ । ଭଲ ଅଭ୍ୟାସ ସହିତ ପ୍ରତ୍ୟେକ ଶିଶୁ କିଛିନା କିଛି ମନ୍ଦ ଅଭ୍ୟାସର ଅଧିକାରୀ ହୋଇଥାଏ । ଅବଶ୍ୟ ଏହି ଭଲ ବା ମନ୍ଦ ଅଭ୍ୟାସର ମାତ୍ରାରେ ବ୍ୟକ୍ତିଗତ ଭିନ୍ନତା ଦେଖାଯାଏ । ଶିଶୁ ମିଠାଇ ଖାଇବା ପାଇଁ କିଛି ପଇସା ମାଗିଲା, ମା' ପଇସା ଦେଲେନାହିଁ, ମାତ୍ର ସେ ଯେତେବେଳେ କାନ୍ଦିଲା ବା ଜିଦ କଲା, ମା' ବାଧ୍ୟହୋଇ ଶିଶୁର ଦାଉରୁ ରକ୍ଷା ପାଇବାପାଇଁ ପଇସା ଦେଲେ । ଏପରି କ୍ଷେତ୍ରରେ ଶିଶୁ ଦେଖିଲା ଯେ, ଭଲ ଉପାୟରେ ପଇସା ମିଳିଲା ନାହିଁ, ମାତ୍ର ଅଝଟ କଲାରୁ ମିଳିଗଲା । ଏଠାରେ ଶିଶୁକୁ ମନ୍ଦ ପନ୍ଥାରେ କାର୍ଯ୍ୟ ହାସଲ କରିବାପାଇଁ ଉତ୍ସାହିତ କରାଗଲା । ଫଳରେ ଭବିଷ୍ୟତରେ ଶିଶୁ ସର୍ବଦା ଏହିପରି କାନ୍ଦ ଅଥବା ଅଝଟ କରି ନିଜର ଯେକୌଣସି ଆବଶ୍ୟକତା ପୂରଣ କରିବାପାଇଁ ଚେଷ୍ଟା କରିବ । ଶିଶୁର ଏହି ମନ୍ଦ ଅଭ୍ୟାସ ଗଠନ ପାଇଁ ମାତା ହିଁ ପ୍ରତ୍ୟକ୍ଷରେ ଦାୟୀ । ଯେତେ ଜିଦ ବା ଅଝଟ କରିଥିଲେ ବା କାନ୍ଦିଥିଲେ ମଧ୍ୟ ଯଦି ଶିଶୁର ଏହି ଅସାମାଜିକ କାର୍ଯ୍ୟ ପ୍ରତି କୌଣସି ଗୁରୁତ୍ୱ ଦିଆ ନ ଯାଇଥାନ୍ତା ତେବେ ସେ ବୁଝିଥାନ୍ତା ଯେ, ଆବଶ୍ୟକତା ପୂରଣ କରିବାପାଇଁ ଏପରି ବ୍ୟବହାର ସାହାଯ୍ୟ କରିବ ନାହିଁ । ଫଳରେ ସେ କିଛିସମୟ ପରେ ଆପେ ଚୁପ୍ ହୋଇଯାଇଥାନ୍ତା ।

ଶିଶୁଠାରେ କୌଣସି ମନ୍ଦ ଅଭ୍ୟାସ ଉଦ୍ରେକ ନ କରିବାକୁ ହେଲେ ପ୍ରଥମେ ଧୈର୍ଯ୍ୟ, ଆତ୍ମବିଶ୍ୱାସ ଓ ସାହସର ସହିତ ଶିଶୁର ବ୍ୟବହାରକୁ ସୁନିୟନ୍ତ୍ରିତ କରାଇବାକୁ ହେବ । ସାମୟିକ କଷ୍ଟ ବା ଜଞ୍ଜାଳରୁ ମୁକ୍ତି ପାଇବାପାଇଁ ଅନେକ କ୍ଷେତ୍ରରେ ପିତାମାତା ଯେ ଶିଶୁଠାରେ କେତେ ମନ୍ଦ ଅଭ୍ୟାସର ସୂତ୍ରପାତ କରାଇଥାନ୍ତି, ତାହା ସେମାନେ ନିଜର ବ୍ୟବହାର ଓ ବ୍ୟକ୍ତିତ୍ୱକୁ ବିଶ୍ଳେଷଣ କଲେ ସହଜରେ ଉପଲବ୍ଧି କରିପାରିବେ । ନିଜର ମନ୍ଦ ଅଭ୍ୟାସଗୁଡ଼ିକ ଶିଶୁଠାରେ ଯେପରି ଦେଖାନଦିଏ ଏବଂ ସେ ଯେପରି ଯେତେଦୂର ସମ୍ଭବ ଉତ୍ତମ ଅଭ୍ୟାସର ଅଧିକାରୀ ହୁଏ, ସେ ପ୍ରତି ତୀକ୍ଷ୍ଣ ଦୃଷ୍ଟି ଦେବା ପ୍ରତ୍ୟେକ ପିତା, ମାତା, ଗୁରୁଜନ ଓ ଶିକ୍ଷକଙ୍କର ପ୍ରଥମ ଓ ପ୍ରଧାନ କର୍ତ୍ତବ୍ୟ ହେବା ଉଚିତ । ଏଥିପାଇଁ ନିଜର ବଦ ଅଭ୍ୟାସଗୁଡ଼ିକ ଯଦି ତ୍ୟାଗ କରିବାକୁ ଅସୀମ କଷ୍ଟ ସ୍ୱୀକାର କରିବାକୁ ପଡ଼େ, ତାହା ମଧ୍ୟ କରିବା ବିଧେୟ ।

## ପଞ୍ଚମ ଅଧ୍ୟାୟ

# ସ୍ମରଣ ଓ ବିସ୍ମରଣ

ସ୍ମୃତି ଓ ସ୍ମରଣ ଶିକ୍ଷା ମନୋବିଜ୍ଞାନର ଏକ ଅତି ଗୁରୁତ୍ୱପୂର୍ଣ୍ଣ ଅଙ୍ଗ ଅଟେ । ଯେ କୌଣସି ବିଷୟ ଶିକ୍ଷା ଲାଭ କଲାବେଳେ ସାଧାରଣତଃ ଦୁଇଟି ଉଦ୍ଦେଶ୍ୟ ବା ଲକ୍ଷ୍ୟ ଥାଏ : (୧) ଜ୍ଞାନଲାଭ କରିବା, (୨) ଏହି ଜ୍ଞାନକୁ ଆବଶ୍ୟକତା ଅନୁସାରେ କାର୍ଯ୍ୟରେ ଲଗାଇବା । ମନେରଖିବା ବା ସ୍ମରଣ କରିବାର ଆବଶ୍ୟକତା ନଥିଲେ ଶିକ୍ଷଣର ମୂଲ୍ୟ ଅନେକ ପରିମାଣରେ ହ୍ରାସ ପାଇଥାନ୍ତା । ସ୍ମରଣ ମନୋବିଜ୍ଞାନର ଏକ ଅତି ପୁରାତନ କିନ୍ତୁ ଗୁରୁତ୍ୱପୂର୍ଣ୍ଣ ବିଷୟ । ସମ୍ବେଦନ, ଧ୍ୟାନ ଓ ପ୍ରତ୍ୟକ୍ଷ ପ୍ରକ୍ରିୟାଠାରୁ ଏହା ଜଟିଳ ଅଟେ ।

ପୂର୍ବକାଳରେ ମନୋବିଜ୍ଞାନୀମାନେ ମତ ଦେଇଥିଲେ ଯେ, ସ୍ମରଣଶକ୍ତି ଜନ୍ମଜାତ ଅଟେ । କିନ୍ତୁ ଅଭ୍ୟାସ ଓ ବାରମ୍ବାର ଗୋଟିଏ ବିଷୟ ଶିକ୍ଷାକରିବା ଦ୍ୱାରା ଏହି ଶକ୍ତି ବୃଦ୍ଧି ପାଇପାରେ ଏବଂ ଅଭ୍ୟାସ ନ କଲେ ହ୍ରାସ ପାଇପାରେ । ସେମାନଙ୍କ ମତରେ ଆମେ ଯାହା ଶିକ୍ଷା ବା ଅଭ୍ୟାସ କରୁ, ତାର ପ୍ରତିରୂପ ମସ୍ତିଷ୍କରେ ରହିଯାଏ । ଯେପର୍ଯ୍ୟନ୍ତ ଏ ପ୍ରତିରୂପ ରହିଥାଏ, ସେ ପର୍ଯ୍ୟନ୍ତ ଆମେ ମନେରଖିପାରୁ । ଅଭ୍ୟାସ ନ କଲେ ପ୍ରତିରୂପ ନଷ୍ଟ ହୋଇଯାଏ ଏବଂ ବିସ୍ମରଣ ଘଟେ । ଜଗତରେ ଗ୍ରନ୍ଥି ରହିଥିବାପରି ଆମେ ଯାହା ଶିକ୍ଷାକରୁ, ତାର ଗ୍ରନ୍ଥି ମସ୍ତିଷ୍କରେ ରହିଯାଏ ଏବଂ ପ୍ରତ୍ୟେକ ଘଟଣାକୁ ଏହା ଧାରଣ କରେ ।

ଆଧୁନିକ ଯୁଗର ମନୋବୈଜ୍ଞାନିକମାନେ ପୂର୍ବୋକ୍ତ ମନସ୍ତତ୍ତ୍ୱବିତ୍‌ମାନଙ୍କର ଏହି ମତବାଦକୁ ଗ୍ରହଣ ନ କରି ମତ ଦେଇଅଛନ୍ତି ଯେ ସ୍ମୃତି ଏକ ସହଜାତ ଶକ୍ତି ନୁହେଁ— ଅନ୍ୟ ଯେ କୌଣସି ମାନସିକ ପ୍ରକ୍ରିୟା, ଯଥା : ସମ୍ବେଦନ, ଶିକ୍ଷଣ, ଚିନ୍ତନ, ପ୍ରତ୍ୟକ୍ଷ ପ୍ରକ୍ରିୟା ଓ ଅଭିପ୍ରେରଣ ପରି ସ୍ମୃତି ଏକ ପ୍ରକ୍ରିୟା । ତେଣୁ ଏହାକୁ ସ୍ମୃତି ନକହି ସ୍ମରଣ କହିଲେ ଅଧିକ ଯଥାର୍ଥ ହେବ ।

**ସ୍ମରଣର ସଂଜ୍ଞା**—ସ୍ମରଣ ଏକ ଉନ୍ନତ ମାନସିକ ପ୍ରକ୍ରିୟା । ବିଭିନ୍ନ ମନୋବୈଜ୍ଞାନିକମାନଙ୍କ ମଧ୍ୟରେ ସ୍ମରଣର ସଂଜ୍ଞା ସମ୍ପର୍କରେ ମତଭେଦ ଲକ୍ଷ୍ୟ କରାଯାଏ । କେହି କେହି ଏହାକୁ ଶିଖିଥିବା ପ୍ରକ୍ରିୟାର ଆବଶ୍ୟକ ସମୟରେ ଯଥାର୍ଥ ପ୍ରତିସ୍ମରଣ ବୋଲି କହିଥାନ୍ତି । ମୁନ୍‌ଙ୍କ ମତରେ ସ୍ମରଣ ହେଉଛି ଏକ ଧାରଣଶକ୍ତି । ଉଡ୍‌ୱର୍ଥଙ୍କ ମତରେ "ସ୍ମରଣ ଏକ ମାନସିକ ପ୍ରକ୍ରିୟା, ଯାହା ଦ୍ୱାରା ଆମେ ନିଜର ଅତୀତର ଅନୁଭୂତିକୁ ବର୍ତ୍ତମାନ ଚେତନାକୁ ଆଣିଥାଉ ।" ଶିକ୍ଷା କରାଯାଇଥିବା ବିଷୟଗୁଡ଼ିକ ଆବଶ୍ୟକ ସମୟରେ ପ୍ରତିସ୍ମରଣ କରିନପାରିଲେ ବିସ୍ମରଣ ଘଟିଛି ବୋଲିବୁଝାଯାଏ । ସାଧାରଣତଃ ବ୍ୟାବହାରିକ କ୍ଷେତ୍ରରେ କୌଣସି ବିଷୟ ଶିକ୍ଷା ବା ଅଭ୍ୟାସ କରି ତାର 'ଧାରଣା'କୁ ମନେରଖିବାକୁ ସ୍ମରଣ ବୁଝାଯାଇପାରେ ।

ଜନ୍ମ ହେବା ପରଠାରୁ ମୃତ୍ୟୁଲାଭ କରିବା ପର୍ଯ୍ୟନ୍ତ ପରିବେଷ୍ଟନୀ ସହ କ୍ରିୟା ପ୍ରତିକ୍ରିୟା ଫଳରେ ବ୍ୟକ୍ତି ବହୁ ଅଭିଜ୍ଞତା ଲାଭ କରିଥାଏ, ସେଥିମଧ୍ୟରୁ ସବୁ ଅଭିଜ୍ଞତାକୁ ଧାରଣ କରିବା ତା ପକ୍ଷରେ ସମ୍ଭବ ହୁଏ ନାହିଁ । ବିଭିନ୍ନ କାରଣ ଯୋଗୁଁ କେତେକ ଅଭିଜ୍ଞତା ସେ ମନେରଖିଥାଏ ଏବଂ ଆଉ କେତେକ ଅଭିଜ୍ଞତା ସେ ଭୁଲିଯାଏ । ଏହିପରି ଭାବରେ ସ୍ମରଣ ଓ ବିସ୍ମରଣ ମାନବ ଜୀବନର ଏକ ଚିରନ୍ତନ ପ୍ରକ୍ରିୟା ରୂପେ ତାର ସମସ୍ତ କାର୍ଯ୍ୟକଳାପ ଓ ଜୀବନର ଗତିପଥକୁ ପ୍ରଭାବିତ କରିଥାଏ । ଜୀବନ ସଂଗ୍ରାମରେ ସଫଳତା ଲାଭ କରିବା ପାଇଁ ଆବଶ୍ୟକୀୟ ଶିକ୍ଷା ଓ ଅଭିଜ୍ଞତାଗୁଡ଼ିକୁ ସ୍ମରଣ କରିବା ଯେତିକି ଆବଶ୍ୟକ, ଜୀବନକୁ ସୁଖମୟ ଓ ଶାନ୍ତିମୟ କରିବାପାଇଁ ଅନାବଶ୍ୟକ, ଅଦରକାରୀ, ଅସୁଖକର ଏବଂ ଦୁଃଖଦାୟକ ଘଟଣାଗୁଡ଼ିକ ଭୁଲିଯିବା ସେତିକି ପ୍ରୟୋଜନ । ଏଣୁ ସ୍ମରଣ ଓ ବିସ୍ମରଣ ଉଭୟର ମୂଲ୍ୟ ଅପରିହାର୍ଯ୍ୟ ।

## ବିସ୍ମରଣ

ବାଳକ ଯାହା ଶିକ୍ଷା କରିଥାଏ, ଆବଶ୍ୟକ ସମୟରେ ତାର ପ୍ରୟୋଗ ସଠିକ୍‌ଭାବରେ କରିପାରିଲେ ଏହାର ଉପଯୁକ୍ତ ବିନିଯୋଗ ହୋଇଥାଏ । ମାତ୍ର ଶିଖିଥିବା ବିଷୟର ପ୍ରୟୋଗ ପ୍ରତ୍ୟାସ୍ମରଣ ହୋଇନପାରିଲେ ତାକୁ ବିସ୍ମରଣ କୁହାଯାଏ । ଏହା ବ୍ୟକ୍ତିପାଇଁ ଅଧିକାଂଶ କ୍ଷେତ୍ରରେ କ୍ଷତିକାରକ ହୋଇଥାଏ । ଅବଶ୍ୟ ଜୀବନର ସମସ୍ତ ଶିକ୍ଷଣ ଓ ଅଭିଜ୍ଞତା ସମ୍ପୂର୍ଣ୍ଣ ଭାବରେ ମନେ ରଖି ହୁଏନାହିଁ ବା ଆବଶ୍ୟକ ସମୟରେ ସ୍ମରଣ କରି ହୁଏନାହିଁ । କେତେକ ଅସୁଖକର ଅନୁଭବ ତଥା ଶିକ୍ଷଣର ବିସ୍ମରଣ ବଞ୍ଚିରହିବା ପାଇଁ ଅତ୍ୟନ୍ତ ଆବଶ୍ୟକ । କିନ୍ତୁ ବିଭିନ୍ନ ସମସ୍ୟାର ସମାଧାନ ପାଇଁ ଶିକ୍ଷଣ ପ୍ରକ୍ରିୟାର ସ୍ମରଣ ପ୍ରୟୋଜନ ।

ମନୋବୈଜ୍ଞାନିକମାନଙ୍କ ମତରେ, ମାନବ ଯାହା ଶିକ୍ଷାକଲେ ତାହାର ସମ୍ପୂର୍ଣ୍ଣରୂପେ ବିସ୍ମରଣ ଘଟେନାହିଁ । ଉଇଲିୟମ ଜେମସ୍ ଓ ବର୍ଟଙ୍କ ଅଧ୍ୟୟନ ଉପରୋକ୍ତ ମତକୁ ସମର୍ଥନ କରେ । ଶିକ୍ଷା କରିଥିବା ବିଷୟର ବହୁଭାଗ ପ୍ରାୟ ୪୦।୫୦ ବର୍ଷ ପରେ ବି ମାନବର ସ୍ମୃତିପଟରେ ରହିଥାଏ । ତେଣୁ କୁହାଯାଇପାରେ ଯେ, ଧାରଣ ଶକ୍ତିର ଅସମର୍ଥତା ଯୋଗୁଁ ବା ସ୍ନାୟୁ ତନ୍ତ୍ରର ଦୁର୍ବଳତା ଯୋଗୁଁ ବିସ୍ମରଣ ପ୍ରକ୍ରିୟା ଘଟେନାହିଁ । ବରଂ କୌଣସି କାରଣରୁ ପୂର୍ବରୁ ଶିକ୍ଷା କରିଥିବା ବିଷୟକୁ ଦରକାର ମୁତାବକ ପ୍ରତ୍ୟସ୍ମରଣ କରିବାରେ ଅସମର୍ଥ ହେଲେ ବିସ୍ମରଣ ଘଟେ ।

ଏବିନ୍‌ହସ୍‌ଙ୍କ ମତରେ ଶିକ୍ଷା କରିଥିବା ବିଷୟର ପୁନରାବୃତ୍ତି ନ କରିବା ଯୋଗୁଁ ବିସ୍ମରଣ ଘଟେ । ଶିଖିବା ଓ ପ୍ରତ୍ୟସ୍ମରଣ କରିବା ସମୟର ବ୍ୟବଧାନ ଉପରେ ବିସ୍ମରଣ ନିର୍ଭର କରେ । ଏହି ବ୍ୟବଧାନ ଯେତେ ଅଧିକ ହୁଏ ବିସ୍ମରଣ ସେତେ ଅଧିକ ହୁଏ । ଏହି ବ୍ୟବଧାନ କେତେ ପରିମାଣରେ ପ୍ରତ୍ୟସ୍ମରଣ ଅଥବା ଚିହ୍ନଟ ପ୍ରକ୍ରିୟାକୁ ପ୍ରଭାବିତ କରୁଅଛି, ତାହା ଏବିନ୍‌ହସ୍ ପରୀକ୍ଷାମୂଳକ ଭାବରେ ଅଧ୍ୟୟନ କରିଥିଲେ । ତାଙ୍କର ପରୀକ୍ଷାର ଫଳାଫଳରୁ ଜଣାଯାଏ ଯେ, ସମୟ ଅତିବାହିତ ହେବା ସଙ୍ଗେ ସଙ୍ଗେ ବିସ୍ମରଣ

ବୃଦ୍ଧି ପାଏ । ପ୍ରଥମେ ବିସ୍ମରଣ ଅଧିକମାତ୍ରାରେ ହୋଇଥାଏ । ମାତ୍ର କ୍ରମେ କ୍ରମେ ଏହି ମାତ୍ରା ହ୍ରାସପାଏ । ତାଙ୍କ ପରୀକ୍ଷାରୁ ପ୍ରାପ୍ତ ଫଳକୁ ଭିତ୍ତିକରି ବିସ୍ମରଣ ଏକ ନିଷ୍କ୍ରିୟ ପ୍ରକ୍ରିୟା ବୋଲି ସେ ମତ ଦେଇଛନ୍ତି । କିନ୍ତୁ ଏବିନ୍‌ହସ୍‌ଙ୍କର ଉପରୋକ୍ତ ମନ୍ତବ୍ୟ ଉଡ୍‌ୱାର୍ଥ, ଫ୍ରଏଡ୍, ମୁଲର୍ ଓ ପିଲଜେକର ଇତ୍ୟାଦିଙ୍କ ଦ୍ୱାରା ଖଣ୍ଡନ କରାଯାଇଅଛି । ସେମାନଙ୍କ ମତରେ ବିସ୍ମରଣ ଏକ ସକ୍ରିୟ ମାନସିକ ପ୍ରକ୍ରିୟା । ଏମାନଙ୍କ ମତରେ ଶିକ୍ଷଣ ପ୍ରକ୍ରିୟା ଓ ପ୍ରତିସ୍ମରଣ ମଧ୍ୟରେ ସମସ୍ତ ବ୍ୟବଧାନ ବିସ୍ମରଣ ପାଇଁ ଦାୟୀ ନୁହେଁ । ମାତ୍ର ଏହି ସମୟରେ ବିଷୟୀ କି ପ୍ରକାର କାର୍ଯ୍ୟରେ ଲିପ୍ତରହେ, ତାହା ବିସ୍ମରଣ ପାଇଁ ଦାୟୀ ଅଟେ । ଯଦି ଏହି ମଧ୍ୟବର୍ତ୍ତି ସମୟରେ ଅନ୍ୟ ମାନସିକ କ୍ରିୟା କରାଯାଏ, ତେବେ ଏହା ପ୍ରଥମେ ଶିକ୍ଷା କରିଥିବା ବିଷୟର ଧାରଣ ବା ସ୍ମୃତିକୁ ମସ୍ତିଷ୍କରୁ କ୍ଷୀଣ ବା ଦୁର୍ବଳ କରିଦିଏ । ଫଳରେ ବିସ୍ମରଣ ଘଟେ ବା ପ୍ରତିସ୍ମରଣ ପୂର୍ଣ୍ଣଭାବରେ ହୋଇପାରେ ନାହିଁ । ଏହି ପ୍ରକାରର ମାନସିକ ପ୍ରକ୍ରିୟାକୁ ପ୍ରତିଘାତଜନ୍ୟବାଧ କୁହାଯାଏ ।

## ବିସ୍ମରଣର କାରଣ

ପିଲା କାହିଁକି ପାଠ ମନେରଖିପାରୁନି; ଏ ସମ୍ବନ୍ଧରେ ପିତାମାତା ଓ ଶିକ୍ଷକଗଣ ଅନେକ ସମୟରେ ବ୍ୟଗ୍ରତା ପ୍ରକାଶ କରିବାର ଦେଖାଯାଇଥାଏ । ଶିଶୁମାନଙ୍କର ଉତ୍ତମ ଅଧ୍ୟୟନ ପଥରେ ବିସ୍ମରଣ ଏକ ସମସ୍ୟାରୂପେ ବାଧା ସୃଷ୍ଟି କରେ ।

ମସ୍ତିଷ୍କର ସୀମିତ ଗଠନ ଦୃଷ୍ଟିରୁ ଶିକ୍ଷା କରୁଥିବା ସମସ୍ତ ବିଷୟ ମନେରଖିବା ସମ୍ଭବ ନୁହେଁ । କେତେକ ଦୃଷ୍ଟିରୁ ଜୀବନର କେତେକ ଅପ୍ରୀତିକର, ଅପ୍ରିୟ ଘଟଣା ଭୁଲିଯିବାହିଁ ଉଚିତ । ଏ ଦୃଷ୍ଟିରୁ ଅସୁଖକର ବିସ୍ମରଣ ମାନବସମାଜ ପାଇଁ ଏକ ଆଶୀର୍ବାଦ । କିନ୍ତୁ ଆବଶ୍ୟକୀୟ ବିଷୟବସ୍ତୁଗୁଡ଼ିକ ଭୁଲିଗଲେ ଭବିଷ୍ୟତ ଶିକ୍ଷଣରେ ବାଧା ସୃଷ୍ଟି ହୁଏ ଏବଂ ବିଭିନ୍ନ କାର୍ଯ୍ୟ ସୁରୁଖୁରୁରେ ସମ୍ପାଦନ କରିହୁଏନି । ଏ ଦୃଷ୍ଟିରୁ ବିସ୍ମରଣ ପ୍ରତ୍ୟେକ ଶିଶୁ, ବାଳକ, ବାଳିକା ତଥା ଛାତ୍ରଛାତ୍ରୀଙ୍କ ପାଇଁ ଏକ ସମସ୍ୟା ।

## ମୂଳଶିକ୍ଷଣକୁ ପ୍ରଭାବିତ କରୁଥିବା ଉପାଦାନ

କୌଣସି ବିଷୟ ଶିକ୍ଷାକରିବା ସମୟରେ କେତେଗୁଡ଼ିଏ ଉପାଦାନ ଏ ଶିକ୍ଷଣକୁ ପ୍ରଭାବିତ କରିଥାନ୍ତି । ସେଗୁଡ଼ିକ ହେଲା : (୧) ଶିଖିଥିବା ବିଷୟର ସ୍ୱରୂପ, (୨) ଶିଖିଥିବା ପଦ୍ଧତି ।

## ଶିଖିଥିବା ବିଷୟର ସ୍ୱରୂପ

ବିଭିନ୍ନ ପର୍ଯ୍ୟବେକ୍ଷଣ, ଅନୁସନ୍ଧାନ ଓ ପରୀକ୍ଷଣରୁ ପ୍ରାପ୍ତ ଫଳରୁ ଅନୁମିତ ହୁଏ ଯେ ଅନ୍ୟାନ୍ୟ ଉପାଦାନ ଓ ଅବସ୍ଥା ସମାନ ଥିଲେ ଅର୍ଥପୂର୍ଣ୍ଣ ବିଷୟ ଅପେକ୍ଷା ଅର୍ଥହୀନ ବିଷୟର

ଅଧିକ ଚଞ୍ଚଳ ବିସ୍ମରଣ ଘଟେ । ଉଦାହରଣ ସ୍ୱରୂପ, ବିଗ୍ରନ୍ତ୍ର ଶବ୍ଦଟି ଯେତେ ଚଞ୍ଚଳ ମନେ ରହିବ, 'ସ୍ୱଜ' ସେତେ ଚଞ୍ଚଳ ମନେ ରହିବ ନାହିଁ । ଏହାର କାରଣ ହେଲା ଅର୍ଥହୀନ ବିଷୟ ଅତୀତର ଅନୁଭବ ସହିତ ସାହଚର୍ଯ୍ୟ ସ୍ଥାପନ କରିପାରେ ନାହିଁ । ଏପରି ନିରର୍ଥକ ବିଷୟବସ୍ତୁ କୌଣସି ମାନସିକ ପ୍ରତିବିମ୍ବ ବା ଧାରଣା ଜାତ କରାଇପାରନ୍ତି ନାହିଁ । ଏତଦ୍-ବ୍ୟତୀତ ନିରର୍ଥକ ଶବ୍ଦ ମନେ ରଖିବା ପାଇଁ ବ୍ୟକ୍ତିର କୌଣସି ଆଗ୍ରହ ପ୍ରକାଶ ପାଏ ନାହିଁ । ଏଣୁ ଅର୍ଥହୀନ ବିଷୟଗୁଡ଼ିକ ଶିକ୍ଷା କରିବା ସମୟରେ ମସ୍ତିଷ୍କରେ ଉତ୍ତମ ଗ୍ରୁପ ପଡ଼ିପାରେ ନାହିଁ ଏବଂ ଏହି କାରଣରୁ ଏହା ମସ୍ତିଷ୍କରୁ ଶୀଘ୍ର ଲୁପ୍ତ ହୋଇଯାଏ ।

ଶିଖିବାର ମାତ୍ରା ମଧ୍ୟ କୌଣସି ବିଷୟକୁ ପ୍ରଭାବିତ କରେ । ସାଧାରଣତଃ କମ୍ ମାତ୍ରାରେ ଶିଖିଥିବା ବିଷୟର ଅଧିକ ମାତ୍ରାରେ ଶିଖିଥିବା ବିଷୟ ଅପେକ୍ଷା ଶୀଘ୍ର ବିସ୍ମରଣ ଘଟେ । ଅନ୍ୟାନ୍ୟ ସମସ୍ତ ଅବସ୍ଥା ସମାନ ଥାଇ, ଜଣେ ବାଳକ ଗୋଟିଏ ବିଷୟକୁ ୧୫ ଥର ପୁନରାବୃତ୍ତି କଲେ ଏବଂ ଆଉ ଜଣେ ୫ ଥର ପୁନରାବୃତ୍ତି କଲେ ଅଧିକ ମାତ୍ରାରେ ଶିକ୍ଷଣ ଓ ଅଭ୍ୟାସ ହେତୁ ଦ୍ୱିତୀୟ ବାଳକ ଅପେକ୍ଷା ପ୍ରଥମ ବାଳକର ଅଧିକ ମନେ ରହିବ ।

ଅପ୍ରିୟ ଘଟଣା—ମନୋବୈଜ୍ଞାନିକ ଫ୍ରଏଡ୍‌ଙ୍କ ମତରେ ଅପ୍ରିୟ ଓ ଅସୁଖକର ଘଟଣାଗୁଡ଼ିକ ସୁଖକର ଅନୁଭବ ଅପେକ୍ଷା ଶୀଘ୍ର ଭୁଲି ହୋଇଯାଏ । ବଞ୍ଚି ରହିବାକୁ ହେଲେ ବ୍ୟକ୍ତିକୁ ନିଜର ଅପ୍ରିୟ ଅନୁଭୂତିଗୁଡ଼ିକୁ ଭୁଲିଯିବା ଆବଶ୍ୟକ । କାରଣ ଏସବୁ ଅସୁଖକର, ଅପ୍ରିୟ ଅନୁଭୂତି ଚେତନ ମନରେ ରହି ବ୍ୟକ୍ତିକୁ ଅତ୍ୟନ୍ତ କଷ୍ଟ ଓ ଦୁଃଖ ଦିଏ । ଏହି କାରଣରୁ ସେହି ସବୁ ଅସୁଖକର ଅଭିଜ୍ଞତା ଗୁଡ଼ିକୁ ଅଚେତନ ମନରେ ଅବଦମିତ କରି ଦିଆଯାଏ ଓ ଆମେ ଭୁଲିଯାଉ । ଜାରସିଲଡ୍‌ଙ୍କ ପରୀକ୍ଷାରୁ ଏହା ପ୍ରମାଣିତ ହୋଇଅଛି । କିନ୍ତୁ ବ୍ୟକ୍ତିଗତ ଅଭିଜ୍ଞତାରୁ ଅନେକ କ୍ଷେତ୍ରରେ ଲକ୍ଷ୍ୟ କରାଯାଇଥାଏ ଯେ ବେଳେବେଳେ କେତେଗୁଡ଼ିଏ ଅପ୍ରିୟ ଘଟଣା, ଯାହାକି ଅତ୍ୟଧିକ ପରିମାଣରେ ଆବେଗିକ ଅନୁଭବ ସହ ଜଡ଼ିତ ହୋଇଥାଏ, ଯଥା : ପିତାମାତାଙ୍କ ମୃତ୍ୟୁର ଦୃଶ୍ୟ, କୌଣସି ଭୟାନକ ଦୁର୍ଘଟଣା ବା ଶୈଶବାବସ୍ଥାର ଅତିରିକ୍ତ ଶାରୀରିକ ଦଣ୍ଡ ଅନେକ କାଳ ଧରି ମନେ ରହିଥାଏ । ଏହା ସ୍ୱାଭାବିକ ଅବସ୍ଥାର ଏକ ବ୍ୟତିକ୍ରମ ବୋଲି କହିବାକୁ ହେବ ।

ଏକ ସଂପରୀକ୍ଷାରେ ଗୋଟିଏ ବିଷୟ ଶିକ୍ଷା କରୁଥିଲାବେଳେ ହଠାତ୍ ଆଲୋକ ଲିଭିଗଲା । ଚତୁର୍ଦ୍ଦିଗରୁ ଭୀଷଣ ଶବ୍ଦ ହେଲା, ବିଷୟୀମାନଙ୍କର ଚଉକି ଓ ଟେବୁଲ ହଲିବାକୁ ଲାଗିଲା । ଏପରି ଅବସ୍ଥାରେ ବିବ୍ରତ ହୋଇ ସେମାନେ ଶିକ୍ଷା ବିଷୟ ଧାରଣ କରିନପାରିବାରୁ ଶୀଘ୍ର ବିସ୍ମରଣ ଘଟିଲା ।

## ଶିଖିବା ପଦ୍ଧତି

ଏହା ଉପରେ ମଧ୍ୟ ବିସ୍ମରଣର ପରିମାଣ ନିର୍ଭର କରେ । ଏବିନ୍‌ହସ୍‌ଙ୍କ ସଂପରୀକ୍ଷାରୁ ପ୍ରମାଣିତ ହୋଇଛି ଯେ, ଅବିରାମ ଗତିରେ ଶିଖିଥିବା ବିଷୟ, ବିରାମ ଗତିରେ ଶିଖିଥିବା

ବିଷୟ ଅପେକ୍ଷା ଶୀଘ୍ର ଭୁଲିହୋଇଯାଏ । ହୋଭଲଣ୍ଡଙ୍କ ସଂପରୀକ୍ଷାର ଫଳାଫଳ ଉପରୋକ୍ତ ମତକୁ ସମର୍ଥନ କରନ୍ତି । ବିରାମ ପଦ୍ଧତିରେ ଶିକ୍ଷା କଲେ ବିଷୟବସ୍ତୁ ମସ୍ତିଷ୍କରେ ସୁଦୃଢ଼ ଓ ଶକ୍ତ ହେବା ପାଇଁ ସମୟ ପାଏ । ବିଶ୍ରାମ ଯୋଗୁ କ୍ଳାନ୍ତି ଓ ଅବସାଦ ଦୂର ହୁଏ, ଅଭ୍ୟନ୍ତରୀଣ ତଥା ଆନ୍ତଃକ୍ଷେତ୍ରର ବାଧା ଜାତ ହୁଏ ନାହିଁ । ଅବିରାମ ପଦ୍ଧତିରେ ଶିକ୍ଷା କଲେ ଉପରୋକ୍ତ ସୁଯୋଗ ମିଳେ ନାହିଁ । ଏଣୁ ଅଧିକ ବିସ୍ମରଣ ଘଟେ ।

ସାଧାରଣତଃ ବିଭିନ୍ନ ସଂପରୀକ୍ଷାର ଫଳାଫଳରୁ ଜଣାଯାଏ ଯେ, ପୂର୍ଣ୍ଣ ପଦ୍ଧତି ଅପେକ୍ଷା ଆଂଶିକ ପଦ୍ଧତି ସ୍ମରଣରେ ଅଧିକ ସାହାଯ୍ୟ କରେ । କାରଣସ୍ୱରୂପ କୁହାଯାଇ-ପାରେ ଯେ, ବିଷୟଟି ସଂକ୍ଷିପ୍ତ ହେବାଦ୍ୱାରା ଏହାକୁ ସ୍ୱଳ୍ପ ସମୟ ମଧ୍ୟରେ ଶିଖି ହୋଇ-ଯାଏ, କ୍ଳାନ୍ତି ଓ ଅବସାଦ ଜାତ ହୁଏ ନାହିଁ । ଗୋଟିଏ ଅଂଶ ଶିକ୍ଷା କରିବା ପରେ ଆଉ ଗୋଟିଏ ଅଂଶ ଶିକ୍ଷା କରିବା ଦ୍ୱାରା ପ୍ରତ୍ୟେକ ଅଂଶ ମସ୍ତିଷ୍କରେ ସୁଦୃଢ଼ ରୂପେ ଧାରଣ ହୁଏ ଓ ଗୋଳମାଳ ହେବାର ସମ୍ଭାବନା କମ୍ ରହେ । ଅବଶ୍ୟ କ୍ଷୁଦ୍ର ବିଷୟକୁ ଭାଗ ଭାଗ କରି ଶିକ୍ଷା କରିବାରେ କୌଣସି ଯଥାର୍ଥତା ନ ଥାଏ ।

ଏତଦ୍‌ବ୍ୟତୀତ ବିସ୍ମରଣର ଅନ୍ୟ କେତେକ କାରଣ ମଧ୍ୟ ରହିଛି :—

## ସ୍ୱତଃ ପୁନରାବୃତ୍ତିର ଅଭାବ

ଯେକୌଣସି ବିଷୟ ଶିକ୍ଷା କରି ସାରିବା ପରେ ମଝିରେ ଏହାକୁ ପୁନରାବୃତ୍ତି ଓ ଅଭ୍ୟାସ ନ କଲେ ତାହାର କ୍ରମଶଃ ବିସ୍ମରଣ ଘଟେ । ଏହା ଗେଟ୍‌ସଙ୍କ ସଂପରୀକ୍ଷାରୁ ପ୍ରମାଣିତ ହୋଇଅଛି ।

**ଉଦ୍ଦେଶ୍ୟହୀନ ଓ କଷ୍ଟକର ଶିକ୍ଷଣ**—ଉଦ୍ଦେଶ୍ୟ ଓ ଅଭିପ୍ରେରଣ ଥାଇ କୌଣସି ବିଷୟ ଶିକ୍ଷା କଲେ ବା କୌଣସି ଲକ୍ଷ୍ୟ ହାସଲ କରିବା ପାଇଁ ଶିକ୍ଷାକଲେ ତାହାଉଦ୍ଦେଶ୍ୟ-ହୀନ ଶିକ୍ଷଣ ଅପେକ୍ଷା ଅଧିକ କାଳ ମନେ ରହେ । ଉଦାହରଣ ସ୍ୱରୂପ ପରୀକ୍ଷାରେ ଗୋଟିଏ ନିର୍ଦ୍ଦିଷ୍ଟ ବିଷୟରୁ ପ୍ରଶ୍ନ ଆସିଛି ବୋଲି ଜାଣିସାରିବା ପରେ ତାକୁ ପାଠ କଲେ ପରୀକ୍ଷାରେ ପଡ଼ି ନ ଥିବା ଅନ୍ୟ ଏକ ବିଷୟ ଅପେକ୍ଷା ତାହା ଅଧିକ ମନେରହେ ।

**ଆବୃତ୍ତିଜନିତ ସ୍ମୃତି**—ଏହା ପ୍ରାୟ ସମସ୍ତେ ଜାଣନ୍ତି ଯେ, ଯେଉଁ ବିଷୟକୁ ନବୁଝି କେବଳ ମନେରଖିବା ଉଦ୍ଦେଶ୍ୟରେ ମୁଖସ୍ଥ କରାଯାଏ, ତାହା ବିଷୟଟିକୁ ବୁଝି ମନେରଖିବା ବିଷୟ ଅପେକ୍ଷା କମ୍ ମନେରହେ । ଏହି କାରଣରୁ କିଛି ନ ବୁଝି କେବଳ ପରୀକ୍ଷା ପାଇଁ ମୁଖସ୍ଥ କଲେ ତାହା ପରୀକ୍ଷା ପରେ ପରେ ସ୍ମୃତିପଟରୁ ଲୋପ ପାଇଯାଏ ।

**ଧାରଣ ଅବଧିକୁ ପ୍ରଭାବିତ କରୁଥିବା ଉପାଦାନ**—କେତେକ ମନୋ-ବୈଜ୍ଞାନିକଙ୍କ ମତରେ ଶିଖିଥିବା ବିଷୟ ଓ ପ୍ରତ୍ୟାସ୍ମରଣ କରିବା ମଧ୍ୟରେ ଅନେକ କାଳ

ବଢିଗଲେ ବିସ୍ମରଣ ଘଟେ । ମାତ୍ର ବିସ୍ମରଣର ଏହି କାରଣ ଆଧୁନିକ ମନୋବୈଜ୍ଞାନିକ-ମାନଙ୍କଦ୍ୱାରା ଗ୍ରହଣୀୟ ହୋଇନାହିଁ । ସେମାନଙ୍କ ମତରେ ଧାରଣ ଅବଧି ସମୟ ବିସ୍ମରଣ ପାଇଁ ଯେତେ ଗୁରୁତ୍ୱପୂର୍ଣ୍ଣ ନୁହେଁ, ଏହି ସମୟ ମଧ୍ୟରେ ବ୍ୟକ୍ତି କେଉଁ କାର୍ଯ୍ୟରେ ଲିପ୍ତ ରହେ, କି କି କାର୍ଯ୍ୟ କରେ, ତାହା ଅଧିକ ଗୁରୁତ୍ୱପୂର୍ଣ୍ଣ ଅଟେ ।

ଶିଖିବା ପରେ ବିଶ୍ରାମ ନେବା—କୌଣସି ବିଷୟ ଶିକ୍ଷା କରିବା ପରେ ବିଶ୍ରାମ ନକଲେ କିମ୍ବା ଅନ୍ୟ କୌଣସି ଲଘୁ କାର୍ଯ୍ୟରେ ନିଜକୁ ନିୟୋଜିତ ନ କଲେ ଶିଖିଥିବା ବିଷୟର ଧାରଣା ଦୃଢ଼ୀଭୂତ ହୁଏ ନାହିଁ । ଅନ୍ୟ ପକ୍ଷରେ ସେହି ବିଷୟର ସ୍ମୃତି କ୍ରମେ କ୍ଷୀଣରୁ କ୍ଷୀଣତର ହୁଏ । ଏହାର କାରଣ ହେଲା, ପୂର୍ବରୁ ଅନୁଭୂତ ଉପଯୁକ୍ତ ଭାବରେ ମସ୍ତିଷ୍କରେ ନିବେଶିତ ହେବା ପୂର୍ବରୁ ଅନ୍ୟ ଏକ ବିଷୟ ଶିକ୍ଷା କଲେ ବିଷୟର ଧାରଣା ପୂର୍ବର ଅନୁଭୂତକୁ ମସ୍ତିଷ୍କରେ ଧାରଣ କରିବା ପାଇଁ ବାଧାଦିଏ ।

ଜେନ୍‌କିନସ୍ ଓ ଡାଲେନ୍‌ବାଚ କେତେକ ସଂପରୀକ୍ଷା କରି ପ୍ରମାଣ କରିପାରିଛନ୍ତି ଯେ, ପୂର୍ବ ଅନୁଭୂତ ବର୍ତ୍ତମାନ ଶିକ୍ଷଣ ବିଷୟକୁ ଯେତିକି ବାଧା ଦିଏ, ପରବର୍ତ୍ତୀ କାଳରେ ହେଉଥିବା ସ୍ମୃତି ତା ଠାରୁ ଅଧିକ ବାଧା ଦିଏ । ସୁତରାଂ କୌଣସି ବିଷୟ ଶିକ୍ଷା କରି ସାରିବା ପରେ ବିଶ୍ରାମ ନ ନେଲେ ଏହି ସମୟରେ କରାଯାଉଥିବା ଅନ୍ୟ ମାନସିକ କ୍ରିୟାର ପ୍ରଭାବରେ ପୂର୍ବରୁ ଶିଖିଥିବା ବିଷୟର ବିସ୍ମରଣ ଘଟେ ।

**ପ୍ରତିଘାତ ଜନିତ ବାଧା**

ସ୍ୱକୀୟ ପରୀକ୍ଷାର ଫଳାଫଳ ଉପରେ ଭିତ୍ତିକରି ମୁଲର୍ ଓ ପିଲଜେକର ମତବ୍ୟକ୍ତ କରିଅଛନ୍ତି ଯେ ଅନ୍ୟାନ୍ୟ କୌଣସି ଅବସ୍ଥାର ପରିବର୍ତ୍ତନ ନ ଘଟିଲେ ପ୍ରତିଘାତ ଜନିତ ବାଧା ବିସ୍ମରଣର ମୁଖ୍ୟ କାରଣ ହୋଇଥାଏ ।

କୌଣସି ବିଷୟ ଶିକ୍ଷା କରିବା ଓ ତାହାକୁ ପ୍ରତ୍ୟାସ୍ମରଣ କରିବାର ମଧ୍ୟବର୍ତ୍ତୀ ସମୟକୁ ଧାରଣ ଅବଧି କୁହାଯାଏ । ଏହି ସମୟରେ ଅନ୍ୟ କିଛି ବିଷୟ ଶିକ୍ଷା କଲେ, ତାହା ପ୍ରଥମେ ଶିଖିଥିବା ବିଷୟର ଧାରଣକୁ ଗଣ୍ଡଗୋଳ କରେ । ଫଳରେ ପ୍ରଥମେ ଶିଖିଥିବା ବିଷୟର ପ୍ରତ୍ୟାସ୍ମରଣରେ ବାଧା ଉପୁଜେ । ଏହି ଅବରୋଧକୁ ପ୍ରତିଘାତ ଜନିତ ବାଧା କୁହାଯାଏ ।

ଉଦାହରଣ ସ୍ୱରୂପ "କ"କୁ କୌଣସି ବିଷୟ ଶିଖାଇବା ପରେ ୧ ଘଣ୍ଟା ବିଶ୍ରାମ ଦିଆଗଲା—ଦ୍ୱିତୀୟ ଅବସ୍ଥାରେ ସେହି ବ୍ୟକ୍ତିକୁ ସମାନ ପ୍ରକାରର ଆଉ ଏକ ବିଷୟ ଶିଖାଇବା ପରେ କୌଣସି ବିଶ୍ରାମ ନଦିଆଯାଇ ୧ ଘଣ୍ଟା ପାଇଁ ଅନ୍ୟ ଏକ ବିଷୟ ଶିଖିବାକୁ ଦିଆଗଲା । ଏହାପରେ ଉଭୟ ଅବସ୍ଥାରେ ପ୍ରଥମେ ଶିଖିଥିବା ବିଷୟକୁ ପ୍ରତ୍ୟାସ୍ମରଣ କଲେ ଦ୍ୱିତୀୟ ଅବସ୍ଥାରେ ପ୍ରତ୍ୟାସ୍ମରଣର ମାତ୍ରା ପ୍ରଥମ ଅବସ୍ଥା ଅପେକ୍ଷା କମ୍ ହେବ ।

ଏହାର କାରଣ ସ୍ୱରୂପ କୁହାଯାଇପାରେ ଯେ, ପ୍ରଥମ ଅବସ୍ଥାରେ ଶିକ୍ଷଣ ପରେ ବିଶ୍ରାମ ନେଉଥିବାରୁ ଧାରଣ କ୍ରିୟା ଉପରେ କୌଣସି ବାଧା ପଡ଼େନାହିଁ । କିନ୍ତୁ ଦ୍ୱିତୀୟ ଅବସ୍ଥାରେ ଧାରଣ ଅବଧିରେ ଅନ୍ୟ ଏକ ବିଷୟ ଶିକ୍ଷା କରୁଥିବାରୁ ଏହି ଶିକ୍ଷଣ ପୂର୍ବ ଶିକ୍ଷଣର ସ୍ମରଣକୁ ବ୍ୟାହତ କରେ । ଏହି ବ୍ୟାହତକୁ ପ୍ରତିଘାତଜନ୍ୟବାଧ କୁହାଯାଏ ।

### ଶିଖିବା ପରେ ନ ଶୋଇ ଅନ୍ୟ କାର୍ଯ୍ୟ କରିବା

କୌଣସି ବିଷୟ ଶିକ୍ଷା କଲାପରେ ନିଦ୍ରାଗଲେ ପ୍ରାୟ ସମ୍ପୂର୍ଣ୍ଣ ବିଶ୍ରାମ ନେଇହୁଏ । ଅବଶ୍ୟ ଅଧିକାଂଶ କ୍ଷେତ୍ରରେ ନିଦ୍ରାକୁ ପୂର୍ଣ୍ଣ ବିଶ୍ରାମ କୁହାଯାଇ ନପାରେ । କାରଣ ବିଛଣାରେ ପଡ଼ିବା କ୍ଷଣି ନିଦ୍ରା ଆସେ ନାହିଁ । ସେ ମଧ୍ୟରେ ଜାଗ୍ରତ ଅବସ୍ଥାରେ ନାନା ପ୍ରକାର ମାନସିକ କ୍ରିୟାକଲାପ କରିବା ଦ୍ୱାରା ଶିକ୍ଷଣ ବ୍ୟାହତ ହୁଏ । ଫଳରେ ବିସ୍ମରଣ ଘଟେ । କିନ୍ତୁ ଶିକ୍ଷା କରି ସାରିବା ପରେ ନିଦ୍ରା ଗଲେ ବିସ୍ମରଣ ପରିମାଣ ହ୍ରାସପାଏ ।

### ପ୍ରକ୍ଷୋଭ ଉତ୍ପାଦନକାରୀ ପରିସ୍ଥିତି

ହାର୍ଟିନଙ୍କ ପରୀକ୍ଷାର ଫଳାଫଳରୁ ଅନୁମିତ ହୁଏ ଯେ, କୌଣସି ବିଷୟକୁ ଶିକ୍ଷା କରିବା କିମ୍ବା ତାହାକୁ ପ୍ରତ୍ୟାସ୍ମରଣ କରିବାର ଅବଧିରେ ଯଦି ଶିଖୁଥିବା ବ୍ୟକ୍ତି ଆବେଗାତ୍ମକ ପରିସ୍ଥିତିର ସମ୍ମୁଖୀନ ହୁଏ, ତେବେ ଆବେଗଜନିତ ଆଘାତ ସ୍ମୃତି ଚିହ୍ନକୁ ଦୁର୍ବଳ ଓ ଅସ୍ପଷ୍ଟ କରିଦିଏ । ଏହି କାରଣରୁ ଶିଖିବା ବିଷୟରେ ବିସ୍ମରଣ ଘଟେ ।

ମସ୍ତିଷ୍କରେ ଆଘାତ—ଶରୀର ତତ୍ତ୍ୱବିତ୍ମାନଙ୍କ ମତରେ କୌଣସି ବିଷୟ ଶିଖିବା ପରେ ଯଦି ମସ୍ତିଷ୍କରେ ଆଘାତ ହୁଏ, ତେବେ ଅନେକାଂଶରେ ସେହି ବିଷୟକୁ ଭୁଲି ହୋଇଯାଏ ।

ଉପରୋକ୍ତ କାରଣ ବ୍ୟତୀତ ପ୍ରତ୍ୟାସ୍ମରଣ ସମୟରେ କେତେକ କାରଣ ମଧ୍ୟ ବିସ୍ମରଣକୁ ପ୍ରଭାବିତ କରଥାଏ ।

### ୧ । ସମାନ ଧରଣର ବିଷୟବସ୍ତୁର ସ୍ମରଣ ଜନିତ ବାଧା

ଶିଖିଥିବା ବିଷୟ ପରି ଯଦି ଆଉ କୌଣସି ସ୍ମୃତି ପୂର୍ବରୁ ଥାଏ ତେବେ ତାହା ପ୍ରତ୍ୟାସ୍ମରଣରେ ଗଣ୍ଡଗୋଳ ସୃଷ୍ଟି କରେ । ଯେପରିକି ରମେଶ ଶବ୍ଦକୁ ମନେ ପକାଇବା ବେଳେ ଉମେଶ, ନରେଶ, ଦିନେଶ ନାମ ସେମାନଙ୍କ ମଧ୍ୟରେ ସାମଞ୍ଜସ୍ୟ ଯୋଗୁ ବାଧା ଜନ୍ମାଏ ।

## ୬ । ପ୍ରତ୍ୟାସ୍ମରଣ କରିବାର ଉଦ୍ଦେଶ୍ୟର ଅଭାବ

ପ୍ରତ୍ୟାସ୍ମରଣ କରିବାର ଇଚ୍ଛା ଓ ଆଗ୍ରହର ଅଭାବ ଥିଲେ ପୂର୍ବରୁ ଶିଖିଥିବା ବିଷୟ ସ୍ମୃତିପଟରେ ଥିଲେ ମଧ୍ୟ ବିଷୟୀ ତାହାକୁ ସମ୍ପୂର୍ଣ୍ଣ ରୂପେ ପ୍ରତ୍ୟାସ୍ମରଣ କରିପାରେ ନାହିଁ । ଯେପରିକି ଶିକ୍ଷକ ପ୍ରତ୍ୟହ ଶ୍ରେଣୀରେ ଉପସ୍ଥାନ ନେଲାବେଳେ ଛାତ୍ରଛାତ୍ରୀଙ୍କର ରୋଲ ନମ୍ବର ଡାକନ୍ତି, କିନ୍ତୁ ତାଙ୍କର ମନେରଖିବାର ଇଚ୍ଛା ନଥିଲେ କେଉଁ ପିଲାର କେଉଁ ରୋଲନମ୍ବର ତାହା ସେ କହିପାରନ୍ତି ନାହିଁ ।

### ସ୍ମୃତିର ବିକାଶ

ସ୍ମୃତିର ବିକାଶ ସହ ଶିଶୁ ପଛର ଅନୁଭୂତିକୁ ଧାରଣ କରିପାରେ ଏବଂ ଅଭ୍ୟାସ ନକରି ଏହାକୁ ପ୍ରୟୋଗ କରିପାରେ—ନିଜ ଜୀବନର ବାଲ୍ୟକାଳର ଇତିହାସକୁ ଶିଶୁ ସ୍ମୃତି ଶକ୍ତି ସାହାଯ୍ୟରେ ମନେରଖିପାରେ । ବର୍ତ୍ତମାନ ଓ ଅତୀତ ଜୀବନ ମଧ୍ୟରେ ଯୋଗ-ସୂତ୍ର ସ୍ଥାପନ କରିବା ପାଇଁ ସ୍ମୃତି ମଧ୍ୟ ସାହାଯ୍ୟ କରେ ।

ଜୀବନର ପ୍ରାରମ୍ଭିକ ବର୍ଷମାନଙ୍କରେ ଶିଶୁ ଅନେକ ପ୍ରକାରର ଦୈନନ୍ଦିନ ଘଟଣାବଳୀକୁ ଭୁଲିଯାଏ, ତେବେ କଥା କହି ଶିଖିବା ପୂର୍ବରୁ ଯେତେବେଳେ ସଦ୍ୟଜାତ ଶିଶୁ ଜଣାଶୁଣା ଓ ଚିହ୍ନାପରିଚିତ ବ୍ୟକ୍ତିଙ୍କୁ ଦେଖି ଚୁପ୍ ହୋଇଯାଏ ଏବଂ ତାଙ୍କ କୋଳକୁ ଯିବା ପାଇଁ ପ୍ରସ୍ତୁତ ହୋଇ ସେ ଆଡ଼କୁ ହାତ ଗୋଡ଼ ଟେକି ପ୍ରତୀକ୍ଷା କରେ, ସେତେବେଳେ ତାର ସ୍ମୃତି ଶକ୍ତିର ପରିଚୟ ସର୍ବପ୍ରଥମେ ମିଳେ । ଏହି ସ୍ମୃତି ସାହାଯ୍ୟରେ ଶିଶୁ ପରିଚିତ ଓ ଅପରିଚିତ ବ୍ୟକ୍ତିମାନଙ୍କ ମଧ୍ୟରେ ପ୍ରଭେଦ ଜାଣିପାରେ ।

କେତେକ ବୈଜ୍ଞାନିକଙ୍କ ମତରେ କୌଣସି କୌଣସି ବ୍ୟକ୍ତି ନିଜର ଜନ୍ମ ସମୟର ଘଟଣା ମଧ୍ୟ ମନେରଖିପାରେ । ଏ ସମ୍ବନ୍ଧରେ ଯେଉଁ ଅଧ୍ୟୟନ କରାଯାଇଛି, ସେଥିରୁ ଜଣାଯାଏ ଯେ ଏକ ସାଧାରଣ ବ୍ୟକ୍ତି ନିଜ ବୟସର ୩ ବା ସାଢ଼େ ତିନିବର୍ଷ ସମୟର ଘଟଣାକୁ ମନେରଖିପାରେ । କିନ୍ତୁ ଏହା ପୂର୍ବର କଥା ମନେରଖିପାରେ ବୋଲି କୌଣସି ପ୍ରମାଣ ମିଳିନାହିଁ ।

ଏହାର କେତେଗୁଡ଼ିଏ କାରଣ ରହିଛି । ବୟସ୍କମାନଙ୍କଠାରେ ଅଧିକାଂଶ ବିଷୟବସ୍ତୁ ସ୍ମୃତି ପ୍ରତିମା ରୂପରେ କାର୍ଯ୍ୟ କରନ୍ତି । ମାତ୍ର ବାଳକମାନଙ୍କଠାରେ ଏହି ଯୋଗ୍ୟତା ଅନେକ ଡେରିରେ ଉତ୍ପନ୍ନ ହୁଏ । ଏହି କାରଣରୁ ବାଲ୍ୟାବସ୍ଥାର ଘଟଣାବଳୀ ବହୁତ କମ୍ ମନେରହେ ।

ଦ୍ୱିତୀୟତଃ, ଅଧିକାଂଶ ସ୍ମରଣ ଭାବନାବଳୀ ବା ଆବେଗାତ୍ମକ ଘଟଣାକୁ ନେଇ ହୋଇଥିବାରୁ ଭାବର ପୁନରାବୃତ୍ତି ହୋଇପାରେନା । ଏଥିପାଇଁ ବାଲ୍ୟାବସ୍ଥାର ଅଧିକାଂଶ ଘଟଣାବଳୀ ଭୁଲ ହୋଇଯାଏ ।

ତୃତୀୟତଃ ବୟସ୍କମାନଙ୍କ ସ୍ମରଣରେ ଭାଷା ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରେ । କିନ୍ତୁ ଛୋଟ ଶିଶୁର ଏ ଯୋଗ୍ୟତା ନଥାଏ ଏବଂ ସେ ନିଜର ଅନୁଭବକୁ ପୁନରାବୃତ୍ତି କରିପାରେ ନାହିଁ । ବ୍ୟକ୍ତିର ପ୍ରାରମ୍ଭିକ ସ୍ମୃତିମାନଙ୍କରେ ଭାବାତ୍ମକ ଅନୁଭବର ବିଶେଷ ମହତ୍ତ୍ୱ ଥାଏ । ବାଲ୍ୟକାଳର ସ୍ମୃତିମାନଙ୍କୁ ବିଶ୍ଳେଷଣ କଲେ ଜଣାଯାଏ ଯେ, ଭୟ ସମ୍ବନ୍ଧୀୟ ଘଟଣାବଳୀ ସର୍ବାଧିକ ମନେ ରହେ । ଏହାପରେ ପ୍ରସନ୍ନତା ଓ କ୍ରୋଧ ଆସେ । ଅନ୍ୟାନ୍ୟ ସମ୍ବେଗମାନଙ୍କ ମଧ୍ୟରେ ଆଶ୍ଚର୍ଯ୍ୟ, ଦୁଃଖ ଓ ନୈରାଶ୍ୟଜନିତ ଘଟଣାବଳୀ ଅଧିକ ମନେରହେ । କେତେକ ଅଧିକାଂଶ ଦୁଃଖଦାୟକ ଘଟଣାକୁ ଅଧିକ ମନେ ରଖୁଥିବା ସ୍ଥଳେ ସାଧାରଣତଃ ବ୍ୟକ୍ତିର ଦୁଃଖଦାୟକ, ଅସୁଖକର ଘଟଣାଗୁଡ଼ିକର ଅଚେତନ ମନରେ ଅବଦମିତ ହେବାଦ୍ୱାରା ବିସ୍ମରଣ ଅଧିକ ଘଟେ । ଏହା ଫ୍ରଏଡ୍, ମେଲଟ୍‌ଜର ଇତ୍ୟାଦିଙ୍କର ଅଧ୍ୟୟନରୁ ସ୍ପଷ୍ଟ ପ୍ରମାଣିତ ହୋଇଅଛି ।

ଏକ ଅଧ୍ୟୟନରେ ବୟସ୍କମାନଙ୍କୁ ନିଜର ବାଲ୍ୟକାଳର ଘଟଣାବଳୀକୁ ସ୍ମରଣ କରିବାକୁ କୁହାଗଲା । ଦେଖାଗଲା ଯେ, ଅଧିକାଂଶ ବୟସ୍କ ବ୍ୟକ୍ତିଙ୍କର ସ୍ମରଣ ଠିକ୍ ହୋଇନଥିଲା । କାରଣ ସେମାନଙ୍କର ସ୍ମୃତି ସେତେବେଳେ ଉଚିତ ଢଙ୍ଗରେ ବିକଶିତ ହୋଇନଥିଲା । ଦ୍ୱିତୀୟତଃ ବାଳକମାନଙ୍କଠାରୁ ବୟସ୍କମାନଙ୍କ ଦୃଷ୍ଟିକୋଣ ସ୍ୱତନ୍ତ୍ର ଅଟେ । ବାଳକ ଗୋଟିଏ ଘଟଣାର ଅର୍ଥ ଯେପରି ଭାବରେ ବୁଝେ ବା ତା ପାଇଁ ଘଟଣାର ମହତ୍ତ୍ୱ ଯାହା, ବୟସ୍କମାନଙ୍କଠାରେ ତାହା ଦେଖିବାକୁ ମିଳେନାହିଁ ।

କୌଣସି ଘଟଣାର ସ୍ୱରୂପ ଓ ତାର ପ୍ରତ୍ୟକ୍ଷୀକରଣ ସେହି ବ୍ୟକ୍ତିର ମନୋବୃତ୍ତି ଓ ତାର ଦୃଷ୍ଟିକୋଣ ଉପରେ ନିର୍ଭର କରେ । ବ୍ୟକ୍ତିର ସ୍ୱଭାବ ମଧ୍ୟ ସ୍ମୃତିର ବିକାଶରେ ଅନେକ ପ୍ରଭାବ ପକାଇଥାଏ । ବ୍ୟକ୍ତିମାନଙ୍କର ମନୋଭାବ ଓ ଦୃଷ୍ଟିକୋଣର ପରିବର୍ତ୍ତନ ସହିତ ସ୍ମୃତି ପ୍ରଭାବିତ ତଥା ପରିବର୍ତ୍ତିତ ହେଉଥାଏ ।

ଏହା ଅବଶ୍ୟ ସତ୍ୟ ଯେ, ବାଲ୍ୟକାଳର ଘଟଣାବଳୀ ଠିକ୍ ଠିକ୍ ମନେ ନରହିଲେ ମଧ୍ୟ ଏହାର ପ୍ରଭାବ ବାଳକର ମନ ଓ ବ୍ୟବହାର ଉପରେ ପଡ଼ିଥାଏ । ଜେମସ୍ ଓ ବର୍ଟଙ୍କର ପ୍ରୟୋଗରୁ ଜଣାଯାଏ ଯେ, ପ୍ରାୟ ୪୦ ବର୍ଷ ପୂର୍ବେ ମନେ ରଖିଥିବା କବିତା ଇତ୍ୟାଦିର ସ୍ମୃତି କୌଣସି ପ୍ରକାରରେ ସ୍ମୃତି ପଟରେ ରହିଥାଏ ଏବଂ ଏହାକୁ ମନେ କରିବାକୁ ସମୟ ଓ ଅଭ୍ୟାସ କମ୍ ଲାଗେ ।

ବ୍ୟକ୍ତିର ସ୍ମୃତିକୁ ବିଶ୍ଳେଷଣ କଲେ ତାର ବ୍ୟକ୍ତିତ୍ୱର ବିକାଶକୁ ବୁଝିବାରେ ସୁବିଧା ହୁଏ । ଏହି ସ୍ମୃତିକୁ ଆମେ ତାର ଜୀବନଧାରାର ଏକ ବିଶେଷ ମହତ୍ତ୍ୱପୂର୍ଣ୍ଣ ଅଙ୍ଗ ବୋଲି ବୁଝିବା ଉଚିତ । ବର୍ତ୍ତମାନ ଓ ଅତୀତ ଏହା ମଧ୍ୟରେ ପାର୍ଥକ୍ୟ ଦେଖିବା ଉଚିତ ନୁହେଁ । କାରଣ ବ୍ୟକ୍ତିର ଅତୀତ ଜୀବନରୁ ବର୍ତ୍ତମାନ ଜୀବନ ନୂତନ ରୂପ ପ୍ରାପ୍ତ କରେ ଏବଂ ଅତୀତ ଜୀବନ ଉପରେ ଆଧାରିତ ହୋଇ ବର୍ତ୍ତମାନ ଜୀବନ ପ୍ରସ୍ତୁତ ହୁଏ । ଏହିପରି ଭାବରେ ବ୍ୟକ୍ତିର ସ୍ମୃତିକୁ ନୂତନ ଢଙ୍ଗରେ ବିଶ୍ଳେଷଣ କରି ତାର ବ୍ୟକ୍ତିତ୍ୱ ସମ୍ପର୍କରେ ଧାରଣା କରିହୁଏ ।

## ସ୍ମରଣ ଶକ୍ତିର ଉନ୍ନତି

କେତେଗୁଡ଼ିଏ ପଦ୍ଧତି ଅବଲମ୍ବନ କଲେ ଶିକ୍ଷା କରିଥିବା କୌଣସି ବିଷୟବସ୍ତୁକୁ ଅପେକ୍ଷାକୃତ ଅଧିକ କାଳ ମନେରଖାଯାଇପାରେ । ଉନ୍ନତ ପଦ୍ଧତିରେ ବିଷୟଟିଏ ଶିକ୍ଷା କଲେ ଏହା ଅଧିକ କାଳ ମନେରଖାଯାଇପାରେ । କେବଳ କୌଣସି ବିଷୟବସ୍ତୁକୁ ମୁଖସ୍ଥ କଲେ ଯେ ବିସ୍ମରଣ ଘଟିବ ନାହିଁ, ତାହା ନୁହେଁ । ଏକ ଅଧ୍ୟୟନରେ ଦେଖାଯାଇଛି ଯେ, ଦଳେ ବ୍ୟକ୍ତି ଗୋଟିଏ ବିଷୟକୁ ମୁଖସ୍ଥ କରି ମନେରଖିବାକୁ ଚେଷ୍ଟା କଲେ, ଆଉ ଦଳେ ବ୍ୟକ୍ତି ବିଷୟଟିକୁ ବୁଝି ଉତ୍ତମ ଶିକ୍ଷଣ ପଦ୍ଧତି ଅବଲମ୍ବନ କରି ମନେରଖିବାକୁ ଚେଷ୍ଟା କଲେ, ଦେଖାଗଲା ଯେ, ଦ୍ୱିତୀୟ ଦଳର ବିଷୟୀମାନେ ଅଧିକ କାଳ ଏବଂ ଉତ୍ତମ ଭାବରେ ବିଷୟଟିକୁ ମନେରଖିପାରିଲେ ।

ଏବଂ ଓ ମେଉମ୍ୟାନ (୧୯୦୭)ଙ୍କ ମତରେ କୌଣସି ବିଷୟବସ୍ତୁ ଶିକ୍ଷା କରିବା ଓ ମନେରଖିବା ପାଇଁ ଉତ୍ତମ ପଦ୍ଧତି ଓ କୌଶଳମାନ ପ୍ରୟୋଗ କଲେ ସ୍ମରଣରେ ଉନ୍ନତି ଘଟେ । ଲୟ ମାଧ୍ୟମରେ ବିଷୟବସ୍ତୁ ମନେରଖିବାକୁ ଚେଷ୍ଟାକଲେ ସୁବିଧା ହୁଏ ଏବଂ ଅଧିକ କାଳ ପାଇଁ ମନେରହେ । ଶିକ୍ଷଣ ସମୟରେ ଅଯଥା ଚିନ୍ତା, କ୍ଲାନ୍ତି ଓ ଅବସାଦ ଜାତ ହେଲେ ତାହା ଶିକ୍ଷଣ ପ୍ରକ୍ରିୟାକୁ ବ୍ୟାହତ କରେ । ଫଳରେ ଶୀଘ୍ର ବିସ୍ମରଣ ଘଟେ ।

ସ୍ମୃତିର ଉନ୍ନତି ପାଇଁ ସଂକ୍ରମଣ ବା ସ୍ଥାନାନ୍ତର ପ୍ରକ୍ରିୟାକୁ ପ୍ରୟୋଗ କଲେ ସ୍ମୃତିରେ ଉନ୍ନତି ଘଟେ ବୋଲି ଏବଂ ଓ ମେଉମ୍ୟାନଙ୍କ ଅଧ୍ୟୟନରୁ ଜଣାଯାଏ ।

ବିଭିନ୍ନ ପ୍ରକାରର ବିଷୟବସ୍ତୁ ଶିକ୍ଷା କରିବେଲେ ଭିନ୍ନ ଭିନ୍ନ କୌଶଳ ପ୍ରୟୋଗ କଲେ ସ୍ମରଣ କରିବାରେ ଅଧିକ ସୁବିଧା ହୁଏ । ଶିକ୍ଷଣ ସମୟରେ ସଂହତି ପ୍ରୟୋଗ କରି ଶିକ୍ଷାକଲେ ବିଷୟବସ୍ତୁ ଶିକ୍ଷା କରିବା ସହଜସାଧ୍ୟ ହେବା ସଙ୍ଗେ ସଙ୍ଗେ ବହୁ କାଳ ପର୍ଯ୍ୟନ୍ତ ମନେ ରହେ ।

ଉପରୋକ୍ତ ପଦ୍ଧତିଗୁଡ଼ିକ ବ୍ୟକ୍ତିର ସ୍ମୃତିର ଉନ୍ନତି ପାଇଁ ଯେଉଁ କେତେଗୁଡ଼ିଏ ପଦ୍ଧତି ବ୍ୟବହୃତ ହୁଏ, ତାହା ନିମ୍ନରେ ପ୍ରଦତ୍ତ ହେଲା—

## ଶିକ୍ଷା କରିବାପାଇଁ ଅଭିପ୍ରେରଣର ଆବଶ୍ୟକତା

କୌଣସି ପିଲାର ସ୍ମରଣ ଶକ୍ତି ଉନ୍ନତ ହୋଇପାରେ, କିନ୍ତୁ ତାର ଯଦି ଶିକ୍ଷା କରିବା ନିମନ୍ତେ ଆଗ୍ରହ ତଥା ଅଭିପ୍ରେରଣର ଅଭାବ ଥିବ, ବିଷୟଟିକୁ ସେ ଉତ୍ତମ ଭାବରେ ଶିକ୍ଷା କରିପାରିବ ନାହିଁ । ତେଣୁ ତାର ଶୀଘ୍ର ବିସ୍ମରଣ ଘଟିବ । ଯେ କୌଣସି ବିଷୟ ମନେ ରଖିବାକୁ ହେଲେ ସେଥିପାଇଁ ଆବଶ୍ୟକୀୟ ଆଗ୍ରହ ଓ ଅଭିପ୍ରେରଣର ଆବଶ୍ୟକ । ଉଦାହରଣ ସ୍ୱରୂପ ଅନେକ ପିଲା ଚଳଚ୍ଚିତ୍ରର ସଙ୍ଗୀତ ଥରେ ବା ଦୁଇଥର ମାତ୍ର ଶୁଣି ସମ୍ପୂର୍ଣ୍ଣ ଭାବରେ ମନେରଖି ନିଅନ୍ତି । କିନ୍ତୁ ହୁଏତ ସେହି ପିଲାମାନଙ୍କୁ କୌଣସି ପାଠ୍ୟ ପୁସ୍ତକ ପଢ଼ିବାକୁ ଦେଲେ ସେମାନେ ୧୦ ଥର ମୁଖସ୍ଥ କରିସାରିବା ପରେ ମଧ୍ୟ ବିଷୟଟିକୁ ଭଲ ଭାବରେ ମନେରଖିପାରନ୍ତି ନାହିଁ । ଏହାର କାରଣ ହେଲା, ବିଷୟରେ ଆଗ୍ରହ ଓ ଅଭିପ୍ରେରଣର ଅଭାବ । ତେଣୁ ଶିକ୍ଷା ସମୟରେ ଶିଶୁ ମନରେ ଉତ୍ତମ ଅଭିପ୍ରେରଣ ଜାଗ୍ରତ କରାଇବା ଆବଶ୍ୟକ ।

ଶିକ୍ଷଣର ବିଷୟ ବସ୍ତୁକୁ ଉତ୍ତମ ଭାବରେ ଉପଲବ୍ଧି କରି ମନେରଖିବାକୁ ଚେଷ୍ଟା କଲେ ସ୍ମୃତିର ଉନ୍ନତି ଘଟେ । ବିଷୟବସ୍ତୁ ପ୍ରତି ଯଥେଷ୍ଟ ଧ୍ୟାନ ଦେଲେ ଶିକ୍ଷଣ ଓ ସ୍ମରଣରେ ଉନ୍ନତି ଘଟେ ।

ଶ୍ରବଣ-ଦୃଷ୍ଟି ପଦ୍ଧତି—ଏହି ପଦ୍ଧତି ମାଧ୍ୟମରେ ଶିକ୍ଷା ଦିଆଗଲେ ବିଷୟବସ୍ତୁ ପ୍ରତି ପିଲାର ଆଗ୍ରହ ବୃଦ୍ଧିପାଏ ଏବଂ ଏହା ବିଷୟବସ୍ତୁକୁ ସ୍ପଷ୍ଟଭାବରେ ମନେରଖିବାରେ ସହାୟତା କରେ । ତେଣୁ ଶ୍ରବଣ ପ୍ରତିଛବି ଏବଂ ଦୃଷ୍ଟି ପ୍ରତିଛବି ମାଧ୍ୟମରେ ପିଲାକୁ ଶିକ୍ଷା ଦେବା ଉଚିତ । ଏ ଦୃଷ୍ଟିରୁ ସ୍ଲାଇଡ୍ସ୍, ଟେଲିଭିଜନ୍, ଚଳଚ୍ଚିତ୍ର, ଏପିଡ଼ାଏସ୍-ସ୍କୋପ ଏବଂ ପରିଭ୍ରମଣ ମାଧ୍ୟମରେ ଛାତ୍ରଛାତ୍ରୀମାନଙ୍କୁ ବିଭିନ୍ନ ବିଷୟ ଶିକ୍ଷା ଦିଆଯିବା ଆବଶ୍ୟକ । କେବଳ ବକ୍ତୃତା ମାଧ୍ୟମରେ ପିଲାକୁ ଶିକ୍ଷା ଦେବାକୁ ଚେଷ୍ଟା କଲେ ଉତ୍ତମ ଫଳ ମିଳେନାହିଁ । ବିଷୟବସ୍ତୁଗୁଡ଼ିକ ପିଲା ମନରେ ସ୍ପଷ୍ଟ ପ୍ରତ୍ୟୟ ଧାରଣ କରିପାରେ ନାହିଁ । ଫଳରେ ବିସ୍ମରଣ ଘଟେ । ଏହି କାରଣରୁ ଅର୍ଥପୂର୍ଣ୍ଣ ଶବ୍ଦଗୁଡ଼ିକ ଅର୍ଥହୀନ ଶବ୍ଦାଂଶଠାରୁ ଚଞ୍ଚଳ ଓ ଅଧିକ କାଳ ନିମିତ୍ତ ମନେରହେ । ଉଇଲିୟମ୍ ଜେମ୍ସଙ୍କ ମତରେ କୌଣସି ବିଷୟକୁ ଅନ୍ୟ ବିଷୟ ସହ ଜଡ଼ିତ କରି ସହିତ ମାଧ୍ୟମରେ ଶିକ୍ଷା କରିବାକୁ ଚେଷ୍ଟା କରାଗଲେ, ଉତ୍ତମ ଶିକ୍ଷଣ ସମ୍ଭବ ହୁଏ । ଦୃଷ୍ଟାନ୍ତ ସ୍ୱରୂପ S/H ଅର୍ଥହୀନ ଶବ୍ଦାଂଶକୁ South Indian Hotel ସହିତ ବା Bedford ନାମଟିକୁ Ford ମଟରଗାଡ଼ି ସହିତ ଜଡ଼ିତ କରି ମନେ ରଖିବାକୁ ଚେଷ୍ଟା କଲେ ସହଜରେ ମନେ ରହେ ଓ ସ୍ମରଣରେ ଉନ୍ନତି ଘଟେ ।

ଲମ୍ବା ବିଷୟବସ୍ତୁକୁ ଭାଗ ଭାଗ କରି ମନେ ରଖିବାକୁ ଚେଷ୍ଟା କଲେ ମଧ୍ୟ ସ୍ମରଣରେ ଉନ୍ନତି ଘଟେ ।

ଶିଶୁର ସ୍ମରଣରେ ଉନ୍ନତି ସାଧନ କରିବା ନିମନ୍ତେ ଶିକ୍ଷଣ ସମୟରେ ଉପରୋକ୍ତ ପଦ୍ଧତିଗୁଡ଼ିକୁ ଆବଶ୍ୟକତା ଅନୁସାରେ ପ୍ରୟୋଗ କରିବା ଆବଶ୍ୟକ ।

## ଷଷ୍ଠ ଅଧ୍ୟାୟ

# ମାନସିକ ବିକାଶ

ଶିଶୁର ମାନସିକ ବିକାଶ ତାର ଅନୁବଂଶ ଓ ପାଖପାଖିର ଅବସ୍ଥା ଉପରେ ନିର୍ଭର କରେ । ଧୀଶକ୍ତି, କେତେକ ବିଶେଷ ଯୋଗ୍ୟତା ଓ ସାମର୍ଥ୍ୟ ବଂଶାନୁକ୍ରମିକ ହୋଇଥିଲେ ମଧ୍ୟ ବ୍ୟକ୍ତିତ୍ୱର ଲକ୍ଷଣ ତଥା ବିଭିନ୍ନ ମନସ୍ତାତ୍ତ୍ୱିକ ପ୍ରକ୍ରିୟାର ବିକାଶ ପାଖପାଖିର ଅବସ୍ଥା ଉପରେ ନିର୍ଭର କରିଥାଏ । ମନୋବୈଜ୍ଞାନିକ ଫ୍ରଏଡ଼ଙ୍କ ମତରେ, ଗୃହ, ଶିଶୁର ସର୍ବପ୍ରଥମ ପାଖପାଖିର ଅବସ୍ଥା ଅଟେ । ଶିଶୁର ସାମାଜିକ ବିକାଶ, ଆତ୍ମପ୍ରତ୍ୟୟ, ଅନ୍ୟମାନଙ୍କ ପ୍ରତି ମନୋଭାବ, ଜୀବନ ପ୍ରତି ଦୃଷ୍ଟିଭଙ୍ଗୀ, ପର୍ଯ୍ୟବେକ୍ଷଣ ଶକ୍ତି, ଶିକ୍ଷଣ, ଚିନ୍ତନ ଓ ବିସ୍ମରଣଶକ୍ତିର ବିକାଶ ଗୃହ ପରିବେଶ ଉପରେ ନିର୍ଭର କରେ । ପ୍ରଥମ ୫ ବର୍ଷ ମଧ୍ୟରେ ପିଲା ବିଶେଷତଃ ଗୃହ ପରିବେଶ ମଧ୍ୟରେ ବୃଦ୍ଧିଲାଭ କରେ ।

ପ୍ରଥମ ବର୍ଷରେ ମାନସିକ ବିକାଶ ସମ୍ବନ୍ଧରେ ପିଆଜେ ଯେଉଁ ମନ୍ତବ୍ୟ ଦେଇଅଛନ୍ତି, ସେଥିରୁ ଅନୁମିତ ହୁଏ ଯେ, ସରଳ ପ୍ରେରକ କ୍ରିୟାକଳାପର ସାମ୍ବେଦିକ ପ୍ରେରକ ପ୍ରତ୍ୟକ୍ଷ ପ୍ରକ୍ରିୟା ସହିତ ସମନ୍ୱୟ ଶିଶୁର କ୍ରିୟାକଳାପରେ ବିଶେଷ ଭାବରେ ଦୃଷ୍ଟିଗୋଚର ହୁଏ । ଏହି ବ୍ୟବହାରର ଅତ୍ୟଧିକ ବା ଅକାଳ ବିକାଶ, ଭାଷା ବିକାଶ, ଭାଷାର ଅର୍ଥ ଗ୍ରହଣ ଏବଂ ଗଣିତ ସମ୍ବନ୍ଧୀୟ ପ୍ରତ୍ୟୟରେ ଯଥେଷ୍ଟ ଯୋଗ୍ୟତା ହାସଲ କରିବାର କୌଣସି ସମ୍ବନ୍ଧ ନ ଥାଏ । ପ୍ରଥମ ବର୍ଷରେ ପ୍ରଗତିଶୀଳ ସାମ୍ବେଦିକ ପ୍ରେରକ କ୍ରିୟାକଳାପର ବିକାଶ ପରବର୍ତ୍ତୀ ଅବସ୍ଥାର ଉନ୍ନତ ଭାଷା ଓ ପାଣିତ୍ୟିକ ଶକ୍ତିର ବିକାଶର ଯେ ମାନକ, ତାହା ବୁଝାଯାଇ ନପାରେ । ଅବଶ୍ୟ ପ୍ରଥମ ବର୍ଷରେ ସାମ୍ବେଦିକ ପ୍ରେରକ ବିକାଶର ମନ୍ଥୀକରଣ ଶିଶୁର କ୍ରିୟାକଳାପରେ ଶିଥିଳତାର ସୂଚନା ଦିଏ । ତଥାପି ଅତ୍ୟଧିକ ସାମ୍ବେଦିକ ପ୍ରେରକ କ୍ରିୟାକଳାପର ବିକାଶ ଯୋଗୁଁ ଯେ ଅନ୍ୟାନ୍ୟ ବୌଦ୍ଧିକ ବିକାଶରେ ଯଥେଷ୍ଟ ପ୍ରଗତି ଲକ୍ଷ୍ୟ କରାଯାଏ, ତାହା ସନ୍ଦେହଜନକ ।

ଦ୍ୱିତୀୟ ବର୍ଷରେ ଶିଶୁର ଭାଷା ବିକାଶ ତାର ଜ୍ଞାନାତ୍ମକ ବିକାଶକୁ ଯେ ପ୍ରଭାବିତ କରେ ନାହିଁ ସେ ସମ୍ବନ୍ଧରେ ନାନା ପ୍ରଶ୍ନ ଉତ୍ଥାପିତ ହୋଇଅଛି । ବିଭିନ୍ନ ଗବେଷଣାର ଫଳାଫଳକୁ ବିଶ୍ଳେଷଣ କରି ଫ୍ଲାଭେଲ୍ ଓ ହିଲ୍ ମତବ୍ୟକ୍ତ କରିଅଛନ୍ତି ଯେ ପ୍ରାରମ୍ଭିକ ଶୈଶବାବସ୍ଥାରେ ଶିଶୁର ଭାଷା ବିକାଶ ହୋଇନଥିଲେ ମଧ୍ୟ ତାର ସାମ୍ବେଦିକ ପ୍ରେରକ ଧୀଶକ୍ତି ଭାଷାର ବିନା ସାହାଯ୍ୟରେ ବିକାଶ ଲାଭ କରିଥିବାର ସ୍ପଷ୍ଟ ଭାବରେ ଜଣାଯାଏ ।

ଜନ୍ମଠାରୁ ୨ ବର୍ଷ ମଧ୍ୟରେ ହୋଇଥିବା ଜ୍ଞାନାତ୍ମକ ବିକାଶ, ବିଶେଷକରି ସାମ୍ବେଦିକ ପ୍ରେରକ ସମନ୍ୱୟତାର ପରବର୍ତ୍ତୀ ବୌଦ୍ଧିକ ବିକାଶ ନିମନ୍ତେ ଆବଶ୍ୟକ ହୁଏ । ଏହି ପର୍ଯ୍ୟାୟରେ ସ୍ଥାୟୀ ବିଷୟମାନଙ୍କ ସମ୍ବନ୍ଧରେ ଶିଶୁ ବିଭିନ୍ନ ପ୍ରତ୍ୟୟ ଗଠନ କରେ ।

ପାରିପାର୍ଶ୍ୱିକ ଅବସ୍ଥା ସହିତ ବିଭିନ୍ନ ପାରସ୍ପରିକ ପ୍ରକ୍ରିୟା ଫଳରେ ମାନସିକ ଗଠନରେ କ୍ରମିକ ପରିବର୍ତ୍ତନ ଦେଖାଯାଏ । ପୂର୍ବବର୍ତ୍ତୀ ପର୍ଯ୍ୟାୟମାନଙ୍କର ଜ୍ଞାନାତ୍ମକ ବିକାଶ ପରବର୍ତ୍ତୀ ପର୍ଯ୍ୟାୟକୁ ସଞ୍ଚରିତ ହୁଏ । ପ୍ରତ୍ୟେକ ପରବର୍ତ୍ତୀ ପର୍ଯ୍ୟାୟମାନଙ୍କରେ ପୂର୍ବବର୍ତ୍ତୀ ପର୍ଯ୍ୟାୟର ଶକ୍ତି ସହିତ ନୂତନ ଜ୍ଞାନାତ୍ମକ ଉପାଦାନ, ଶକ୍ତି ଓ ସାମର୍ଥ୍ୟ ପ୍ରଭୃତି ଯୋଗ ହୁଏ । ଏହା ମାନସିକ ବିକାଶରେ ଯଥେଷ୍ଟ ସାହାଯ୍ୟ କରିଥାଏ ।

ଶିଶୁର ଜଟିଳ ମାନସିକ କ୍ରିୟାକଳାପମାନଙ୍କରୁ ତାର ମାନସିକ ବିକାଶ ସମ୍ବନ୍ଧରେ ସମ୍ୟକ୍ ଧାରଣା କରିହୁଏ ।

୩ରୁ ୭ ବର୍ଷ ବୟସ ମଧ୍ୟରେ ଶିଶୁର ମାନସିକ ଯୋଗ୍ୟତା ବହୁତ ଶୀଘ୍ର ବୃଦ୍ଧି ହୁଏ । ସେ କେବଳ ଶବ୍ଦର ପ୍ରୟୋଗ ଶିକ୍ଷା କରେ ନାହିଁ, ତା'ର ଅର୍ଥ ମଧ୍ୟ ଜାଣିବାକୁ ଆରମ୍ଭ କରେ । ବିଭିନ୍ନ ବୟସ୍କ ବ୍ୟକ୍ତି ଓ ବାଳକମାନଙ୍କ ସହିତ ମିଳାମିଶା କରି ସମ୍ବେଦନାତ୍ମକ ଓ ପ୍ରତ୍ୟକ୍ଷୀକୃତ ଅନୁଭବ ଏବଂ ଅଭିଜ୍ଞତାରୁ ସେ ଯଥେଷ୍ଟ ଶିକ୍ଷା ପାଏ ଓ ଅନୁକରଣ ମଧ୍ୟ କରେ । ଏହା ଶିଶୁର ମାନସିକ ବିକାଶରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରେ । ୭ ବର୍ଷ ବୟସରେ ଏବଂ ଏହାପରେ ଶିଶୁର ମାନସିକ ଯୋଗ୍ୟତା ଯଥେଷ୍ଟ ପରିପକ୍ୱ ହୋଇଯାଏ ଏବଂ ଏହା ତାର ବ୍ୟକ୍ତିତ୍ୱର ବିକାଶରେ ସାହାଯ୍ୟ କରେ । ପିତା, ମାତା ଓ ଅନ୍ୟାନ୍ୟ ବୟସ୍କ ବ୍ୟକ୍ତି ତଥା ସଙ୍ଗୀ ସହପାଠୀମାନଙ୍କଦ୍ୱାରା ବାଳକର ବିଭିନ୍ନ ମନସ୍ତାତ୍ତ୍ୱିକ ପ୍ରକ୍ରିୟା, ଯଥା : ଶିକ୍ଷଣ, ପ୍ରତ୍ୟକ୍ଷଣ, ଚିନ୍ତନ ଓ ବିଚାର ଶକ୍ତି ଇତ୍ୟାଦି ପ୍ରଭାବିତ ହୁଏ । କିନ୍ତୁ ଧୀଶକ୍ତି ଉପରେ ସର୍ବାଧିକ ପ୍ରଭାବ ଅନୁଭୂତ ହୁଏ ।

## ଧୀଶକ୍ତି ଓ ବୁଦ୍ଧି ପରୀକ୍ଷଣ

ବୁଦ୍ଧିର କୌଣସି ନିର୍ଦ୍ଦିଷ୍ଟ ପରିଭାଷା ଓ ସଂଜ୍ଞା ଦେବା କଷ୍ଟକର । ବୁଦ୍ଧି ସାଧାରଣତଃ ଏକ ପ୍ରତ୍ୟୟ ହୋଇଥିବାରୁ ଏହାର ଭିନ୍ନ ଭିନ୍ନ ପରିଭାଷା ପ୍ରଚଳିତ ହୋଇଅଛି । ଏହା ସମ୍ବନ୍ଧରେ କେବଳ ଏତିକି କୁହାଯାଇପାରେ ଯେ, ବୁଦ୍ଧିର ଅର୍ଥ ନ ବୁଝାଇ ଏହାର ବ୍ୟବହାର ସମ୍ବନ୍ଧରେ ବର୍ଣ୍ଣନା କରିବା ଅଧିକ ଉଚିତ ହେବ । ଥର୍ଣ୍ଣଡାଇକ, ବୁଦ୍ଧିର ପରିଭାଷା ଦେବାକୁ ଯାଇ କହିଛନ୍ତି, ସତ୍ୟ ଓ ବାସ୍ତବିକତା ଦୃଷ୍ଟିରୁ ଏହା ଉତ୍ତମ ଅନୁକ୍ରିୟା ପ୍ରଦର୍ଶନ କରିବାର ଶକ୍ତି ଅଟେ । ଅର୍ଥାତ୍, It is the power of good response from the point of view of truth or fact । ଏହି ପ୍ରକାରର ବ୍ୟବହାରର ଧ୍ୟାନର ବିସ୍ତାର, ସ୍ମୃତି, ତର୍କ, ଅମୂର୍ତ୍ତଚିନ୍ତନ (Abstract thinking), ସାମାନ୍ୟକରଣ, ବିଶେଷୀକରଣ ଇତ୍ୟାଦି ଯୋଗ୍ୟତା ସମ୍ମିଳିତ ଅଟେ । ବୁଦ୍ଧିର ଅନ୍ୟାନ୍ୟ ପରିଭାଷାଗୁଡ଼ିକ ହେଲା, ନୂତନ ପରିସ୍ଥିତିରେ ଉଚିତ୍ ବ୍ୟବହାର ପ୍ରଦର୍ଶନ କରିବା, ଅମୂର୍ତ୍ତ ବିଷୟକୁ ଗ୍ରହଣ କରିବା, ଶିକ୍ଷଣ ବା ଅନୁଭବରୁ ଲାଭ ଉଠାଇବାର ଯୋଗ୍ୟତା ଇତ୍ୟାଦି । କିନ୍ତୁ ଏ ମଧ୍ୟରୁ କୌଣସି ଏକ ପରିଭାଷା ସନ୍ତୋଷଜନକ ନୁହେଁ । ଷ୍ଟୋଡାର୍ଡଙ୍କ ମତରେ ବୁଦ୍ଧିର ଅର୍ଥ, ଏପରି ଏକ କାର୍ଯ୍ୟ କରିବା ଯେଉଁଥିରେ କଠିନତା,

ଜଟିଳତା, ଅମୂର୍ତ୍ତତା, ଗତି, ସାମାଜିକ ମୂଲ୍ୟ, ଅବସ୍ଥାର ପ୍ରଭୃତି ବିଶେଷତ୍ୱ ଦେଖିବାକୁ ମିଳେ । ପିଅଜେଙ୍କ ମତରେ "Intelligence is acquisition of operations, that facilitate adaptation." ଅର୍ଥାତ୍ ଉପଯୋଜନ କରିବାରେ ସାହାଯ୍ୟ କରୁଥିବା କେତେକ କ୍ରିୟାକଳାପର ଅର୍ଜନକୁ ଧୀଶକ୍ତି କୁହାଯାଏ । ବୌଦ୍ଧିକ ଓ ଜ୍ଞାନାତ୍ମକ କ୍ରିୟାକଳାପର କ୍ରମିକ ବିକାଶ ଉପରେ ପିଅଜେ ଅଧିକ ଗୁରୁତ୍ୱ ଆରୋପ କରିଅଛନ୍ତି । ପରିବେଷ୍ଟନୀର ବିଭିନ୍ନ ଅବସ୍ଥାକୁ ପର୍ଯ୍ୟବେକ୍ଷଣ କରି ପ୍ରତ୍ୟକ୍ଷ ପ୍ରକ୍ରିୟା ପରେ ବ୍ୟକ୍ତି ନିଜର ବ୍ୟବହାରକୁ ଯେଉଁପରି ଭାବରେ ଉପଯୋଜନ କରିବାରେ ସକ୍ଷମ ହୁଏ, ସେଥିରୁ ତାର ଧୀଶକ୍ତି ସମ୍ବନ୍ଧରେ ଧାରଣା କରିହୁଏ । ଗିଲ୍‌ଫୋର୍ଡ଼ଙ୍କ ମତରେ, ଧୀଶକ୍ତିରେ ପ୍ରାପ୍ତ ୫ଟି ଭିନ୍ନ ଭିନ୍ନ ପ୍ରକାରର ଜ୍ଞାନାତ୍ମକ ପ୍ରକ୍ରିୟା ରହିଛି । ଯଥା— ଚିନ୍ତନ କରିବା, ସ୍ମରଣ, କେନ୍ଦ୍ରାପସୃତି ଉତ୍ପାଦନ (Divergent production), କେନ୍ଦ୍ରଗାମୀ ଉତ୍ପାଦନ (Convergent production) ଏବଂ ମୂଲ୍ୟାୟନ । ଗିଲଫୋର୍ଡ ବିଶ୍ୱାସ କରନ୍ତି ଯେ, ଏହି ୫ ପ୍ରକାରର ପ୍ରାଥମିକ ଜ୍ଞାନାତ୍ମକ ପ୍ରକ୍ରିୟା ୪ଟି ଉପରୁ ବ୍ୟବହୃତ ହୋଇପାରିବ । ସେଗୁଡ଼ିକ ହେଲା ସଂଖ୍ୟା, ଅକ୍ଷର ଏବଂ ସଂଖ୍ୟା ଶବ୍ଦ ଏବଂ ବାକ୍ୟ ଓ ବ୍ୟବହାର । କେତେକ ଶିଶୁ ବସ୍ତୁମାନଙ୍କୁ ପର୍ଯ୍ୟବେକ୍ଷଣ କରିବାରେ ଅଧିକ ବୁଦ୍ଧିମତ୍ତା ପ୍ରଦର୍ଶନ କରନ୍ତି । ଅନ୍ୟମାନେ ସଂଖ୍ୟା ଓ ଅନ୍ୟ କେତେକ ଧାରଣକୁ ଅଧିକ ପସନ୍ଦ କରନ୍ତି ।

## ଶୈଶବାବସ୍ଥାରେ ଧୀଶକ୍ତିର ମାପ

ଧୀଶକ୍ତି ମାପ କରିବାର ପ୍ରୟନ୍ତ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ପ୍ୟାରିସଠାରେ ବିନେ ଓ ସାଇମ୍ ଆରମ୍ଭ କରିଥିଲେ । ବାଳକବାଳିକାମାନେ ବିଦ୍ୟାଳୟରେ କୃତିତ୍ୱ ପ୍ରଦର୍ଶନ ନ କରିବାର କାରଣ ଜାଣିବାପାଇଁ ଧୀଶକ୍ତି ମାପ କରିବାର ଚେଷ୍ଟା କରାଯାଇଥିଲା । ଏହି ପରୀକ୍ଷଣଦ୍ୱାରା ଶ୍ରେଷ୍ଠ ବାଳକବାଳିକାମାନଙ୍କଠାରୁ ଆରମ୍ଭ କରି ବୟସ୍କ ବ୍ୟକ୍ତିମାନଙ୍କର ଧୀଶକ୍ତି ଓ ସାଧାରଣ ଯୋଗ୍ୟତା ମାପ କରାଯାଇପାରେ । ପ୍ରଥମ ମହାସମରରେ ସୈନ୍ୟମାନଙ୍କର ଆବଶ୍ୟକତା ଯୋଗୁଁ ସାମୂହିକ ପରୀକ୍ଷା ବ୍ୟବହାର କରାଯାଇଥିଲା । ଏଥିରେ ଏପରି କିଛି ପରୀକ୍ଷା ଥିଲା, ଯେଉଁଥିରେ ଭାଷା ପ୍ରୟୋଗର କୌଣସି ବିଶେଷ ଗୁରୁତ୍ୱ ନଥିଲା । ଆଧୁନିକ ମନୋବୈଜ୍ଞାନିକମାନେ ଏହିସବୁ ପରୀକ୍ଷାକୁ ଆବଶ୍ୟକମତେ ସଂଶୋଧନ କରି ବୈୟକ୍ତିକ ବା ସାମୂହିକ ଭାବରେ ବାଳକ ଅଥବା ବୟସ୍କମାନଙ୍କ ଉପରେ ବିଶ୍ୱର ଯେକୌଣସି ସ୍ଥାନରେ ପ୍ରୟୋଗ କରିପାରନ୍ତି । ଏହି ପରୀକ୍ଷଣଗୁଡ଼ିକ ସାଂସ୍କୃତିକ ପ୍ରଭାବରୁ ମୁକ୍ତ । ଅର୍ଥାତ୍ ଯେକୌଣସି ସଂସ୍କୃତିରେ ଏହି ପରୀକ୍ଷାଗୁଡ଼ିକ ପ୍ରୟୋଗ କରାଯାଇପାରେ । ଏହି ପରୀକ୍ଷାଗୁଡ଼ିକ ବୈୟକ୍ତିକ ତଥା ସାମୂହିକ ଭାଷା, କ୍ରିୟାତ୍ମକ ଗତି ଏବଂ ଶକ୍ତି ଉପରେ ଆଧାରିତ କରାଯାଇ ବିଣ୍ଟନ କରାଯାଇଛି । ଏମାନଙ୍କ ମଧ୍ୟରେ ଷ୍ଟାନ୍‌ଫୋର୍ଡ଼ ବିନେଙ୍କର

ଅତିରିକ୍ତ Weschrer Scale ପିନ୍‌ଟନ୍‌ର ପାଟରସନ୍, କୁଲ୍‌ହ୍ମାନ, ଏଣ୍ଡରସନ ଓ ଏହିପ୍ରକାର ବହୁତ ରକମର ପରୀକ୍ଷା ପ୍ରସ୍ତୁତ କରାଯାଇଛି । ଭାରତରେ ଉଦ୍‌ଘାଇସ୍ ସର୍ବପ୍ରଥମେ ଏହି ପରୀକ୍ଷଣଗୁଡ଼ିକ ଭାରତୀୟ ସଂସ୍କୃତିରେ ମାନାଙ୍କିତ କରି ପ୍ରସ୍ତୁତ କରିଛନ୍ତି । ଏହାପରେ କାମଥ, ସୋହନ ଲାଲ, ଜାଲୋଟା ଓ ଭାଟିଆଙ୍କର ପରୀକ୍ଷଣଗୁଡ଼ିକ ଅଧିକ ପ୍ରଚଳିତ ଅଟେ । ଜାଲୋଟାଙ୍କର ପରୀକ୍ଷଣ ଭାଷା ସମ୍ବନ୍ଧୀୟ ଏବଂ ଏହା ହିନ୍ଦୀରେ ପ୍ରସ୍ତୁତ । ଭାଟିଆଙ୍କର ପରୀକ୍ଷାକୁ କ୍ରିୟାତ୍ମକ ବୁଝାଯାଏ । ଏହିସବୁ ପରୀକ୍ଷଣଗୁଡ଼ିକର ଫଳାଫଳକୁ ଭିତ୍ତିକରି ପିଲାମାନଙ୍କର ସାଧାରଣ ଯୋଗ୍ୟତା, ଆବଶ୍ୟକତା, ଶ୍ରେଷ୍ଠତା, ତଥା ହୀନତା ସମ୍ବନ୍ଧରେ ଅନେକ କିଛି ତଥ୍ୟ ସଂଗ୍ରହ କରାଯାଇପାରେ ।

## ଧୀଶକ୍ତିର ମାପ

ଧୀଶକ୍ତି ପରୀକ୍ଷଣ ଉପରେ ଆଧାରିତ ହୋଇଥିବା ବୁଦ୍ଧ୍ୟଙ୍କର ପ୍ରତ୍ୟୟ ଆମେରିକୀୟ ମନସ୍ତତ୍ତ୍ୱବିଦ୍‌ମାନଙ୍କ ଦ୍ୱାରା ବିଶେଷ ଭାବରେ ଆଦୃତ ହୋଇପାରିଅଛି । ସାଧାରଣତଃ ପିତାମାତା ସେମାନଙ୍କର ଶିଶୁମାନଙ୍କର ବୁଦ୍ଧ୍ୟଙ୍କ ଜାଣିବା ପାଇଁ ବିଶେଷ ଆଗ୍ରହ ପ୍ରକାଶ କରନ୍ତି । କେତେକ ବିଶ୍ୱାସ କରନ୍ତି ଯେ, ବ୍ୟକ୍ତିର ବୁଦ୍ଧ୍ୟଙ୍କ ବଂଶାନୁସୃତ ଏବଂ ଜୀବନକାଳ ମଧ୍ୟରେ ବୁଦ୍ଧ୍ୟଙ୍କର ପ୍ରାୟ ପରିବର୍ତ୍ତନ ଘଟେ ନାହିଁ । ଅଥଚ କେତେକଙ୍କ ମତରେ ଜୀବନର ପ୍ରଥମ ବର୍ଷରେ ବୁଦ୍ଧ୍ୟଙ୍କ ମାପ କରାଯାଇପାରିବ । ଉଚ୍ଚ ବୁଦ୍ଧ୍ୟଙ୍କ ସ୍ୱଚ୍ଛଳ ଆର୍ଥିକ ଅବସ୍ଥା, ଉତ୍ତମ ମାନସିକ ସ୍ୱାସ୍ଥ୍ୟ ଓ ସୁଖକର ଜୀବନଯାପନ ପ୍ରଣାଳୀ ଯୋଗୁଁ ସମ୍ଭବ ହୋଇଥାଏ ବୋଲି କେତେକ ମନୋବୈଜ୍ଞାନିକ ମତପ୍ରକାଶ କରିଥିବା ସ୍ଥଳେ ଉପରୋକ୍ତ ମତ ସାଧାରଣତଃ ଠିକ୍ ନୁହେଁ ବୋଲି ପିଆଜେ ପ୍ରକାଶ କରିଅଛନ୍ତି ।

ଗିଲଫୋର୍ଡ଼, ପିଆଜେ ଓ ତାଙ୍କର ସମର୍ଥକମାନଙ୍କ ମତରେ ଅଭିଜ୍ଞତାରୁ ଲାଭ କରୁଥିବା ସାମର୍ଥ୍ୟକୁ ଧୀଶକ୍ତି କୁହାଯାଇପାରେ । ବିଭିନ୍ନ ଅଭିଜ୍ଞତା ଓ ଶିକ୍ଷଣରୁ ଶିଶୁ ନୂତନ କୌଶଳ ବ୍ୟବହାର ତଥା ପ୍ରତ୍ୟୟ କେତେ ଚଞ୍ଚଳ ଓ ସୁବିଧାରେ ଶିକ୍ଷା କରିପାରୁଛି ତାହା ତାର ବୁଦ୍ଧ୍ୟଙ୍କ ଉପରେ ହିଁ ନିର୍ଭର କରେ । ଅଭିଜ୍ଞତାରୁ ଶିକ୍ଷା କରିବାର ସୀମାକୁ ଧୀଶକ୍ତି ହିଁ ନିର୍ଦ୍ଧାରଣ କରିଥାଏ । ଅର୍ଥାତ୍ ନିମ୍ନ ଧୀଶକ୍ତି ସମ୍ପନ୍ନ ଶିଶୁ ଅଭିଜ୍ଞତାରୁ ଶୀଘ୍ର ଓ ସହଜରେ ଶିକ୍ଷା ଲାଭ କରିପାରେ ନାହିଁ । କାରଣ ଏହି ଯୋଗ୍ୟତା ସୀମିତ ଅଟେ ଏବଂ ଏହି ସୀମା ଅନୁବଂଶିକ ଉତ୍ପାଦକମାନଙ୍କଦ୍ୱାରା ନିର୍ଦ୍ଧାରିତ ହୋଇଥାଏ । ଷ୍ଟାନ୍‌ଫୋର୍ଡ଼ ବିନେ ବୁଦ୍ଧି ପରୀକ୍ଷଣ ଏପରି ଭାବରେ ଗଠିତ ଯେ କୌଣସି ନୂତନ କୌଶଳ ବା କ୍ରିୟାକଳାପ ଶିକ୍ଷା କରିବାର ଯୋଗ୍ୟତା ଏହା ମାପ କରେ ନାହିଁ । ଏହି ପରୀକ୍ଷଣ ନୂତନ କୌଶଳ ଶିକ୍ଷା କରିବାର ଯୋଗ୍ୟତା ଉପରେ ପର୍ଯ୍ୟବସିତ ହୋଇ ପୂର୍ବରୁ ଅର୍ଜନ କରିଥିବା ଜ୍ଞାନକୁ ମାପ କରେ । ମୋଟ ଉପରେ ସାଧାରଣ ଲୋକଙ୍କର ଧୀଶକ୍ତିର ପରିଭାଷା ସମ୍ବନ୍ଧରେ ଯାହା ଧାରଣା ରହିଛି ବୁଦ୍ଧ୍ୟଙ୍କ ପରୀକ୍ଷଣ ତାହା ମାପ କରେନାହିଁ । ଏହାର

ପ୍ରଧାନ କାରଣ ହେଲା, ପ୍ରାରମ୍ଭରେ ଏକ ବ୍ୟାବହାରିକ ସମସ୍ୟାକୁ ସମାଧାନ କରିବା ପାଇଁ ବୁଦ୍ଧି ପରୀକ୍ଷଣ ଗଠନ କରାଯାଇଥିଲା । ବିଂଶ ଶତାବ୍ଦୀର ପ୍ରାରମ୍ଭରେ ପ୍ୟାରିସର ପବ୍ଲିକ୍ ସ୍କୁଲଗୁଡ଼ିକରେ ଅନେକ ମାନସିକ ଅପାରଗ ଶିଶୁ ଥିଲେ । ଏମାନେ ସାଧାରଣ ପିଲାଙ୍କୁ ଦାନ କରାଯାଉଥିବା ଶିକ୍ଷାରୁ ବିଶେଷ କିଛି ଲାଭ ପାଇପାରୁନଥିଲେ । ଏଣୁ ଏହି ଶିଶୁ-ମାନଙ୍କୁ ସାଧାରଣ ଶିଶୁଙ୍କଠାରୁ ପୃଥକ୍ କରି ସ୍ୱତନ୍ତ୍ର ଧରଣର ଶିକ୍ଷା ଦେବା ପାଇଁ ବିନେ ପରୀକ୍ଷଣ ଗଠନ କରାଯାଇଥିଲା ।

ପ୍ରତ୍ୟେକ ଶିଶୁ ଅଥବା ବୟସ୍କ ବ୍ୟକ୍ତିଙ୍କର ଧୀଶକ୍ତିର ମାପ ନମିତ୍ତ ଟରମ୍ୟାନ୍ ବୁଦ୍ଧି ଲବ୍‌ଧିର ପ୍ରତ୍ୟୟ ଦେଇଅଛନ୍ତି । ବୁଦ୍ଧ୍ୟଙ୍କ ଗୋଟିଏ ବାଳକର ବାସ୍ତବିକ ଆୟୁ ତଥା ମାନସିକ ଆୟୁ ମଧ୍ୟରେ ଅନୁପାତ ଯାହାକୁ ୧୦୦ ସହିତ ପୁନଶ୍ଚ ଗୁଣନ କରାଯାଏ । କୌଣସି ଶିଶୁର ବୁଦ୍ଧ୍ୟଙ୍କ ଗଣନା କରିବାର ଉପାୟ ହେଲା—

$$\frac{\text{ମାନସିକ ବୟସ}}{\text{କ୍ରମିକ ବୟସ}} \times ୧୦୦$$

ଉଦାହରଣ ସ୍ୱରୂପ ଏକ ୫ ବର୍ଷ ବୟସ୍କ ପିଲାର ମାନସିକ ବୟସ ଯଦି ୪ ହୁଏ, ତାର ବୁଦ୍ଧ୍ୟଙ୍କ ହେବ $\frac{୪}{୫} \times ୧୦୦ = ୮୦$ । ବୁଦ୍ଧ୍ୟଙ୍କ ୧୦୦ ହେଲେ ୫ ବର୍ଷ ବୟସର ମଧ୍ୟମାନ ବୁଦ୍‌ଧ୍ୟଙ୍କ ସହିତ ସମାନ ବୋଲି କହିବାକୁ ହେବ । ଯଦି କୌଣସି ଶିଶୁର ବୁଦ୍ଧ୍ୟଙ୍କ ୧୧୦ରୁ ଅଧିକ ହୁଏ, ତେବେ ତାକୁ ମେଧାବୀ, ଉତ୍କୃଷ୍ଟ ବା ଧୀମାନ କୁହାଯାଏ ଏବଂ ଯଦି ତାଠାରୁ କମ୍ ହୁଏ, ତେବେ ଏହିପରି ଶିଶୁକୁ ମାନସିକ ହୀନ ବୋଲି କୁହାଯାଏ ।

ଶିଶୁମାନଙ୍କ ପାଇଁ ଗଠନ କରାଯାଇଥିବା ବୁଦ୍ଧି ପରୀକ୍ଷଣ ବୟସ୍କ ବ୍ୟକ୍ତିଙ୍କର ବୁଦ୍ଧି ପରୀକ୍ଷଣଠାରୁ ପୃଥକ୍ । କାରଣ ବୟସ୍କମାନଙ୍କ ପରି ଶିଶୁମାନଙ୍କର ଉନ୍ନତ ଧରଣର ବାଗ୍-ବିକାଶ ହୋଇନଥାଏ । ସାଧାରଣତଃ ଧୀଶକ୍ତିର ମାପ କ୍ରମରେ ୨।୪ ବର୍ଷ ବୟସରେ ଯେଉଁ ସବୁ ବୁଦ୍ଧି ପରୀକ୍ଷଣ ଶିଶୁ ଉପରେ ପ୍ରୟୋଗ କରାଯାଏ ତାହା ମନୋପ୍ରେରକ ଜ୍ଞାନାତ୍ମକ ଏବଂ ମୌଖିକ କ୍ରିୟା ଉପରେ ପର୍ଯ୍ୟବେକ୍ଷିତ ହୋଇଥାଏ । ଦୃଷ୍ଟାନ୍ତ ସ୍ୱରୂପ ଷ୍ଟାନ୍‌ଫୋର୍ଡ଼ ବିନେ ପରୀକ୍ଷଣରେ ମାନକ ଅନୁସାରେ ଏକ ଦୁଇବର୍ଷର ଶିଶୁ ୩ଟି ଗର୍ତ୍ତଥିବା ଗୋଟିଏ ପଟାରେ ଏକ ସରଳ ପ୍ରକାରର ବ୍ଲକ୍ ରଖିପାରିବ । ସାଧାରଣ ବସ୍ତୁମାନଙ୍କର ଆଦର୍ଶ ଚିହ୍ନିପାରିବ, ଯଥା : ଗ୍ଲାସ ଓ ତାଟିଆ ଅଥବା ଗୋଟିଏ କଣ୍ଢେଇର ବିଭିନ୍ନ ଅଂଶକୁ ଦେଖିଲେ ଚିହ୍ନିପାରିବ ।

୪ ବର୍ଷ ଶିଶୁର ବୁଦ୍ଧି ପରୀକ୍ଷଣରେ ବିଭିନ୍ନ ଛବିମାନଙ୍କର ନାମ କହିବା, ସ୍ମରଣ ଶକ୍ତିରୁ ବିଭିନ୍ନ ନାମ ପ୍ରତ୍ୟାସ୍ମରଣ କରିବା ତ୍ରିଭୁଜ, ବୃତ୍ତ ଓ ବର୍ଗକ୍ଷେତ୍ରମାନଙ୍କ ମଧ୍ୟରେ

ପ୍ରଭେଦ ଲକ୍ଷ୍ୟ କରିବା, ବିଭିନ୍ନ ସରଳ ଶବ୍ଦମାନଙ୍କର ସଂଜ୍ଞା ବର୍ଣ୍ଣନା କରିବା, ବିଭିନ୍ନ ଶବ୍ଦ ସମ୍ବଳିତ ଏକ ବାକ୍ୟକୁ ପୁନଃ ପୁନଃ ଉଚ୍ଚାରଣ କରିପାରିବା ଇତ୍ୟାଦି । ପ୍ରାକ୍ ବିଦ୍ୟାଳୟ ଶିଶୁକୁ ଦିଆଯାଉଥିବା ବୁଦ୍ଧି ପରୀକ୍ଷଣମାନ ବିଶେଷ ଭାବରେ ଭାଷା ଉପରେ ନିର୍ଭର କରିଥାଏ । ଏଣୁ ଯେଉଁ ଶିଶୁମାନଙ୍କର ଉନ୍ନତ ଭାଷା ବିକାଶ ହୋଇଥାଏ ସେମାନେ ଏହି ପରୀକ୍ଷଣମାନଙ୍କରେ ଯଥେଷ୍ଟ କୃତିତ୍ୱ ପ୍ରଦର୍ଶନ କରିଥାନ୍ତି । ନିମ୍ନ ସାମାଜିକ, ସାଂସ୍କୃତିକ ଏବଂ ଆର୍ଥିକ ସ୍ଥିତିର ଶିଶୁମାନଙ୍କର ସାଧାରଣତଃ ଉନ୍ନତ ଭାଷା ବିକାଶ ହୋଇ ନଥିବାରୁ ଏହି ପ୍ରକାରର ବୁଦ୍ଧି ପରୀକ୍ଷଣରେ ସେମାନେ ସଫଳତା ହାସଲ କରିବାର ସମ୍ଭାବନା କ୍ଷୀଣ ହୋଇଥାଏ । ଏକ ଅଧ୍ୟୟନରେ ୧୦ ମାସର ନିଗ୍ରୋ ଓ ଶ୍ୱେତ ଶିଶୁଙ୍କର ଧୀଶକ୍ତି ପରୀକ୍ଷଣ କରାଯାଇ ବୁଦ୍ଧ୍ୟାଙ୍କରେ କୌଣସି ଉଲ୍ଲେଖଯୋଗ୍ୟ ତାରତମ୍ୟ ଲକ୍ଷ୍ୟ କରାଯାଇ ନଥିଲା । କିନ୍ତୁ ୩ ବର୍ଷ ବୟସର ଶ୍ୱେତ ଶିଶୁ ନିଗ୍ରୋ ଶିଶୁଙ୍କ ଠାରୁ ବାଚନିକ ବୁଦ୍ଧି ପରୀକ୍ଷଣରେ ୧୬ ପଏଣ୍ଟ ଅଧିକ ଲାଭକଲେ । ପ୍ରାକ୍ ବିଦ୍ୟାଳୟ ଶିଶୁଙ୍କଠାରୁ ଆରମ୍ଭ କରି ବୟସ୍କମାନଙ୍କର ବୁଦ୍ଧି ପରୀକ୍ଷଣର ବିଷୟଗୁଡ଼ିକ ମୋଟ ଉପରେ ଭାଷା ଉପରେ ଆଧାରିତ । ଏହି କାରଣରୁ ଶିଶୁ ବୁଦ୍ଧି ପରୀକ୍ଷଣମାନଙ୍କ ତୁଳନାରେ ପ୍ରାକ୍ ବିଦ୍ୟାଳୟ ସ୍ତରରେ ଦିଆଯାଉଥିବା ବୁଦ୍ଧିପରୀକ୍ଷଣଗୁଡ଼ିକର ବୁଦ୍ଧ୍ୟାଙ୍କରୁ ସେମାନଙ୍କର ପରବର୍ତ୍ତୀ ଅବସ୍ଥାମାନଙ୍କର ବୁଦ୍ଧ୍ୟାଙ୍କ ସମ୍ବନ୍ଧରେ ପୂର୍ବରୁ ଅନୁମାନ କରିହୁଏ ।

କିନ୍ତୁ ବିଭିନ୍ନ ଅଧ୍ୟୟନମାନଙ୍କର ଫଳାଫଳରୁ ସୂଚନା ମିଳେ ଯେ, ପ୍ରାକ୍ ବିଦ୍ୟାଳୟ ଅବସ୍ଥା ପୂର୍ବରୁ ବୁଦ୍ଧ୍ୟାଙ୍କ ସହିତ ପରବର୍ତ୍ତୀ ଅବସ୍ଥାମାନଙ୍କର ବୁଦ୍ଧ୍ୟାଙ୍କର କୌଣସି ଉଲ୍ଲେଖଯୋଗ୍ୟ ସମ୍ବନ୍ଧ ଦୃଷ୍ଟିଗୋଚର ହୁଏ ନାହିଁ । ଏକ ଲମ୍ବକ ଅଧ୍ୟୟନର ଫଳାଫଳକୁ ବିଶ୍ଳେଷଣ କରି ବେଲେ ମତ ଦେଇଅଛନ୍ତି ଯେ, ଶିଶୁର ୮ ମାସ ବୟସ ପୂର୍ବର ବୁଦ୍ଧ୍ୟାଙ୍କ ପରବର୍ତ୍ତୀ ବୟସରେ ତାର ଶକ୍ତି ଓ ଯୋଗ୍ୟତା ଅନୁମାନ କରିବାରେ ସାହାଯ୍ୟ କରେ ନାହିଁ । ଏତଦ୍‌ବ୍ୟତୀତ ୨୧ ମାସର ବୁଦ୍ଧି ପରୀକ୍ଷଣରେ ଶିଶୁ ଯେଉଁ କୃତିତ୍ୱ ହାସଲ କରିଥାଏ, ୬।୭ ବର୍ଷ ବୟସରେ ଷ୍ଟାନ୍‌ଫୋର୍ଡ ବିନେ ପରୀକ୍ଷଣରେ ଶିଶୁ ଅନୁରୂପ କୃତିତ୍ୱ ହାସଲ କରିପାରିବ କି ନାହିଁ ପୂର୍ବରୁ ଅନୁମାନ କରି ହୁଏ ନାହିଁ ।

ବିଭିନ୍ନ ପ୍ରୟୋଗମାନଙ୍କରୁ ଜଣାଯାଏ ଯେ, ୧୫ ମାସ ବୟସର ନିଗ୍ରୋ ଓ ଶ୍ୱେତ ଶିଶୁଙ୍କର Bayley Scale of Mental developmentରେ ମିଳିଥିବା ଫଳାଙ୍କରେ କୌଣସି ଉଲ୍ଲେଖଯୋଗ୍ୟ ପ୍ରଭେଦ ନାହିଁ । ଏହା ମଧ୍ୟ ସୂଚିତ ହୁଏ ଯେ, ଶିଶୁମାନଙ୍କର ବୁଦ୍ଧି ପରୀକ୍ଷଣର ଫଳାଙ୍କ ସହିତ ସେମାନଙ୍କର ପରିବାରର ସାମାଜିକ ଓ ଆର୍ଥିକ ପରିସ୍ଥିତିର କୌଣସି ସମ୍ବନ୍ଧ ନାହିଁ । ବିଭିନ୍ନ ପରୀକ୍ଷଣମାନଙ୍କର ଫଳାଫଳ ବିଚାର କରି ମତ ଦିଆଯାଇପାରେ ଯେ ଶୈଶବାବସ୍ଥାର ବୁଦ୍ଧ୍ୟାଙ୍କ ସହିତ ପରବର୍ତ୍ତୀ ବୟସମାନଙ୍କର ବୁଦ୍ଧ୍ୟାଙ୍କ ସହ ସମ୍ପର୍କ ସମ୍ବନ୍ଧରେ ପୂର୍ବରୁ କିଛି ଅନୁମାନ କରିବା ସମ୍ଭବ ନୁହେଁ । ଶିଶୁ ବୁଦ୍ଧି

ଗୁଡ଼ିକ ଅଧିକ ସଂଖ୍ୟାରେ ସାମ୍ପ୍ରତିକ ପ୍ରେରକ କ୍ରିୟାକଳାପକୁ ନେଇ ଗଠିତ ହୋଇଥିବା ବେଳେ ପ୍ରାକ୍ ବିଦ୍ୟାଳୟ ଓ ବିଦ୍ୟାଳୟ ଯିବା ବୟସର ଶିଶୁମାନଙ୍କ ପାଇଁ ବୁଦ୍ଧି ପରୀକ୍ଷଣ ଭାଷା, ଅମୂର୍ତ୍ତ ଚିନ୍ତନ, ବିଚାର ଶକ୍ତି ଏବଂ ସ୍ମରଣ ଶକ୍ତି ସମ୍ବନ୍ଧୀୟ ବିଭିନ୍ନ ବିଷୟକୁ ନେଇ ଗଠିତ ହୋଇଥାଏ । ଏହି କାରଣରୁ ବ୍ୟକ୍ତିର ଶୈଶବାବସ୍ଥାର ବୁଦ୍ଧ୍ୟଙ୍କ ସହିତ ପରବର୍ତ୍ତୀ ଅବସ୍ଥାମାନଙ୍କର ବୁଦ୍ଧ୍ୟଙ୍କର ବିଶେଷ ସମ୍ବନ୍ଧ ନଥାଏ ।

## ବୁଦ୍ଧ୍ୟଙ୍କକୁ ପ୍ରଭାବିତ କରୁଥିବା ଉପାଦାନଗଣ

ଅନୁବଂଶରୁ ପ୍ରାପ୍ତ ହୋଇଥିବା ଲକ୍ଷଣାବଳୀ, ଜନ୍ମଗତ ଗଠନ ପ୍ରଣାଳୀ, ବୌଦ୍ଧିକ କୃତି ପ୍ରଦର୍ଶନ କରିବାପାଇଁ ଉପଯୁକ୍ତ ପାରିପାର୍ଶ୍ୱିକ ଅବସ୍ଥା ଓ ସୁବିଧା ସୁଯୋଗ, ଭାଷାଗତ କୁଶଳତା, ବିଦ୍ୟାଳୟର ପାଠ୍ୟକ୍ରମରେ ଉତ୍ତମ ଫଳାଫଳ ହାସଲ କରିବାପାଇଁ ପ୍ରୋତ୍ସାହନ ଓ ଅଭିପ୍ରେରଣ, ପରିବାରର ଉତ୍ତମ ପ୍ରଭାବ ଓ ଆର୍ଥିକ ସ୍ୱଚ୍ଛଳତା ଇତ୍ୟାଦି ବୁଦ୍ଧ୍ୟଙ୍କକୁ ପ୍ରଭାବିତ କରିଥାଏ ।

ଧୀଶକ୍ତି ସାଧାରଣତଃ ଅନୁବଂଶରୁ ପ୍ରାପ୍ତ ହୋଇଥାଏ । କିନ୍ତୁ ଜନ୍ମ ପରେ ବିଭିନ୍ନ ଉପାଦାନଗଣଙ୍କ ଉପରେ ଅନୁବଂଶ ପ୍ରଦତ୍ତ ଧୀଶକ୍ତିର ବିକାଶ ବା ମନ୍ଥରୀକରଣ ନିର୍ଭର କରିଥାଏ ।

ପୁଷ୍ଟିକର ଖାଦ୍ୟ ନ ମିଳିଲେ ଶିଶୁର ସ୍ୱାସ୍ଥ୍ୟର ଅବନତି ଘଟେ । ତାର ଅଙ୍ଗ ପ୍ରତ୍ୟଙ୍ଗ ଓ ମସ୍ତିଷ୍କର ଉପଯୁକ୍ତ ବିକାଶ ନ ହେବା ଫଳରେ ଧୀଶକ୍ତିର ବିକାଶ ଘଟେନାହିଁ ।

ନିମ୍ନ ସାମାଜିକ, ସାଂସ୍କୃତିକ ଓ ଆର୍ଥିକ ଶ୍ରେଣୀର ଶିଶୁମାନଙ୍କର ଉନ୍ନତ ଭାଷା ବିକାଶ ହୋଇନଥାଏ । ତେଣୁ ଭାଷା ବିକାଶ ଉପରେ ନିର୍ଭର କରୁଥିବା ବୁଦ୍ଧି ପରୀକ୍ଷଣରେ ସେମାନେ କମ ବୁଦ୍ଧ୍ୟଙ୍କ ଲାଭ କରନ୍ତି ।

ପ୍ରାକ୍ ବିଦ୍ୟାଳୟ ଓ ବିଦ୍ୟାଳୟ ସ୍ତରର ଶିଶୁମାନଙ୍କ ଉପରେ ଅଧ୍ୟୟନ କରି ଦେଖାଯାଇଛି ଯେ ନିଗ୍ରୋ ଶିଶୁମାନେ ଶ୍ୱେତ ଶିଶୁଙ୍କ ଅପେକ୍ଷା କମ ବୁଦ୍ଧ୍ୟଙ୍କ ଲାଭ କରନ୍ତି ଏବଂ ନିମ୍ନ ଆର୍ଥିକ, ସାମାଜିକ ବର୍ଗର ଶିଶୁମାନେ ଉଚ୍ଚ ଆର୍ଥିକ ସାମାଜିକ ବର୍ଗର ସମବୟସ୍କ ଶିଶୁମାନଙ୍କଠାରୁ ବୁଦ୍ଧି ପରୀକ୍ଷଣରେ କମ ଫଳାଙ୍କ ହାସଲ କରନ୍ତି । ମଧ୍ୟବିତ୍ତ ପରିବାରର ବାଳକ ବାଳିକା ନିମ୍ନ ପରିବାରର ପିଲାଙ୍କଠାରୁ ନିୟମିତ ଭାବରେ ଲେଖାପଢ଼ା କରିବା ପାଇଁ ଉତ୍ସାହ ପାଆନ୍ତି, ଫଳରେ ସେମାନଙ୍କର ବୌଦ୍ଧିକ ବିକାଶରେ ଉନ୍ନତି ଘଟେ ।

ନିଜର ବୌଦ୍ଧିକ କୁଶଳତାକୁ ବିକଶିତ କରାଇବାରେ ଯଦି ଶିଶୁର ଦୃଢ଼ ଅଭିପ୍ରେରଣ ଥାଏ ଏବଂ ଉଚ୍ଚତର ବୌଦ୍ଧିକ ବିକାଶ ପାଇଁ ଯୋଗ୍ୟତା ଥାଏ, ନିମ୍ନ ସ୍ତରରେ ବୌଦ୍ଧିକ ଯୋଗ୍ୟତା ଥିବା ଅନ୍ୟ ଏକ ଶିଶୁଠାରୁ ଏହି ଶିଶୁ ବୁଦ୍ଧି ପରୀକ୍ଷଣରେ ଅଧିକ ବୁଦ୍ଧ୍ୟାଙ୍କ ଲାଭ କରିବ ବୋଲି ଆଶା କରାଯାଏ ।

## ପିତାମାତାଙ୍କର ପ୍ରଭାବ

ବୌଦ୍ଧିକ ବିକାଶ ପାଇଁ ଉପଯୁକ୍ତ ପାରିପାର୍ଶ୍ୱିକ ଅବସ୍ଥା, ସୁବିଧା ସୁଯୋଗ, ବିଭିନ୍ନ ବୌଦ୍ଧିକ କ୍ରିୟାକଳାପ ତଥା ପାଠ୍ୟରେ ଉତ୍ତମ ଅଭିପ୍ରେରଣ ଓ ପ୍ରୋତ୍ସାହନ ଲାଭ କଲେ ପିଲାର ଧୀଶକ୍ତିରେ ବିକାଶ ଘଟେ । ନିଜର ଜ୍ଞାନକୁ ଉନ୍ନତ କରିବା, ନୂତନ ବିଷୟ ଶିକ୍ଷା କରିବା, ସମସ୍ୟା ସମାଧାନ କରିବା ଇତ୍ୟାଦି ସହିତ ବୁଦ୍ଧ୍ୟାଙ୍କ ସହ ସମ୍ପୃକ୍ତ ହୋଇଥିବାରୁ ପରିବାରର ପ୍ରଭାବ ଏସବୁର ବିକାଶରେ ସାହାଯ୍ୟ କରେ ।

ନିଜର ବୌଦ୍ଧିକ କୁଶଳତାକୁ ବିକଶିତ କରିବାକୁ ଶିଶୁ ପିତାମାତା ଓ ଶିକ୍ଷକଙ୍କଠାରୁ ଦୃଢ଼ ଅଭିପ୍ରେରଣ ଓ ପ୍ରୋତ୍ସାହନ ଲାଭ କଲେ ତାର ଧୀଶକ୍ତିର ବିକାଶ ଘଟେ । ନିଜର ଜ୍ଞାନକୁ ଉନ୍ନତ କରିବା, ନୂତନ ବିଷୟ ଶିକ୍ଷା କରିବା, ସମସ୍ୟା ସମାଧାନ ଇତ୍ୟାଦି କରିବା ସହିତ ବୁଦ୍ଧ୍ୟାଙ୍କ ସମ୍ପୃକ୍ତ ହୋଇଥିବାରୁ ପରିବାରର ପ୍ରଭାବ ଏ ସବୁର ବିକାଶରେ ସାହାଯ୍ୟ କରେ । ଏକ ଅଧ୍ୟୟନରେ କେତେକ ବାଳକ ବାଳିକାଙ୍କ ଉପରେ ବିଭିନ୍ନ ପ୍ରକାରର ପରୀକ୍ଷଣ ପ୍ରୟୋଗ କରାଗଲା ଏବଂ ସେମାନଙ୍କର ପିତାମାତାଙ୍କଠାରୁ ସାକ୍ଷାତକାର ପଦ୍ଧତି ସାହାଯ୍ୟରେ ପିଲାମାନଙ୍କ ସମ୍ବନ୍ଧରେ ବିଭିନ୍ନ ତଥ୍ୟ ସଂଗ୍ରହ କରାଗଲା । ପରୀକ୍ଷଣ ଓ ସାକ୍ଷାତକାରର ଫଳାଫଳକୁ ବିଶ୍ଳେଷଣ କରି ଜଣାଗଲା ଯେ, ଯେଉଁ ପିଲାମାନେ ବୌଦ୍ଧିକ କ୍ରିୟାକଳାପ, ଯଥା : ପୁସ୍ତକ ପାଠ କରିବା, ବିଭିନ୍ନ ଧନ୍ଦା ସମାଧାନ କରିବା, କିଛି ଲେଖାଲେଖି କରିବା ଆଦି କାର୍ଯ୍ୟରେ ଅଧିକ ଆଗ୍ରହ ପ୍ରଦର୍ଶନ କରିଥିଲେ, ସେମାନଙ୍କର ପିତାମାତା ପିଲାର ଉପରୋକ୍ତ କ୍ରିୟାକଳାପର ବିକାଶ ପାଇଁ ଯଥେଷ୍ଟ ଉତ୍ସାହ ଓ ଅଭିପ୍ରେରଣ ଯୋଗାଇଥିଲେ ।

ପର୍ଯ୍ୟବେକ୍ଷଣରୁ ଜଣାଯାଏ ଯେ, ଉଚ୍ଚ ଧରଣର କୃତିତ୍ୱ ହାସଲ କରିବା ନିମନ୍ତେ ଅଭିପ୍ରେରଣ ଥିବା ଶିଶୁମାନଙ୍କର ପିତାମାନେ ଅଧିକ ପ୍ରତିଯୋଗିତା ମନୋଭାବ ପ୍ରଦର୍ଶନ କରନ୍ତି, ସନ୍ତାନସନ୍ତତିଙ୍କର କ୍ରିୟାକଳାପ ପ୍ରତି ଯଥେଷ୍ଟ ଦୃଷ୍ଟି ଦିଅନ୍ତି ଏବଂ ବୌଦ୍ଧିକ କ୍ରିୟା କଳାପରେ ଯଥେଷ୍ଟ ଆନନ୍ଦ ପ୍ରଦର୍ଶନ କରନ୍ତି । ଦୃଷ୍ଟାନ୍ତ ସ୍ୱରୂପ, ପିଲା କାଠ ବା କାଗଜରେ ଘର ବା ପୋଲ ତିଆରି କଲେ ବା ବିଭିନ୍ନ ପ୍ରକାରର ନୂଆ ନୂଆ ପଦାର୍ଥ ଗଠନ କଲେ ଯଦି ପିତାମାତା ତାର କୃତିକୁ ପ୍ରଶଂସା କରି ତାକୁ ବୌଦ୍ଧିକ କ୍ରିୟା-

କଳାପରେ ମନ ଦେବାକୁ ଅଧିକ ଉତ୍ସାହିତ କରନ୍ତି, ତେବେ ଶିଶୁର ବୁଦ୍ଧ୍ୟଙ୍କ ବୃଦ୍ଧି ପାଏ । ଏଣୁ ପିଲାକୁ ଯୋଡ଼ାଯୋଡ଼ି କରିବାକୁ ଅଧିକ ବସ୍ତୁ ଦେଲେ ଏବଂ ଯୋଡ଼ାଯୋଡ଼ି କଲାବେଳେ କୌଣସି ବସ୍ତୁ ଭାଙ୍ଗିଗଲେ ବା ନଷ୍ଟ ହୋଇଗଲେ ପିଲାକୁ ତିରସ୍କାର ନକଲେ ତାର ଧୀଶକ୍ତିର ବିକାଶ ଘଟେ ।

ଅନ୍ୟ କେତେକ ତଥ୍ୟରୁ ପ୍ରମାଣିତ ହୋଇଛି ଯେ, ପିଲା ସମ୍ବନ୍ଧରେ ପିତା-ମାତାଙ୍କର ଉଚ୍ଚ ଅଭିଳାଷ ଥିଲେ ସେମାନଙ୍କର ସନ୍ତାନସନ୍ତତିମାନେ ଜୀବନରେ ଅଧିକ କୃତିତ୍ୱ ହାସଲ କରିବା ପାଇଁ ପ୍ରବଳ ଅଭିପ୍ରେରଣ ଲାଭ କରିଥାନ୍ତି । ଏହା ଫଳରେ ସେମାନଙ୍କର ବୁଦ୍ଧ୍ୟଙ୍କ ବୃଦ୍ଧିପାଏ । କେତେକ ଅଧ୍ୟୟନରୁ ସୂଚିତ ହୁଏ ଯେ, ଶିଶୁକୁ ସ୍ନେହ କରିବା ସଙ୍ଗେ ସଙ୍ଗେ ସୁରକ୍ଷିତ କରିଥିବା ଓ ବୌଦ୍ଧିକ କୃତୀକୁ ଉତ୍ସାହିତ କରିଥିବା ମଧ୍ୟବିତ୍ତ ଶ୍ରେଣୀର ପିତାମାତାଙ୍କର ପିଲାମାନେ ଅଧିକ କୃତିତ୍ୱ ହାସଲ କରିଥାନ୍ତି । ବୁଦ୍ଧ୍ୟଙ୍କ ବୃଦ୍ଧିଲାଭ କରିଥିବା କେତେକ ଶିଶୁଙ୍କୁ ପର୍ଯ୍ୟବେକ୍ଷଣ କରି ଜଣାଯାଇଛି ଯେ ସେମାନେ ସୁସ୍ଥ ସ୍ୱାଧୀନଚେତା, ଅଧିକ ପ୍ରତିଯୋଗୀ ମନୋଭାବାପନ୍ନ ଏବଂ କଥାବାର୍ତ୍ତାରେ ଅଧିକ ଅଗ୍ରଧର୍ମୀ ଓ ପରିଶ୍ରମୀ ତଥା ଅଧ୍ୟବସାୟୀ ହୋଇଥାନ୍ତି । ଏକ ଅଧ୍ୟୟନରୁ ସୂଚିତ ହୁଏ ଯେ, ଯେଉଁ ମାତାମାନେ କନ୍ୟାମାନଙ୍କର କ୍ରିୟାକଳାପ ସମ୍ବନ୍ଧରେ ଅଧିକ ସଚେତନ-ଶୀଳତା ପ୍ରକାଶ କରୁଥିଲେ ସେମାନଙ୍କର କନ୍ୟାମାନଙ୍କର ବୁଦ୍ଧ୍ୟଙ୍କ ୬ରୁ ୧୦ବର୍ଷ ବୟସ ମଧ୍ୟରେ ବୃଦ୍ଧି ଲାଭ କରିବାର ଜଣାଯାଇଥିଲା ।

ଅପରପକ୍ଷରେ ପ୍ରତିକୂଳ ପାରିପାର୍ଶ୍ୱିକ ଅବସ୍ଥା ଧୀଶକ୍ତିର ବିକାଶ ଓ ବୌଦ୍ଧିକ କ୍ରିୟାକଳାପକୁ ବ୍ୟାହତ କରିପାରେ । ଫେଲସ୍ ଗବେଷଣା କେନ୍ଦ୍ରରୁ ଉପରୋକ୍ତ ତଥ୍ୟ ମିଳିଅଛି । ଜୀବନର ପ୍ରଥମ ୪।୫ ବର୍ଷ ମଧ୍ୟରେ ଶିଶୁ ଯେଉଁ ଅଭାବ ଅସୁବିଧା ଓ ବାଧା ବିଘ୍ନର ସମ୍ମୁଖୀନ ହୋଇଥାଏ ବୁଦ୍ଧ୍ୟଙ୍କ ଉପରେ ତାହାର ପ୍ରଭାବ ୮ ବର୍ଷରୁ ୧୬।୧୭ ବର୍ଷ ମଧ୍ୟରେ ସମ୍ମୁଖୀନ ହୋଇଥିବା ବାଧାବିଘ୍ନର ପ୍ରଭାବ ଅପେକ୍ଷା ଅଧିକ ତୀବ୍ର ହୋଇଥାଏ । ଏଣୁ ବିକାଶର ପ୍ରାରମ୍ଭିକ ଅବସ୍ଥାରେ ଯଦି ପ୍ରତିକୂଳ ପାରିପାର୍ଶ୍ୱିକ ଅବସ୍ଥା ମଧ୍ୟରେ ଶିଶୁକୁ ବୃଦ୍ଧି ଲାଭ କରିବାକୁ ହୁଏ, ତେବେ ତାର ବୌଦ୍ଧିକ ବିକାଶ ବହୁ ପରିମାଣରେ ବ୍ୟାହତ ହୁଏ । କାରଣ ପରବର୍ତ୍ତୀ ପାରିପାର୍ଶ୍ୱିକ ଅବସ୍ଥାର ବୌଦ୍ଧିକ ବିକାଶ ଉପରେ ଏତାଦୃଶ ପ୍ରଭାବ ପଡ଼ିନଥାଏ । ଉପରୋକ୍ତ ତଥ୍ୟ ପ୍ରତି ସଚେତନ ହୋଇ ଶିଶୁମାନଙ୍କର ବୌଦ୍ଧିକ କ୍ରିୟାକଳାପର ବିକାଶ ପାଇଁ ଉପଯୁକ୍ତ ପାରିପାର୍ଶ୍ୱିକ ଅବସ୍ଥା ସୃଷ୍ଟି କରିବା ପ୍ରତ୍ୟେକ ପିତାମାତାଙ୍କର ପ୍ରଧାନ କର୍ତ୍ତବ୍ୟ ହେବା ଆବଶ୍ୟକ ।

ବିଶେଷତଃ ବିଭିନ୍ନ କୌତୁହଳ ଓ ଜିଜ୍ଞାସା ପୂରଣ କରିବା ପାଇଁ ପିଲାକୁ ସୁଯୋଗ ଦେବା ବିଧେୟ । ପିଲାର ଜିଜ୍ଞାସା ପୂରଣ ନିମନ୍ତେ ସେ ଯଦି ନାନା ପ୍ରଶ୍ନ ପଚାରି ପିତାମାତା ତଥା ଶିକ୍ଷକଙ୍କୁ ବ୍ୟତିବ୍ୟସ୍ତ କରିପକାଏ ଏଥିପାଇଁ ପିଲା ଉପରେ ବିରକ୍ତ ହୋଇ ତାର

କୌତୂହଳକୁ ଦମନ କରିବା ବୁଦ୍ଧି ହୀନତାର ପରିଚାୟକ । ଅଥବା ପିଲା କୌଣସି ଯନ୍ତ୍ରପାତି ବା ପଦାର୍ଥ ଭଙ୍ଗାଭଙ୍ଗି କରି ତା ମଧ୍ୟରେ କ'ଣ ଅଛି ପରୀକ୍ଷା କରିବାକୁ ଚାହିଁଲେ ସାଧ୍ୟମତେ ସେଥିପାଇଁ ପିଲାକୁ ସୁଯୋଗ ଦେବା ଉଚିତ ।

ପିଲାର ଉପଯୁକ୍ତ ମାନସିକ ବିକାଶ ପାଇଁ ବିଭିନ୍ନ ପ୍ରକାରର ଖେଳନା ମଟର, ରେଳ, ଉଡ଼ାଜାହାଜ, ଟ୍ରାମ, ରେଡ଼ିଓ, ଟେଲିଫୋନ୍, ବିଭିନ୍ନ ପ୍ରକାରର ରଙ୍ଗର ଫଳ, ଫୁଲ ଇତ୍ୟାଦି ଯୋଗାଇବା ଉଚିତ । ଖେଳ ଶିଶୁର ମାନସିକ ବିକାଶ ପାଇଁ ଅପରିହାର୍ଯ୍ୟ । ଏଥିପାଇଁ ଉପଯୁକ୍ତ ପରିବେଷ୍ଟନୀ, ଯଥେଷ୍ଟ ସ୍ଥାନ, ଖେଳ ସରଞ୍ଜାମ ଓ ଖେଳସାଥି ଲୋଡ଼ା । କ୍ରୀଡ଼ା ପିଲାର ଶିକ୍ଷଣ, ଚିନ୍ତନ, ବିଚାରଶକ୍ତି, ସହଯୋଗୀ ଓ ପ୍ରତିଯୋଗୀ ମନୋଭାବ ତ୍ୟାଗ, କଳ୍ପନା ଓ ସୁସ୍ଥ ଆବେଗିକ ବିକାଶ ନିମିତ୍ତ ନିତାନ୍ତ ଆବଶ୍ୟକ । ତେଣୁ ଉପଯୁକ୍ତ ଜ୍ଞାନାତ୍ମକ, ବୌଦ୍ଧିକ ତଥା ମାନସିକ ବିକାଶ ପାଇଁ ଗୃହ ପରିବେଷ୍ଟନୀରେ ପିଲାର ଖେଳ ପାଇଁ ସମସ୍ତ ପ୍ରକାରର ବ୍ୟବସ୍ଥା ରହିବା ଆବଶ୍ୟକ ।

ପରିଶେଷରେ ଏହା ନିଶ୍ଚିତ ଭାବରେ କୁହାଯାଇପାରେ ଯେ, ଗୃହର ପରିବେଶ ଯେପରି ଶିଶୁର ବୌଦ୍ଧିକ ଓ ମାନସିକ ବିକାଶ ପାଇଁ ଉପଯୁକ୍ତ ହୋଇପାରିବ ସେ ଦିଗରେ ଧ୍ୟାନ ଦେବା ବିଧେୟ ।

## ବୌଦ୍ଧିକ ବିଚଳିତ ଶିଶୁ

ଶ୍ରେଣୀରେ ଶିକ୍ଷକ ଶିକ୍ଷୟିତ୍ରୀମାନେ ଅନେକ କ୍ଷେତ୍ରରେ ଲକ୍ଷ୍ୟକରନ୍ତି ଯେ, କେତେକ ଛାତ୍ରଛାତ୍ରୀ ପାଠ୍ୟ ବିଷୟବସ୍ତୁ ସଠିକଭାବେ ହୃଦୟଙ୍ଗମ କରିପାରୁ ନାହାନ୍ତି । ବିଭିନ୍ନ ବୌଦ୍ଧିକ କ୍ରିୟାକଳାପରେ ହୀନତା ପ୍ରକାଶ କରୁଛନ୍ତି । ଏପରି ପିଲାଙ୍କୁ ବୌଦ୍ଧିକ ବିଚଳିତ ଶିଶୁ କୁହାଯାଏ ।

ଷ୍ଟାନ୍‌ଫୋର୍ଡ଼ ବିନେ ବୁଦ୍ଧି ପରୀକ୍ଷଣର ମାନକ ଅନୁସାରେ ଏପରି ମାନସିକ ହୀନ ଶିଶୁ ପ୍ରାୟ ୩୫-୭୦ ଭିତରେ ବୁଦ୍ଧ୍ୟଙ୍କ ଲାଭ କରନ୍ତି । ଏହି ପିଲା ଶ୍ରେଣୀର ଅନ୍ୟ ପିଲାଙ୍କ ସହିତ ମିଶି ପାଠ ପଢ଼ିଲେ ବିଶେଷ କିଛି ଉପକୃତ ହୋଇପାରନ୍ତି ନାହିଁ । ଏପରି ଶିଶୁଙ୍କ ପାଇଁ ସ୍ୱତନ୍ତ୍ର ଶ୍ରେଣୀର ପ୍ରୟୋଜନ ଥାଏ । ଏମାନଙ୍କର ଧୀଶକ୍ତି ଓ ବୌଦ୍ଧିକ ଯୋଗ୍ୟତାକୁ ଲକ୍ଷ୍ୟ ରଖି ସ୍ୱତନ୍ତ୍ର କାର୍ଯ୍ୟକ୍ରମ ଓ ଶିକ୍ଷା ପ୍ରଣାଳୀ ପ୍ରସ୍ତୁତ ହେବା ଆବଶ୍ୟକ । ବିଶେଷତଃ ଶିଶୁର ଶାରୀରିକ ଓ ମାନସିକ ବିକାଶର ଅଧିକ ଉନ୍ନତି ପାଇଁ ପାଠ୍ୟକ୍ରମ ତଥା କାର୍ଯ୍ୟକ୍ରମ ଯେପରି ପ୍ରସ୍ତୁତ ହୁଏ ସେଥିପ୍ରତି ସଚେତନ ହେବା ଆବଶ୍ୟକ । ସେମାନଙ୍କୁ ବ୍ୟାବସାୟିକ

ପ୍ରଶିକ୍ଷଣ ଦେଇ ବିଭିନ୍ନ ଛାତ୍ର ପାଇଁ ଯୋଗ୍ୟ କରାଇବାକୁ ପାଠ୍ୟକ୍ରମ ପ୍ରସ୍ତୁତ କରିବା ଆବଶ୍ୟକ । ବାଳକ ଓ ବାଳିକାମାନଙ୍କ ପାଇଁ ମଧ୍ୟ ସ୍ୱତନ୍ତ୍ର କାର୍ଯ୍ୟକ୍ରମ ପ୍ରସ୍ତୁତ ହେବା ପ୍ରୟୋଜନ ।

ଯେପରି ମନ୍ଦିତ ବୁଦ୍ଧି ବାଳକ ବାଳିକାଙ୍କର ଶିକ୍ଷା ପାଇଁ ସ୍ୱତନ୍ତ୍ର ଦୃଷ୍ଟି ଦିଆଯିବା ଆବଶ୍ୟକ ସେହିପରି ଉତ୍କୃଷ୍ଟ ଅସାମାନ୍ୟ ଓ ପ୍ରତିଭାବାନ ବାଳକ ବାଳିକାଙ୍କ ପାଇଁ ସ୍ୱତନ୍ତ୍ର ଶିକ୍ଷାଦାନର ବ୍ୟବସ୍ଥା ରହିବା ଉଚିତ । ଏପରି ପିଲାଙ୍କର ସର୍ବପ୍ରଥମ ଆବଶ୍ୟକତା ହେଲା ନିଜର ମୌଳିକ ସୃଜନାତ୍ମକ ସମ୍ଭାବ୍ୟ ତଥା ଯୋଗ୍ୟତାକୁ ବିକଶିତ କରାଇବାର ପୂର୍ଣ୍ଣ ସୁଯୋଗ ଲାଭ କରିବା । ଏହା ଉଚିତ ପ୍ରଶିକ୍ଷଣଦ୍ୱାରା ସମ୍ଭବ । ବିଭିନ୍ନ ପ୍ରକାରର ଶିଶୁମାନଙ୍କୁ ପ୍ରାରମ୍ଭରୁ ପର୍ଯ୍ୟବେକ୍ଷଣ କରି ଓ ବୁଦ୍ଧି ପରୀକ୍ଷଣ ଦେଇ ସେମାନଙ୍କ ପାଇଁ ଉଚିତ କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଇପାରେ ।

ବହୁ ମନୋବୈଜ୍ଞାନିକ ଉତ୍କୃଷ୍ଟ ଓ ପ୍ରତିଭାଶାଳୀ ବାଳକବାଳିକାମାନଙ୍କ ପାଇଁ ସ୍ୱତନ୍ତ୍ର ଶ୍ରେଣୀର ବ୍ୟବସ୍ଥା କରିବା ଉଚିତ ବୋଲି ମନେକରନ୍ତି । କିନ୍ତୁ ଆଜି କେତେକ ମନୋବୈଜ୍ଞାନିକ ସାମାଜିକ ତଥା ଶିକ୍ଷାତ୍ମକ ଦୃଷ୍ଟିରୁ ଏହା ଉଚିତ ବୋଲି ମନେକରନ୍ତି ନାହିଁ । ଉଭୟ ଜଡ଼ମତି ମାନସିକ ସ୍ୱାନ ଅଥବା ନ୍ୟୂନ ମନୋଦ୍ଭବ ସମ୍ପନ୍ନ ଓ ଉତ୍କୃଷ୍ଟମତି ବାଳକମାନଙ୍କୁ ବ୍ୟକ୍ତିଗତ ନିର୍ଦ୍ଦେଶ ଦେବା ବିଧେୟ । ଧୀମାନ୍ ବାଳକ ବାଳିକାଙ୍କୁ ଶ୍ରେଣୀର ମନିଟର ବା ପ୍ରୋକ୍ଟର ଦାୟିତ୍ୱ ଦେଲେ ସେମାନଙ୍କଠାରୁ ଅନ୍ୟ ଛାତ୍ରଛାତ୍ରୀମାନେ ଯଥେଷ୍ଟ କିଛି ଶିକ୍ଷା କରିପାରିବେ ଏବଂ ସେମାନଙ୍କର ଶକ୍ତି ଓ ଯୋଗ୍ୟତାର ମଧ୍ୟ ଉପଯୁକ୍ତ ବିନିଯୋଗ ହୋଇପାରିବ ।

— — —

# ସପ୍ତମ ଅଧ୍ୟାୟ

## ସାମାଜିକ ବିକାଶ

ପ୍ରାଥମିକ ବିଦ୍ୟାଳୟର ଶିଶୁମାନଙ୍କର ଚିନ୍ତାଧାରା, ଅନୁଭୂତି ଓ ଆଚରଣ ଲକ୍ଷ୍ୟ-କଲେ ସେମାନଙ୍କର ସାମାଜିକ ବିକାଶ ସମ୍ପର୍କରେ ସମ୍ୟକ ଧାରଣା ହୁଏ । ଏଠାରେ ବିଭିନ୍ନ ପ୍ରକାରର ଶିଶୁ ଦେଖିବାକୁ ମିଳନ୍ତି । କୌଣସି ଏକ ଶିଶୁ ଅତ୍ୟନ୍ତ ମେଳାପି, ଅକୁଣ୍ଠିତ ଚିତ୍ତରେ ସମସ୍ତଙ୍କ ସହିତ ମିଳାମିଶା କରୁଛି, ବିଦ୍ୟାଳୟର ବିଭିନ୍ନ ସାମାଜିକ କ୍ରିୟାକଳାପରେ ସକ୍ରିୟ ଅଂଶ ଗ୍ରହଣ କରୁଛି । ଏଥିପାଇଁ ଶିଶୁଟି ସମସ୍ତଙ୍କର ହୃଦୟକୁ ଜୟ କରିପାରିଛି । ଅପର ପକ୍ଷରେ ଆଉ ଏକ ଶିଶୁ ବିଦ୍ୟାଳୟକୁ ଆସିବା ପାଇଁ କୁଣ୍ଠିତ, ସର୍ବଦା ବିଷର୍ଣ୍ଣ, ଅନ୍ୟ ପିଲମାନଙ୍କ ସହିତ ମିଳାମିଶା ବା ଖେଳାଖେଳି କରିବାକୁ ସୁଖ ପାଉନାହିଁ । ଫଳତଃ ସେ ଅନ୍ୟମାନଙ୍କଠାରୁ ଦୂରେଇ ରହିବାକୁ ଚାହୁଁଛି । ସମାଜର ଏହି ଦୁଇ ବିପରୀତମୁଖୀ ଶିଶୁଙ୍କ ବ୍ୟବହାରକୁ ଲକ୍ଷ୍ୟକଲେ ଜଣାଯାଏ ଯେ, ପ୍ରଥମ ଶିଶୁର ଉପଯୁକ୍ତ ସାମାଜିକ ବିକାଶ ହୋଇଥିବା ସ୍ଥଳେ ଦ୍ୱିତୀୟ ଶିଶୁର ଯଥେଷ୍ଟ ସାମାଜିକ ବିକାଶ ହୋଇନାହିଁ ।

ମନୁଷ୍ୟ ଏକ ସାମାଜିକ ଜୀବ । ଜନ୍ମଠାରୁ ମୃତ୍ୟୁପର୍ଯ୍ୟନ୍ତ ମନୁଷ୍ୟକୁ ସମାଜ ମଧ୍ୟରେ ରହି ଜୀବନଯାପନ କରିବାକୁ ହୋଇଥାଏ, କିନ୍ତୁ ଉପଯୁକ୍ତ ସାମାଜିକ ବିକାଶ ପାଇଁ ଶିଶୁକୁ ଯଥେଷ୍ଟ ସୁବିଧା ସୁଯୋଗ ଦେବା ଆବଶ୍ୟକ ।

ଜନ୍ମ ପରେ ନିଜର ଅସହାୟତା ଓ ପରିବର୍ତ୍ତିନଶୀଳତା ଯୋଗୁଁ ଶିଶୁକୁ ପରିବାରର ଅନ୍ୟ ବୟସ୍କ ବ୍ୟକ୍ତିମାନଙ୍କ ସହିତ ପାରସ୍ପରିକ ପ୍ରକ୍ରିୟାରେ ଆବଦ୍ଧ ହେବାକୁ ହୁଏ । ଅନ୍ୟ-ମାନଙ୍କ ସହିତ ମିଳାମିଶା କରି ସେ ସାମାଜିକତା ଶିକ୍ଷାକରେ । ଅନ୍ୟ ପିଲଙ୍କ ସଂସ୍ପର୍ଶରେ ଆସି ଶିଶୁ ଆସ୍ତେ ଆସ୍ତେ ସମାଜର ରୀତି ନୀତି ଲକ୍ଷ୍ୟ କରେ । ଶିଶୁର ସରଳ, ତରଳ ମନ ଉପରେ ଏହା ବିଶେଷ ପ୍ରଭାବ ପକାଏ । ପ୍ରାରମ୍ଭରେ ଶିଶୁ ସ୍ୱାର୍ଥପର ଓ ଆତ୍ମକେନ୍ଦ୍ରିକ ଥାଏ, ମାତ୍ର ଅନ୍ୟମାନଙ୍କଠାରୁ ସାହାଯ୍ୟ ଓ ସହାୟତା ଲାଭ କରି ସେ ଆସ୍ତେ ଆସ୍ତେ ହୃଦୟଙ୍ଗମ କରେ ଯେ ଅନ୍ୟମାନଙ୍କ ସାହାଯ୍ୟ ବିନା ସେ ସମାଜରେ ଚଳିପାରିବ ନାହିଁ । ତେଣୁ ସମାଜରେ ଗ୍ରହଣୀୟ ହେଲାଭଳି ନିଜର ଆଶା, ଆକାଂକ୍ଷା ତଥା ଆଗ୍ରହ ଓ ବ୍ୟବହାରରେ ପରିବର୍ତ୍ତନ ଆଣି ସେ ନିଜକୁ ଏକ ସାମାଜିକ ଜୀବ ରୂପେ ଗଢ଼େ ।

ପୁନର୍ବଳନ (Reinforcement) ମାଧ୍ୟମରେ ଶିଶୁର ସାମାଜିକତାର ବିକାଶ ହୁଏ । ପିଲାର ଯେଉଁ ବ୍ୟବହାରଗୁଡ଼ିକ ସମାଜଦ୍ୱାରା ଆଦୃତ ଏବଂ ଗ୍ରହଣୀୟ ହୁଏ ଏବଂ ଏଥିଲାଗି ସେ ପ୍ରଶଂସା ଭାଜନ ହୁଏ, ସେହି କାର୍ଯ୍ୟଗୁଡ଼ିକୁ ସେ ବାରମ୍ବାର ପ୍ରଦର୍ଶନ କରେ ।

ଯେଉଁ କାର୍ଯ୍ୟଗୁଡ଼ିକୁ କରିବାକୁ ତାକୁ ବାରଣ କରାଯାଏ ବା କଲେ ସେ ଦଣ୍ଡ ପାଏ, ସେହି କାର୍ଯ୍ୟଗୁଡ଼ିକୁ ସେ କରେ ନାହିଁ । ସାମାଜିକ ହେବାକୁ ହେଲେ ଯେ କୌଣସି ବ୍ୟକ୍ତିକୁ ନିଜର ଭାବଧାରା ଅନ୍ତର୍ନିହିତ ଶକ୍ତି, ଇଚ୍ଛା ଓ ଆକାଂକ୍ଷାକୁ ସମାଜର ଇଚ୍ଛା, ଭାବଧାରା ଓ ଆଦର୍ଶ ସହିତ ମିଳାଇଦେବାକୁ ହୁଏ । ସମାଜ ଓ ସଂସ୍କୃତିର ପରମ୍ପରାକୁ ମାନିନେଇ ସମୂହ ସ୍ୱାର୍ଥ ପାଇଁ ବ୍ୟକ୍ତିଗତ ସ୍ୱାର୍ଥକୁ ତ୍ୟାଗ କରିବାକୁ ହୁଏ । ଯେଉଁ ପିଲା ଯେତେ ପରିମାଣରେ ନିଜକୁ ସାମାଜିକ ରୀତି ନୀତି ସହିତ ଉପଯୋଜିତ କରିପାରେ, ଅନ୍ୟମାନଙ୍କ ଆଶା, ଆକାଂକ୍ଷା ଓ ରୁଚି ଅନୁଯାୟୀ ନିଜର ବ୍ୟବହାରକୁ ପରିବର୍ତ୍ତିତ ଓ ପରିଶୃଙ୍ଖଳିତ କରେ ତାକୁ ସେତିକି ସାମାଜିକ କୁହାଯାଏ ।

ସାମାଜିକ ଶିକ୍ଷା ସର୍ବପ୍ରଥମେ ଗୃହ ପରିବେଶ ମଧ୍ୟରେ ଆରମ୍ଭ ହୁଏ । ତେଣୁ ପରିବାରର ଅବଦାନ ଉପରେ ହିଁ ଶିଶୁର ସାମାଜିକ ବିକାଶ ନିର୍ଭର କରେ । ଶୈଶବାବସ୍ଥାରେ ପିଲାକୁ ଯଦି ଉପଯୁକ୍ତ ସାଙ୍ଗସାଥି ଓ ବ୍ୟକ୍ତିବିଶେଷଙ୍କ ସହିତ ମିଳାମିଶା କରିବାର ସୁଯୋଗ ମିଳେ ଏବଂ ଅନ୍ୟକୁ ସାହାଯ୍ୟ କରିବା, ସ୍ୱାର୍ଥ ତ୍ୟାଗ କରିବା, ଅନ୍ୟ ସହିତ ସହଯୋଗ କରିବା ଓ ସମାଜର ସେବା ଇତ୍ୟାଦି କରିବାକୁ ଉପଯୁକ୍ତ କ୍ଷେତ୍ର ପ୍ରସ୍ତୁତ କରାଯାଏ ତାର ସୁସ୍ଥ ସାମାଜିକ ବିକାଶ ହୋଇଥାଏ । ଶିଶୁର ସୁସ୍ଥ ସାମାଜିକ ବିକାଶ ପାଇଁ ସମାଜ ସହିତ ସମ୍ପର୍କ ରଖିବା ଏକାନ୍ତ ଆବଶ୍ୟକ । ପରିବାରର ସାହାଯ୍ୟ, ଉପଦେଶ, ଆଦର୍ଶ ତଥା ତତ୍ତ୍ୱାବଧାନ ଶିଶୁର ସାମାଜିକ ବିକାଶକୁ ବିଶେଷ ଭାବରେ ତ୍ୱରାନ୍ୱିତ କରିଥାଏ ।

ଚାଲିବୁଲି କରିବା ପୂର୍ବରୁ ଶିଶୁ ଅନ୍ୟମାନଙ୍କ ସହିତ ମିଳାମିଶା କରିବାକୁ ବିଶେଷ ସୁଯୋଗ ପାଏନାହିଁ । ମାତ୍ର ଚାଲିବାକୁ ସକ୍ଷମ ହେବା ପରେ ତାର ପରିବେଷ୍ଟନୀ ଯଥେଷ୍ଟ ବିସ୍ତୃତ ହୁଏ । କାରଣ ଇଚ୍ଛାନୁସାରେ ଅନ୍ୟମାନଙ୍କ ନିକଟକୁ ଯିବା ଆସିବା କରି ସେ ଅନେକ କଥା ଶିକ୍ଷା କରିଥାଏ ।

ସାଧାରଣତଃ ତିନୋଟି ପ୍ରକ୍ରିୟା ମଧ୍ୟ ଦେଇ ଶିଶୁର ସାମାଜିକ ବିକାଶ ହୋଇଥାଏ ।

୧ । ଉପଯୁକ୍ତ ବ୍ୟବହାର ପ୍ରଦର୍ଶନ କରିବା ;

୨ । ସମାଜରେ ସ୍ୱୀକୃତ ହୋଇଥିବା ନୀତି ନିୟମ ମାନି ଚାଲିବା ;

୩ । ଉପଯୁକ୍ତ ସାମାଜିକ ମନୋବୃତ୍ତି ପ୍ରଦର୍ଶନ କରିବା ।

ଉପଯୁକ୍ତ ସାମାଜିକ ବିକାଶ ସମ୍ବନ୍ଧରେ ପ୍ରତି ସମାଜରେ କିଛି ନା କିଛି ମାନଦଣ୍ଡ ରହିଛି । ଏକ ସମାଜରେ ଯେଉଁ ବ୍ୟବହାର ଗ୍ରହଣୀୟ ବା ଆଦୃତ, ଅନ୍ୟ ଏକ ସମାଜରେ ତାହା ହୁଏତ ଗ୍ରହଣୀୟ ହୋଇନପାରେ । ତେଣୁ ସମାଜରେ ଯେଉଁ ରୀତି, ନୀତି ଓ ଆଚରଣ ଗ୍ରହଣୀୟ ତାହା ପ୍ରଦର୍ଶନ କଲେ ସାମାଜିକତାର ବିକାଶ ଘଟେ ।

ସାମାଜିକ ବ୍ୟକ୍ତିମାନେ ସାଧାରଣତଃ ବହିର୍ବନ୍ତ, ତ୍ୟାଗୀ, ସନ୍ତୁଷ୍ଟ ଓ ମେଳାପୀ ହୋଇଥାନ୍ତି । ଦଳ ତଥା ସମାଜର ବିଭିନ୍ନ କାର୍ଯ୍ୟକଳାପକୁ ପସନ୍ଦ କରିବା ସଙ୍ଗେ ସଙ୍ଗେ ଏମାନେ

ସହିତ ନିଜକୁ ଓତଃପ୍ରୋତ ଭାବେ ଜଡ଼ିତ କରି ଆନନ୍ଦ ଲାଭ କରନ୍ତି । ଜଣେ ସାମାଜିକ ବ୍ୟକ୍ତି ନିଜର ବନ୍ଧୁତ୍ୱ, ବ୍ୟବହାର ଓ ସାହାଯ୍ୟ ସହଯୋଗ ମନୋଭାବ ଦ୍ୱାରା ସାମାଜିକ ମନୋବୃତ୍ତି ପ୍ରକାଶ କରିଥାଏ ।

ଅପର ପକ୍ଷରେ ଉପଯୁକ୍ତ ସାମାଜିକ ବିକାଶ ହୋଇନଥିବା ବାଳକ ବାଳିକା ସମାଜର କାର୍ଯ୍ୟକଳାପ ପ୍ରତି ଅନୁକୂଳ ମନୋଭାବ ପୋଷଣ କରନ୍ତି ନାହିଁ ଏବଂ ସେଗୁଡ଼ିକୁ ମାନିବାକୁ କୁଣ୍ଠାବୋଧ କରନ୍ତି । ଏହି ଧରଣର ଶିଶୁମାନେ କୌଣସି ଆବଶ୍ୟକତା ପାଇଁ ଅଧିକାଂଶ ସମୟରେ ପିତାମାତା ଓ ସାଙ୍ଗସାଥିଙ୍କ ଉପରେ ନିର୍ଭର କରନ୍ତି । ଅନ୍ୟମାନଙ୍କ ସହିତ ମିଳିମିଶି ଚଳିବାକୁ ସେମାନଙ୍କୁ ଅସୁବିଧା ହୁଏ । ଶୈଶବାବସ୍ଥାରେ ଅନ୍ୟ ସାମାଜିକ ବ୍ୟକ୍ତିମାନଙ୍କ ସହିତ ମିଳାମିଶା କରିବାର ସୁଯୋଗ ନ ପାଇଲେ, ବାଲ୍ୟାବସ୍ଥାରୁ ଅସାମାଜିକ ବ୍ୟକ୍ତିଙ୍କ ସଂସ୍ପର୍ଶରେ ଆସିଲେ ଶିଶୁ ଅସାମାଜିକ ହେବାକୁ ଶିକ୍ଷା କରେ । ସେ ଦୃଷ୍ଟିରୁ ଏହା କହିବା ବାହୁଲ୍ୟ ଯେ ଶିଶୁର ଅଭିଜ୍ଞତା ଯଦି ସାମାଜିକ ବିକାଶ ପକ୍ଷରେ ଅନୁକୂଳ ହୁଏ ତେବେ ସେ ସାମାଜିକ ହୁଏ । ଏଣୁ ଶିଶୁଙ୍କୁ ସୁସ୍ଥ ଓ ସାମାଜିକ ବ୍ୟକ୍ତିଙ୍କ ସହିତ ମିଳାମିଶା କରିବାକୁ, ସାମାଜିକ କ୍ରିୟାକଳାପ, ଯଥା : ପୂଜା, ଉତ୍ସବ, କ୍ରୀଡ଼ା ପ୍ରତିଯୋଗିତା, ପୁରସ୍କାର ବିତରଣୀ ଉତ୍ସବ, ବଣଭୋଜି, ପରିଭ୍ରମଣ ଇତ୍ୟାଦିରେ ଭାଗନେବାକୁ ; ସ୍କାଉଟ୍, ଗାଇଡ୍ ଓ ଏନ୍. ସି. ସି. ଶିବିରରେ ଯୋଗଦେବାକୁ ସମସ୍ତ ପ୍ରକାରର ସୁଯୋଗ ଓ ପ୍ରୋତ୍ସାହନ ଦେବା ବିଧେୟ ।

ଶିଶୁର ଶାରୀରିକ, ମାନସିକ ଓ ନୈତିକ ବିକାଶ ଉପରେ ତା'ର ସାମାଜିକ ବିକାଶ ନିର୍ଭର କରେ । ଶିଶୁର ଶାରୀରିକ ଅବସ୍ଥା ଏବଂ ଜୀବନର ବ୍ୟର୍ଥତା ବା ହତାଶା ଯଦି ସାମାଜିକ ବିକାଶରେ ପ୍ରତିବନ୍ଧକ ସୃଷ୍ଟି ନ କରେ ତେବେ ତାର ଉପଯୁକ୍ତ ସାମାଜିକ ବିକାଶ ହୁଏ ।

### ସାମାଜିକ ବ୍ୟବହାରର ଆରମ୍ଭ

ନବଜାତ ଶିଶୁର ବୟସ୍କ ମନୁଷ୍ୟମାନଙ୍କ ପ୍ରତି କୌଣସି ଆଗ୍ରହ ନଥାଏ । ବ୍ୟକ୍ତି ଓ ପଦାର୍ଥ ମଧ୍ୟରେ ସେ ପ୍ରଭେଦ ଦେଖିପାରେ ନାହିଁ । ତେଣୁ ଏହାକୁ non gregarious at birth' କୁହାଯାଏ । ପ୍ରଥମ ଦୁଇମାସ ମଧ୍ୟରେ କେବଳ ଉଚ୍ଚ ଶବ୍ଦ ଶିଶୁର ଦୃଷ୍ଟି ଆକର୍ଷଣ କରେ ଏବଂ ମନୁଷ୍ୟର ସ୍ୱର ଓ ଅନ୍ୟ ଶବ୍ଦ ମଧ୍ୟରେ ସେ ପ୍ରଭେଦ ବାରିପାରେ ନାହିଁ । ଏପରିକି ଏହି ବୟସରେ ଏକ କ୍ରନ୍ଦନରତ ଶିଶୁକୁ ମାତାର ସ୍ପର୍ଶ ବଦଳରେ ଉଷୁମ ପାଣି ବୋତଲ ମଧ୍ୟରେ ଓ ନରମ ତଳିରେ ଶୁଆଇ ଚୁପ କରାଯାଇପାରେ । କ୍ରମେ କ୍ରମେ ଶିଶୁ ଅନ୍ୟ ବ୍ୟକ୍ତିମାନଙ୍କ ସଂସ୍ପର୍ଶରେ ଆସି ଉଚ୍ଚ ଶବ୍ଦ ଓ ମନୁଷ୍ୟର ସ୍ୱର ମଧ୍ୟରେ, ବ୍ୟକ୍ତି ଓ ପଦାର୍ଥର ସ୍ପର୍ଶ ମଧ୍ୟରେ ଭିନ୍ନତା ବାରିପାରେ । ପ୍ରାୟ ୩ ମାସ ବେଳକୁ ସେ ମନୁଷ୍ୟର ଉପସ୍ଥିତିକୁ ଭଲ ପାଏ । କୌଣସି ବ୍ୟକ୍ତିଙ୍କୁ ଦେଖିଲେ ବା ମନୁଷ୍ୟର ସ୍ୱର ଶୁଣିଲେ ସେ କଡ଼ ଲେଉଟାଇ ଚାହେଁ ଓ ସେମାନଙ୍କ ଉପସ୍ଥିତିରେ ଆନନ୍ଦିତ ହୁଏ ବା ହସେ, କିନ୍ତୁ

ସ୍ବଲିଗଲେ କାନ୍ଦେ ଅଥବା ବିରସ ହୁଏ । ଏଣୁ ହସିବା, କାନ୍ଦିବା, କଡ଼ ଲେଉଟାଇ ଗୁନ୍ଦିବା ଇତ୍ୟାଦିରୁ ଶିଶୁ ପ୍ରଥମେ ଅଳ୍ପ ଅଳ୍ପ ସାମାଜିକ ବ୍ୟବହାର ପ୍ରଦର୍ଶନ କରେ । ଏହି ଅବସ୍ଥାରେ ପ୍ରକୃତ ସାମାଜିକ ବ୍ୟବହାର ଆରମ୍ଭ ହୋଇଥାଏ ।

ପ୍ରଥମ ମାସରେ ମନୁଷ୍ୟ ସ୍ୱର ଶୁଣି ଚୁଚୁମିବା ଶବ୍ଦ କରି ଶିଶୁ ତାର ସାମାଜିକ ବ୍ୟବହାର ପ୍ରଦର୍ଶନ କରେ । ଦ୍ୱିତୀୟ ମାସରେ ମନୁଷ୍ୟ ସ୍ୱର ଶୁଣିଲେ ମୁଣ୍ଡ ଟେକି ଅନାଏ ବା କାନ୍ଦୁଥିଲେ କେହି କୋଳ କଲେ ଚୁପ ହୁଏ । ତୃତୀୟ ମାସରେ ଶିଶୁଟି କନ୍ଦନରତ ଥିଲାବେଳେ ତା ସହିତ କଥାବାର୍ତ୍ତା କଲେ ସେ କାନ୍ଦ ବନ୍ଦକରେ ; କେହି ଗ୍ଲଲିଗଲେ କନ୍ଦନ କରି ମନୁଷ୍ୟର ଉପସ୍ଥିତି ପ୍ରତି ନିଜର ଆଗ୍ରହ ପ୍ରଦର୍ଶନ କରେ । ଏହି ବୟସରେ ଶିଶୁ ତାର ମାତାକୁ ଚିହ୍ନିପାରେ ।

ଚତୁର୍ଥ ମାସରେ କେହି ଶିଶୁକୁ କୋଳ କରିବାକୁ ଆସିଲେ ସେ ହାତଗୋଡ଼ ଟେକି କୋଳକୁ ଡେଇଁ ପଡ଼ିବାକୁ ଚେଷ୍ଟା କରେ । ଅଥବା ସେହିପରି ଅଙ୍ଗଭଙ୍ଗୀ ପ୍ରଦର୍ଶନ କରେ । କେହି ହସିଲେ ବା କଥା କହିଲେ ପ୍ରତିଦାନରେ ସେ ମଧ୍ୟ ହସେ ।

ପଞ୍ଚମ ଓ ଷଷ୍ଠ ମାସରେ ଶିଶୁକୁ ଗୁନ୍ଦି ହସିଲେ ସେ ହସେ ଓ ତାକୁ ଗାଳିଦେଲେ ସେ କାନ୍ଦିବା ଆରମ୍ଭ କରିଦିଏ । ତେଣୁ ଏହି ବୟସରେ ସେ ଭଲ ପାଇବା ଓ ବିରକ୍ତ ହେବା ମଧ୍ୟରେ ପ୍ରଭେଦ ବାରିପାରେ । ନୂତନ ଓ ଅଜଣା ଲୋକଙ୍କୁ ଅଚିହ୍ନା ବାରେ । ସପ୍ତମ ଓ ଅଷ୍ଟମ ମାସରେ ଅନ୍ୟ ପିଲାଙ୍କ ସହିତ ମିଶିବାକୁ ସେ ଭଲ ପାଏ । ଅଷ୍ଟମ ଓ ନବମ ମାସରେ ସେ ଅନ୍ୟମାନଙ୍କ କଥାବାର୍ତ୍ତା ଓ ଗ୍ଲଲିଚଳନ ଅନୁକରଣ କରେ ।

୯ରୁ ୧୧ମାସ ମଧ୍ୟରେ ଶିଶୁ ଅନ୍ୟ ଶିଶୁମାନଙ୍କର ମୁଣ୍ଡବାଳ ଓ ଜାମା ପ୍ରଭୃତି ଟାଣି, ଚମୁଟି ସେମାନଙ୍କ ଦୃଷ୍ଟି ଆକର୍ଷଣ କରେ । ଏହିପରି ଭାବରେ ପ୍ରଥମ ବର୍ଷରେ ଶିଶୁର ସାମାଜିକ ବ୍ୟବହାର ପ୍ରକାଶ ପାଇଥାଏ । ଏତଦ୍‌ବ୍ୟତୀତ ପିଲାକୁ ଗାଧୋଇଦେବା, ପୋଷାକ ପିନ୍ଧାଇଦେବା ଓ ଖୁଆଇବାବେଳେ ଶିଶୁ ସେମାନଙ୍କୁ ପର୍ଯ୍ୟବେକ୍ଷଣ କରି ସେମାନଙ୍କର ବ୍ୟବହାର ତଥା ଗ୍ଲଲିଚଳନକୁ ଅନୁକରଣ କରିବାକୁ ଶିଖେ ।

୪ ମାସ ପୂର୍ବରୁ ଶିଶୁର ହସର କୌଣସି ସାମାଜିକ ମୂଲ୍ୟ ନଥାଏ । ୧୮ ମାସରୁ ୨ ବର୍ଷ ମଧ୍ୟରେ ହର୍ଷ ଏକ ସାମାଜିକ ବ୍ୟବହାର ହିସାବରେ ଶିଶୁଠାରେ ପୂର୍ଣ୍ଣମାତ୍ରାରେ ପ୍ରକାଶ ପାଏ ।

ପ୍ରାୟ ୨ ବର୍ଷର ଶେଷ ଆଡ଼କୁ ଶିଶୁ ତାର ଖେଳନା ଉପରେ ଅଧିକ ଆଗ୍ରହ ନ ଦେଖାଇ ଖେଳସାଥିମାନଙ୍କ ଉପରେ ଆଗ୍ରହ କେନ୍ଦ୍ରୀଭୂତ କରେ ଏବଂ ଖେଳ ଓ ଖେଳନା ମଧ୍ୟରେ ସାମାଜିକ ସମ୍ପର୍କ ଗଠନ କରିବାକୁ ପ୍ରୟାସ କରେ । ଏହି ବୟସରେ ନିଜର ଦୈନନ୍ଦିନ କ୍ରିୟାକଳାପ, ଯଥା : ଗାଧୋଇବା, ପୋଷାକ ପିନ୍ଧିବା ଓ ଖାଇବା ପ୍ରଭୃତି ସ୍ୱାଧୀନ ଭାବରେ ସମ୍ପାଦନ କରିବାକୁ ଶିକ୍ଷା କରେ । ଏହି ବୟସରେ ମଧ୍ୟ ସେ ଅନ୍ୟମାନଙ୍କ ସହିତ ବାଦବିବାଦ କରି କାମ ହାସଲ କରିବାକୁ ଚେଷ୍ଟା କରେ ।

## ଶୈଶବାବସ୍ଥାରେ ସାମାଜିକ ବ୍ୟବହାର

ଶୈଶବାବସ୍ଥାରେ ଶିଶୁଙ୍କ ଜୀବନ ଗୃହମଧ୍ୟରେ କେନ୍ଦ୍ରିତ ହୁଏ । ଶିଶୁର ସାମାଜିକ ବ୍ୟବହାର ଓ ସାମାଜିକ ଅଭିବୃଦ୍ଧିର ମୂଳଦୁଆ ଗୃହପରିବେଷ୍ଟନୀ ମଧ୍ୟରେ ଆରମ୍ଭ ହୋଇଥାଏ । ଶିଶୁ ଉପରେ ଘରୋଇ ପରିବେଶର ପ୍ରଭାବ ପଡ଼େ, ଶିଶୁର ପ୍ରାରମ୍ଭିକ ସାମାଜିକ ଅନୁଭବ ଉପରେ ତାର ଅନ୍ୟମାନଙ୍କ ପ୍ରତି ମନୋଭାବ ଓ ସାମାଜିକ ବ୍ୟବହାର ନିର୍ଭର କରେ । ବେନ୍‌ଙ୍କ ମତରେ ଶିଶୁ ଜୀବନର ପ୍ରଥମ ୫।୬ ବର୍ଷର ସୁଫଳ ବା କୁଫଳର ପରିଣାମ ତାକୁ ବିଦ୍ୟାଳୟରେ ଭୋଗ କରିବାକୁ ପଡ଼େ । ଅଧିକ ଆୟୁର ବାଳକମାନଙ୍କର ସାମାଜିକ ଉପଯୋଜନର ଅଧ୍ୟୟନରୁ ଜଣାଯାଏ ଯେ ବୟସ ବଢ଼ିବା ସହିତ ଶିଶୁମାନଙ୍କର ସାମାଜିକ ବ୍ୟବହାର ଏକ ପ୍ରକାରର ହୋଇଯାଏ । ଏଥିରୁ ପ୍ରାରମ୍ଭିକ ସାମାଜିକରଣର ମହତ୍ତ୍ୱ ଅନୁମିତ ହୁଏ ।

ପ୍ରଥମ ବର୍ଷରେ ଶିଶୁ ଯେତେବେଳେ ନିଜର ଅସହାୟତା ଯୋଗୁଁ ଅନ୍ୟମାନଙ୍କର ପ୍ରିୟ ହୁଏ, ତାର ପରିବାରର ଲୋକଙ୍କ ସହିତ ସମ୍ବନ୍ଧ ଅଧିକାଂଶ କ୍ଷେତ୍ରରେ ଅନୁକୂଳ ହୁଏ । ଅନ୍ୟମାନଙ୍କ ସହିତ ମିଳାମିଶା କରିବାର ଇଚ୍ଛା ଏବଂ ଅନ୍ୟମାନଙ୍କୁ ନିଜର ବୋଲି ଭାବିବା ମନୋଭାବ ଶିଶୁ ପରିବାରର ପରିବେଷ୍ଟନୀରୁ ପ୍ରାପ୍ତ କରିଥାଏ । ଏଣୁ ଗୃହ ପରିବେଷ୍ଟନୀରୁ ବାହ୍ୟ ପରିବେଶ ମଧ୍ୟରେ ଚଳପ୍ରଚଳ କଲାବେଳେ ଉତ୍ତମ ସାମାଜିକ ବ୍ୟବହାର ପ୍ରଦର୍ଶନ କରିବାରେ ଶିଶୁର କୌଣସି ଅସୁବିଧା ହୁଏନାହିଁ ।

୨ବର୍ଷ ରୁ ୬ବର୍ଷ ମଧ୍ୟରେ ଶିଶୁର ସାମାଜିକ ବିକାଶ ଦ୍ରୁତଗତିରେ ହୋଇଥାଏ । ୬ବର୍ଷ ହେଲାରୁ ସେ ଯେ କୌଣସି ସାମାଜିକ ବ୍ୟକ୍ତିପରି ବ୍ୟବହାର କରେ । ଅନ୍ୟମାନଙ୍କ ସହିତ ମିଳିମିଶି ଚଳିବା ସଙ୍ଗେ ସଙ୍ଗେ ସେ କ୍ରୀଡ଼ାରେ ମଧ୍ୟ ଅଂଶଗ୍ରହଣ କରେ । ତାର ପରିବେଷ୍ଟନୀରେ ଅନ୍ୟମାନେ ଅଛନ୍ତି ଏବଂ ସେମାନେ ଯେ ତାକୁ ସାହାଯ୍ୟ କରୁଛନ୍ତି ସେ କଥା ସେ ବୁଝେ । କେଉଁଟା ଠିକ୍, କେଉଁଟା ଭୁଲ, ତାହା ସେ ଉପଲବ୍ଧି କରେ ଏବଂ ସେହି ଅନୁସାରେ ନିଜକୁ ଉପଯୋଜନ କରେ । ଏଣୁ ପିଲାକୁ ଅନ୍ୟ ପିଲାଙ୍କଠାରୁ ଅଲଗା ନ ରଖି ମିଳାମିଶା କରିବାକୁ ସୁଯୋଗ ଦେବା ନିତାନ୍ତ ଆବଶ୍ୟକ । ଏହି ଅବସ୍ଥାରେ ପିଲାର ବୟସ ମେତିକି ବଢ଼େ ବଡ଼ମାନଙ୍କଠାରୁ ତାର ଆଗ୍ରହ କମିଯାଏ ଏବଂ ସେ ତାର ସାଙ୍ଗସାଥି ଓ ସମବୟସ୍କ ପିଲାଙ୍କ ସହିତ ଅଧିକ ସମୟ ଅତିବାହିତ କରିବାକୁ ସୁଖକର ମଣେ । ଅବଶ୍ୟ ସବୁ କାର୍ଯ୍ୟରେ ସେ ଅନ୍ୟମାନଙ୍କର ଅନୁମୋଦନ କାମନା କରେ ଓ ବୟସ୍କମାନଙ୍କର ଉପଦେଶ ଓ ଆଦେଶ ମାନି ସେମାନଙ୍କର ପ୍ରିୟପାତ୍ର ହେବାକୁ ଚେଷ୍ଟାକରେ ।

ଏହି ଅବସ୍ଥାରେ ଶିଶୁ ଯେଉଁ ପ୍ରକାରର ସାମାଜିକ ବ୍ୟବହାର ପ୍ରଦର୍ଶନ କରିବାକୁ ଶିଖେ ତାହା ତାର ପରବର୍ତ୍ତୀ ବ୍ୟକ୍ତିତ୍ୱକୁ ବିଶେଷଭାବରେ ପ୍ରଭାବିତ କରିଥାଏ । ଅନ୍ୟ ପିଲାମାନଙ୍କ ସହିତ ଖେଳାଖେଳି କରିବାଦ୍ୱାରା ସେ ଦେବା ନେବା ଓ ଅନ୍ୟମାନଙ୍କ ପାଇଁ

ନିଜର ମତକୁ ତ୍ୟାଗକରିବା ତଥା ଦଳର ନିର୍ଦ୍ଦେଶାନୁସାରେ ନିଜର ବ୍ୟବହାରକୁ ନିୟନ୍ତ୍ରିତ କରିବାକୁ ଶିଖେ । ଏହି ବୟସରେ ଶିଶୁକୁ ନାନା ବାଧାବିଘ୍ନ ଓ ସମସ୍ୟା ମଧ୍ୟଦେଇ ଗତି କରିବାକୁ ସୁଯୋଗ ଦେଲେ ସେ ଏ ସବୁର ସମାଧାନର ପନ୍ଥା ବାହାର କରିବାକୁ ଚେଷ୍ଟା କରେ । ଏହା ତାର ବ୍ୟକ୍ତିତ୍ୱର ସାମାଜିକ ବିକାଶରେ ବିଶେଷ ସାହାଯ୍ୟ କରେ ।

ଏତଦ୍‌ବ୍ୟତୀତ ବିଦ୍ୟାଳୟର ବାତାବରଣ ତଥା ପରିବେଷ୍ଟନୀ, ଶିକ୍ଷକ ଓ ସହ-ପାଠୀଙ୍କର ବ୍ୟବହାର ଓ ଆଚରଣ ପିଲାର ସାମାଜିକ ବିକାଶକୁ ଯଥେଷ୍ଟ ପ୍ରଭାବିତ କରିଥାଏ ।

## ବିପରୀତ ଅବସ୍ଥା

୧୧ରୁ ୧୫ବର୍ଷର ବାଳକ ବାଳିକାମାନଙ୍କ ବ୍ୟକ୍ତିତ୍ୱରେ ଯେଉଁସବୁ ଅସାମାଜିକ ବା ସମାଜବିରୋଧୀ କାର୍ଯ୍ୟକଳାପ ଦେଖାଯାଏ ତାକୁ ବିପରୀତ ଅବସ୍ଥା କୁହାଯାଏ ।

ଏହି ବିପରୀତ ଅବସ୍ଥାର ଲକ୍ଷଣଗୁଡ଼ିକ ବାଳିକାମାନଙ୍କଠାରେ ୬ରୁ ୭ମାସ ଓ ବାଳକମାନଙ୍କଠାରେ ତାଠାରୁ ଅପେକ୍ଷାକୃତ ଅଧିକ ସମୟ ପାଇଁ ଦେଖାଯାଏ । ବିପରୀତ ଅବସ୍ଥାରେ ନିମ୍ନଲିଖିତ ଲକ୍ଷଣଗୁଡ଼ିକ ଉଲ୍ଲେଖଯୋଗ୍ୟ ।

### ଭୁଲ୍ ବୁଝାମଣା ମନୋଭାବ

ଅନ୍ୟମାନଙ୍କର ଉପଦେଶ ବା ଆଦେଶର ସର୍ବଦା ବିପରୀତ ଅର୍ଥ କରାଯାଇ ଭୁଲ୍ ବୁଝାମଣା ସୃଷ୍ଟି କରାଯାଏ । ସେମାନଙ୍କ ମନରେ ଅନ୍ୟମାନଙ୍କ ପ୍ରତି ଅଯଥା ସନ୍ଦେହ ଓ ଶଙ୍କା ଭାବ ଜାତ ହୁଏ । ପୂର୍ବର ବନ୍ଧୁ କୌଣସି ଯଥାର୍ଥ କାରଣ ନ ଥାଇ ବର୍ତ୍ତମାନ ଶତ୍ରୁ ପାଲଟିଯାନ୍ତି । ଗୃହ, ବିଦ୍ୟାଳୟ, ଖେଳପଡ଼ିଆ ଇତ୍ୟାଦି ସର୍ବତ୍ର ଏହି ମନୋଭାବ ପରିଲକ୍ଷିତ ହୁଏ । ଏହିପରି ଭୁଲ ବୁଝାମଣା, ଅହେତୁକ ସନ୍ଦେହ ଓ ଶଙ୍କା ଯୋଗୁଁ ପିଲାଦିନର ବନ୍ଧୁତା ଅନେକ କ୍ଷେତ୍ରରେ ଧୂଳିସାତ୍ ହୋଇଯାଏ ।

**ଅଲଗା ରହିବା ପାଇଁ ଇଚ୍ଛା**—ବିପରୀତ ଅବସ୍ଥାରେ ବାଳକ ବାଳିକାମାନେ ଗୋଷ୍ଠୀ ଓ ସାଙ୍ଗସାଥୀମାନଙ୍କ ଗହଣରେ ନ ରହି ଏକୁଟିଆ ପଢ଼ିବାକୁ ଓ କଳ୍ପନା ରାଇଜରେ ଭାସିବାକୁ ସୁଖପାନ୍ତି । "ମତେ କେହି ଭଲ ପାଉନାହାନ୍ତି", "ଜୀବନଟା ମୂଲ୍ୟହୀନ", "ବଂଚିବା ଅନୁଚିତ" ଏହିପରି ଭ୍ରାନ୍ତ ଧାରଣା ସେମାନଙ୍କ ମନକୁ ଘାରିଥାନ୍ତି କରିଦିଏ । ସାଂସାରିକ କାର୍ଯ୍ୟରେ ସେମାନଙ୍କର ମୋହ ବା ଆଗ୍ରହ ରହେନାହିଁ । ଶରୀରର ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗରେ ପରିବର୍ତ୍ତନ ତଥା ପରିପକ୍ୱତା ଏହି ପ୍ରକାରର ମାନସିକ ପରିବର୍ତ୍ତନର କାରଣ ବୋଲି ମତପ୍ରକାଶ କରାଯାଇଅଛି ।

**ଖେଳରେ ଆଗ୍ରହ**—ଲେମ୍ୟାନ୍ ଏବଂ ଉଇଟିଙ୍କ ଗବେଷଣାର ଫଳାଫଳରୁ ଅନୁମିତ ହୁଏ ଯେ ତରୁଣ ଅବସ୍ଥାରେ ପଦାର୍ପଣ କଲେ ବାଳକବାଳିକାମାନଙ୍କର ଖେଳର ପ୍ରକାରର ପ୍ରଭୃତ ପରିବର୍ତ୍ତନ ଘଟେ । ବାଗୁଡ଼ି, କବଡି, ଲୁଚକାଳି, ଗ୍ରେଭ୍‌ପୁଲ୍‌ସ ଇତ୍ୟାଦି

ଖେଳର ଆଗ୍ରହ ହ୍ରାସପାଇ ବ୍ୟାଡ଼ମିଣ୍ଟନ, ଫୁଟ୍‌ବଲ୍, ଭଲି, କ୍ରିକେଟ, ଟେନିସ୍ ଓ କ୍ୟାରମ୍ ପ୍ରଭୃତି ଉନ୍ନତ ଓ ଦଳଗତ ଖେଳରେ ବିଶେଷଭାବରେ ଆଗ୍ରହ ପରିଲକ୍ଷିତ ହୁଏ ।

ଯୌବନାବସ୍ଥାର ଅବ୍ୟବହିତ ପୂର୍ବରୁ ସାଧାରଣତଃ ଅଧିକାଂଶ ବାଳକବାଳିକା ଏହି ବିପରୀତ ଅବସ୍ଥା ମଧ୍ୟଦେଇ ଗତି କରିଥାନ୍ତି । ତେଣୁ ବିପରୀତ ସ୍ୱଭାବ ଏହି ଅବସ୍ଥାର ଏକ ସାଧାରଣ ସ୍ୱଭାବ ବୋଲି ମନେକରିବାକୁ ହେବ । କାରଣ ମୁଖ୍ୟତଃ ଏହା ଶରୀରର ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗରେ ପରିବର୍ତ୍ତନ ଯୋଗୁ ଘଟିଥାଏ । କିନ୍ତୁ ବାଳକବାଳିକାଙ୍କଠାରେ ଅତ୍ୟଧିକ ମାତ୍ରାରେ ଏହି ବିପରୀତ ଅବସ୍ଥା ଲକ୍ଷ୍ୟ କରାଯିବାର କେତେକ ସ୍ୱତନ୍ତ୍ର କାରଣ ରହିଛି ।

ଦୁର୍ବଳ ସ୍ୱାସ୍ଥ୍ୟ, ଅସ୍ୱାସ୍ଥ୍ୟକର ପରିବେଶ, ଅସଙ୍ଗତ ଓ କଠୋର ତଥା ଅପରିବର୍ତ୍ତନୀୟ ଶୃଙ୍ଖଳାର ପ୍ରୟୋଗ, ଅସ୍ୱାଭାବିକ ସାମାଜିକ ପରିବେଷ୍ଟନୀ, ପିତାମାତାଙ୍କର ପ୍ରଭୁତ୍ୱ ବିସ୍ତାର କରିବା ମନୋଭାବ ଓ ଅତ୍ୟଧିକ ଜିଦ୍, ପିଲା ସହିତ ଉପଯୁକ୍ତ ବୁଝାମଣାର ଅଭାବ ଯୋଗୁ ପିଲାଠାରେ ବିପରୀତ ବ୍ୟବହାର ଅତ୍ୟଧିକ ମାତ୍ରାରେ ଲକ୍ଷ୍ୟ କରାଯାଏ । ପିଲାକୁ ନିୟମିତ ଭାବରେ ଠିକ୍ ସମୟରେ କେତେଗୁଡ଼ିଏ କାର୍ଯ୍ୟ କରିବାକୁ ବାଧ୍ୟକଲେ ଏବଂ ଏଥିରେ ଟିକେ-ହେଲେ ବ୍ୟତିକ୍ରମ ହେଲେ ତାକୁ ଶାସ୍ତି ବା ଦଣ୍ଡ ଦେଲେ ପିଲାର ପ୍ରତିହିଂସା ମନୋଭାବ ବଢ଼େ ଏବଂ ସେ ପିତାମାତାଙ୍କୁ କଷ୍ଟ ଦେବାପାଇଁ ଅଧିକ ନିଷେଧାତ୍ମକ ବ୍ୟବହାର ପ୍ରଦର୍ଶନ କରେ । ଦୃଷ୍ଟାନ୍ତ ସ୍ୱରୂପ, ସକାଳୁ ଉଠି ସଙ୍ଗେ ସଙ୍ଗେ ଦାନ୍ତଘଷି ଜଳଖିଆ ଖାଇ ପାଠପଢ଼ି ବସିବା କଥା । କିନ୍ତୁ ପିଲା ନିଦରୁ ଉଠି ଦାନ୍ତ ନ ଘଷି ଯଦି କିଛି ସମୟ ଖେଳେ ଓ ଥରେ ଦୁଇଥର ମନାକଲେ ମଧ୍ୟ ମାନେନାହିଁ ଏଥିରେ ବିରକ୍ତ ହୋଇ ପିଲାକୁ ପ୍ରହାରକରିବା ବା ଗାଳିଦେବା ଅନୁଚିତ । କାରଣ ଏତଦ୍ଦ୍ୱାରା ତାର ନିଷେଧାତ୍ମକ ବ୍ୟବହାର ବୃଦ୍ଧି ପାଇବ ସିନା, ହ୍ରାସ ହେବନାହିଁ । ଏଣୁ ପରିବାରର ବୟସ୍କ ବ୍ୟକ୍ତିମାନେ ସହନଶୀଳତାର ପ୍ରତୀକ ହୋଇ ନିଷେଧାତ୍ମକ ବ୍ୟବହାର ପ୍ରତି ଯଥେଷ୍ଟ ଗୁରୁତ୍ୱ ନ ଦେଲେ ଏବଂ ଏଥିଲାଗି ତାକୁ ଦଣ୍ଡିତ ନ କଲେ ବୟସର ବୃଦ୍ଧି ସହିତ ଆପେ ଆପେ ତାର ଏହି ନିଷେଧାତ୍ମକ ସ୍ୱଭାବର ପରିସମାପ୍ତି ଘଟିବ । ଅପର ପକ୍ଷରେ ଅସହିଷ୍ଣୁ ହୋଇ ପିଲାର ବିଭିନ୍ନ କାର୍ଯ୍ୟରେ ବାଧା ସୃଷ୍ଟିକଲେ ଓ ତାର ମତାମତ ପ୍ରତି ଗୁରୁତ୍ୱ ନ ଦେଲେ ସେ ହତାଶ ହୋଇ ବିପରୀତ ବ୍ୟବହାର ପ୍ରଦର୍ଶନ କରେ । ଏହା ସ୍ପଷ୍ଟ ମନେରଖିବାକୁ ହେବ ଯେ, ହତାଶା ବିପରୀତ ବ୍ୟବହାରର ପ୍ରଧାନ କାରଣ । ଏଣୁ ନିଷେଧାତ୍ମକ ବ୍ୟବହାର ଦୂର କରିବାକୁ ହେଲେ ଶିଶୁ ଯେପରି ଅତ୍ୟଧିକ ବ୍ୟର୍ଥତା ଅନୁଭବ ନ କରେ ସେଥିନିମିତ୍ତ ପରିସ୍ଥିତି ସୃଷ୍ଟି କରିବାକୁ ହେବ ।

## ଶିଶୁ ବ୍ୟକ୍ତିତ୍ୱର ସାମାଜିକୀକରଣର ବିକାଶ

ମାନବ ଏକ ସାମାଜିକ ଜୀବ । ଜନ୍ମଠାରୁ ମୃତ୍ୟୁପର୍ଯ୍ୟନ୍ତ ସମାଜମଧ୍ୟରେ ରହି ମାନବକୁ ଜୀବନଯାପନ କରିବାକୁ ହୋଇଥାଏ । କିନ୍ତୁ ଉପଯୁକ୍ତ ସାମାଜିକ ବିକାଶପାଇଁ

ଯଦି ଶିଶୁ ସୁସ୍ଥ ପରିବେଶ ଓ ଉପଯୁକ୍ତ ଉପଦେଶ ତଥା ନିର୍ଦ୍ଦେଶନା ନ ପାଏ, ତେବେ ତାର ଅନ୍ତର୍ନିହିତ ଶକ୍ତିଗୁଡିକ ସୁସ୍ଥୁରୂପେ ବିକଶିତ ହୋଇପାରେ ନାହିଁ ।

ଜନ୍ମ ପରେ ନିଜର ନିଃସହାୟତା ଯୋଗୁ ଶିଶୁକୁ ଅନ୍ୟମାନଙ୍କର ସାହାଯ୍ୟ ଓ ସହାୟତା ତଥା ଲାଳନପାଳନ ଉପରେ ନିର୍ଭର କରିବାକୁ ହୁଏ । ସମାଜର ବିଭିନ୍ନ ବ୍ୟକ୍ତିମାନଙ୍କ ସହିତ ପାରସ୍ପରିକ କ୍ରିୟାରେ ଆବଦ୍ଧ ରହି ଶିଶୁ କ୍ରମେ କ୍ରମେ ସାମାଜିକ ରୀତି, ନୀତି, ନିୟମକାନୁନ ଓ ପ୍ରଥା ଇତ୍ୟାଦି ଶିକ୍ଷା କରିବାକୁ ଆରମ୍ଭ କରେ ।

ପ୍ରାରମ୍ଭରେ ଶିଶୁ ଆତ୍ମକେନ୍ଦ୍ରିକ ଓ ସ୍ୱାର୍ଥପର ଥାଏ । କିନ୍ତୁ ଅନ୍ୟମାନଙ୍କଠାରୁ ସାହାଯ୍ୟ ଓ ସ୍ନେହ ଶ୍ରଦ୍ଧା ପାଇ ସେ ଆସ୍ତେ ଆସ୍ତେ ହୃଦୟଙ୍ଗମ କରେ ଯେ ଅନ୍ୟମାନଙ୍କ ସାହାଯ୍ୟ ବିନା ସେ ସମାଜରେ ଚଳିପାରିବ ନାହିଁ । ଏହା ଫଳରେ ତାର ସାମାଜିକ ମନୋଭାବ ବିକଶିତ ହୁଏ ଏବଂ ସେ ମଧ୍ୟ ଅନ୍ୟମାନଙ୍କ ନିମନ୍ତେ ସ୍ୱାର୍ଥତ୍ୟାଗ କରିବାକୁ ଆଗଭର ହୁଏ । ଯେଉଁ କ୍ରିୟାକଳାପ ଓ ଆଚରଣ ସମାଜଦ୍ୱାରା ଆଦୃତ ହୁଏ ସେଗୁଡିକ ପୁନଃ ପୁନଃ ପ୍ରଦର୍ଶନ କରିବାକୁ ସେ ପ୍ରୋତ୍ସାହିତ ହୁଏ । ଅପରପକ୍ଷରେ ଯେଉଁ କାର୍ଯ୍ୟଗୁଡିକ ପାଇଁ ତାଙ୍କୁ ଦଣ୍ଡିତ କରାଯାଏ, ସେହି ଅନୁକ୍ରିୟାଗୁଡିକୁ ସେ ତ୍ୟାଗକରେ । ଏହିପରି ଭାବରେ ତାର ସାମାଜିକତାର ବିକାଶ ହୁଏ । ସାମାଜିକ ହେବାକୁ ହେଲେ ଯେ କୌଣସି ଶିଶୁକୁ ନିଜର ଭାବଧାରା ଅନ୍ତର୍ନିହିତ ଶକ୍ତି, ଆଶା ଓ ଆକାଂକ୍ଷାକୁ ସମାଜର ଭାବଧାରା, ଇଚ୍ଛା ଓ ଆଗ୍ରହ ସହିତ ମିଳାଇ ଦେବାକୁ ହୁଏ । ସମାଜର ଓ ସଂସ୍କୃତିର ପରମ୍ପରାକୁ ମାନିନେଇ ସମୂହ ସ୍ୱାର୍ଥ ପାଇଁ ବ୍ୟକ୍ତିଗତ ସ୍ୱାର୍ଥକୁ ଉତ୍ସର୍ଗ କରିବାକୁ ହୁଏ । ଏହି ଦୃଷ୍ଟିରୁ ଯେ ଯେତେ ପରିମାଣରେ ନିଜକୁ ସାମାଜିକ ରୀତି, ନୀତି ସହିତ ଉପଯୋଜନ କରିପାରେ ଅନ୍ୟମାନଙ୍କ ଆଶା ଆକାଂକ୍ଷା ଓ ରୁଚି ଅନୁସାରେ ନିଜର ବ୍ୟବହାରକୁ ପରିବର୍ତ୍ତିତ ତଥା ପରିଚାଳିତ କରେ, ତାକୁ ସେତିକି ସାମାଜିକ ବୋଲି କୁହାଯାଏ ।

ମାନବର ବ୍ୟକ୍ତିତ୍ୱ ସମାଜରୁ ହିଁ ଉତ୍ପନ୍ନ ହୋଇଥାଏ । ଏହା ସାମାଜିକତା ଉପରେ ନିର୍ଭର କରେ । ଶିଶୁ ପ୍ରଥମେ ପରିବାରରେ ବିଭିନ୍ନ ବ୍ୟକ୍ତିଙ୍କ ସଂସ୍ପର୍ଶରେ ଆସି ସେମାନଙ୍କୁ ଅନୁକରଣ କରେ । ପରିବାରର ଶିଶୁ ପ୍ରଶିକ୍ଷଣ ପଦ୍ଧତି ଉପରେ ଶିଶୁର ସାମାଜିକ ବିକାଶ ଅନେକାଂଶରେ ନିର୍ଭର କରେ । ବାଲ୍ୟକାଳରୁ ଶିଶୁକୁ ଉପଯୁକ୍ତ ସାଙ୍ଗସାଥୀ ଓ ବ୍ୟକ୍ତି-ମାନଙ୍କ ସହିତ ମିଳାମିଶା କରିବାକୁ ସୁଯୋଗ ଦିଆଗଲେ, ଅନ୍ୟମାନଙ୍କୁ ସାହାଯ୍ୟ କରିବା, ସ୍ୱାର୍ଥ ତ୍ୟାଗ କରିବା, ଅନ୍ୟ ସହିତ ସହଯୋଗ କରିବା ଓ ସମାଜର ସେବା ଇତ୍ୟାଦି କରିବାକୁ ଉପଯୁକ୍ତ କ୍ଷେତ୍ର ପ୍ରସ୍ତୁତ କରାଯାଏ । କିନ୍ତୁ ବାଲ୍ୟାବସ୍ଥାରୁ ଶିଶୁକୁ ଯଦି ସୁସ୍ଥ ବ୍ୟକ୍ତିତ୍ୱ ସମ୍ପନ୍ନ ବ୍ୟକ୍ତିମାନଙ୍କ ସହିତ ମିଳାମିଶା କରିବାକୁ ସୁଯୋଗ ଦିଆନଯାଏ, ତାର ସାମାଜିକ ବିକାଶ ବ୍ୟାହତ ହୁଏ ।

ସାଧାରଣତଃ ୩ଟି ପ୍ରକ୍ରିୟା ମଧ୍ୟ ଦେଇ ଶିଶୁର ସାମାଜିକ ବିକାଶ ହୋଇଥାଏ ।

୧ । ଉପଯୁକ୍ତ ବ୍ୟବହାର ପ୍ରଦର୍ଶନ କରିବା

୨ । ସମାଜରେ ଗୃହୀତ ହୋଇଥିବା ମାନ୍ୟ ନିୟମକୁ ମାନିନେବା

୩ । ଉପଯୁକ୍ତ ସାମାଜିକ ମନୋବୃତ୍ତି ପ୍ରଦର୍ଶନ କରିବା

ଉପଯୁକ୍ତ ସାମାଜିକ ବ୍ୟବହାର ସମ୍ପର୍କରେ ପ୍ରତ୍ୟେକ ସମାଜ ଓ ସଂସ୍କୃତିରେ କିଛି ନା କିଛି ମାନଦଣ୍ଡ ରହିଛି । ଏକ ସମାଜରେ ଯେଉଁ ବ୍ୟବହାର ଗ୍ରହଣୀୟ ବା ଆଦୃତ ଅନ୍ୟ ଏକ ସମାଜରେ ତାହା ଆଦୃତ ହୋଇନପାରେ । ପାଶ୍ଚାତ୍ୟ ଦେଶରେ ମଦ୍ୟପାନ ସାମାଜିକତାର ଏକ ଲକ୍ଷଣ ବୁଝାଯାଉଥିବା ସ୍ଥଳେ ଭାରତରେ ଏହା ଅସାମାଜିକ କ୍ରିୟା ମଧ୍ୟରେ ଅନ୍ତର୍ଭୁକ୍ତ । ତେଣୁ ନିଜ ସମାଜରେ ଯେଉଁ ଅନୁକ୍ରିୟାଗୁଡ଼ିକ ଗ୍ରହଣଯୋଗ୍ୟ, ସେହିଗୁଡ଼ିକୁ ପ୍ରଦର୍ଶନ କଲେ ବ୍ୟକ୍ତି ସମାଜରେ ଆଦୃତ ହୁଏ । ସାମାଜିକ ବ୍ୟକ୍ତିମାନେ ସାଧାରଣତଃ ମେଳାପି, ବନ୍ଧୁବତ୍ସଳ, ତ୍ୟାଗୀ, ସହୃଷ୍ଟ ଓ ବିଭିନ୍ନ ପରସ୍ଥିତି ସହିତ ସେମାନେ ନିଜକୁ ଖୁବ୍ ଚଞ୍ଚଳ ଉପଯୋଜନ କରନ୍ତି । ତାଙ୍କର ଅଭିଯୋଗ ଅପେକ୍ଷାକୃତ କମ । ଜଣେ ସାମାଜିକ ବ୍ୟକ୍ତି ସ୍ୱଚ୍ଛ ବନ୍ଧୁତ୍ୱ ବ୍ୟବହାର ଓ ସାହାଯ୍ୟ ସହଯୋଗ ଦ୍ୱାରା ନିଜର ସାମାଜିକ ମନୋଭାବକୁ ପ୍ରଦର୍ଶନ କରିଥାଏ । ସାଧାରଣତଃ ଯେ ଯେତେ ବୁଦ୍ଧିମାନ, ସମାଜ ସହିତ ସେ ନିଜକୁ ସେତେ ଶୀଘ୍ର ମିଶାଇ ଦେଇପାରେ । କାରଣ ସେ ଅନ୍ୟମାନଙ୍କର ମନୋଭାବ ଠିକ୍ ରୂପେ ବୁଝିପାରେ ଏବଂ ସେମାନେ କ'ଣ ଚାହାଁନ୍ତି ତାହା ମଧ୍ୟ ସହଜରେ ପ୍ରତ୍ୟକ୍ଷଣ କରିପାରେ ।

ଦୁଇ ବିପରୀତମୁଖୀ ବ୍ୟକ୍ତିଙ୍କର ବ୍ୟବହାରକୁ ଲକ୍ଷ୍ୟ କଲେ ସାମାଜିକତାର ବିକାଶରେ ତାରତମ୍ୟ ଜଣାଯାଏ । ଦୃଷ୍ଟାନ୍ତ ସ୍ୱରୂପ ଶିଶୁମାନଙ୍କର ଏକ ସାମାଜିକ ଉତ୍ସବରେ ଦୁଇଜଣ ନିମନ୍ତ୍ରିତ ବାଳକଙ୍କର ବ୍ୟବହାରକୁ ବିଶ୍ଳେଷଣ କରାଯାଉ । ପ୍ରଥମ ବାଳକ ଅତ୍ୟନ୍ତ ମେଳାପି, ବିଭିନ୍ନ ବାଳକ ବାଳିକାଙ୍କ ନିକଟକୁ ଯାଇ ସେମାନଙ୍କ ସହ ଖୁସି ଗପ କରିବାରେ ମଗ୍ନ । ଅଳ୍ପକ୍ଷଣ ମଧ୍ୟରେ ବେଶ୍ ବନ୍ଧୁତା ଜମାଇପାରୁଛି । ଅନ୍ୟ ଏକ ବାଳକ ଉତ୍ସବକୁ ବାଧ୍ୟହୋଇ ଆସିଲା ପରି ମନେହେଉଛି । ତାହା ସହିତ ମିଳାମିଶା କରିବା ଅନ୍ୟମାନଙ୍କଠାରୁ ଦୂରେଇ ରହିବାକୁ ଚେଷ୍ଟା କରୁଛି । ପ୍ରଥମ ବାଳକର ବ୍ୟବହାର ସାମାଜିକ ହୋଇଥିବା ସ୍ଥଳେ, ଦ୍ୱିତୀୟ ବାଳକର ବ୍ୟବହାରରେ ସାମାଜିକତାର ଅଭାବ । ବାଲ୍ୟାବସ୍ଥାରେ ଅନ୍ୟମାନଙ୍କ ସହିତ ମିଳାମିଶା କରିବାର ସୁଯୋଗ ନ ପାଇଲେ ଶିଶୁର ଉପଯୁକ୍ତ ସାମାଜିକ ବିକାଶ ହୋଇପାରେ ନାହିଁ । ଏତଦ୍‌ଭିନ୍ନ ଅସାମାଜିକ ବ୍ୟକ୍ତିମାନଙ୍କ ଗହଣରେ ଚଳପ୍ରଚଳ କଲେ ପିଲା ମଧ୍ୟ ଅସାମାଜିକତା ଶିକ୍ଷା କରେ । ବ୍ୟକ୍ତିର ସୁସ୍ଥ ସାମାଜିକ ବିକାଶ ପାଇଁ ତାର ପରିବେଷ୍ଟନୀରେ ଆବଶ୍ୟକୀୟ ଉଦ୍ଦୀପକମାନଙ୍କର ଆବଶ୍ୟକତା ଅପରିହାର୍ଯ୍ୟ । ଉପଯୁକ୍ତ ବାତାବରଣ ମଧ୍ୟରେ ବାଲ୍ୟାବସ୍ଥାରୁ ସୁସ୍ଥ ସାମାଜିକ ବ୍ୟକ୍ତିମାନଙ୍କ ସହିତ ମିଳାମିଶା କରିବାକୁ ଏବଂ ସାମାଜିକ କ୍ରିୟାକଳାପରେ ଭାଗନେବାକୁ

ସୁଯୋଗ ଦେବା ଉଚିତ । ବିଦ୍ୟାଳୟରେ ପୂଜା ଉତ୍ସବ, ବିଭିନ୍ନ ପ୍ରତିଯୋଗିତା, ବଣଭୋଜି ପ୍ରଭୃତିରେ ଭାଗ ନେବାକୁ ପିଲମାନଙ୍କୁ ଆରମ୍ଭରୁ ଉତ୍ସାହିତ କରିବା ନିତାନ୍ତ ଆବଶ୍ୟକ ।

ସହପାଠୀମାନଙ୍କ ସହିତ ବିଭିନ୍ନ ଦର୍ଶନୀୟ ସ୍ଥାନ ଭ୍ରମଣ କରିବା, ସମର ଶିକ୍ଷାର୍ଥୀ ବାହିନୀ, ସାମାଜିକ ସେବା ସଂସ୍ଥା, ସ୍କାଉଟ୍ ଓ ଗାଇଡ୍ସ ଇତ୍ୟାଦିରେ ଯୋଗଦେଲେ ବାଳକ ବାଳିକାମାନଙ୍କର ଉତ୍ତମ ସାମାଜିକ ବିକାଶ ହୋଇଥାଏ ।

ପାରସ୍ପରିକ ପ୍ରକ୍ରିୟା ବ୍ୟତୀତ ଭାଷା ସାମାଜିକ ବିକାଶରେ ବିଶେଷ ସାହାଯ୍ୟ କରିଥାଏ । ଭାଷା ମାଧ୍ୟମରେ ବ୍ୟକ୍ତିକୁ ସମାଜର ଭଲ ମନ୍ଦ, ଗ୍ରହଣୀୟ, ଅଗ୍ରହଣୀୟ, ନୀତିନିୟମଗୁଡ଼ିକ ଉପଦେଶ ଛଳରେ ଜଣାଇଦିଆଯାଏ । ବ୍ୟକ୍ତିର ଅନ୍ତର୍ନିହିତ ଶକ୍ତି ଓ ପ୍ରବୃତ୍ତିଗୁଡ଼ିକୁ ଭାଷା ମାଧ୍ୟମରେ ହିଁ ଉପଯୁକ୍ତ ଭାବରେ ବିକଶିତ କରାଯାଇଥାଏ । ବାଲ୍ୟାବସ୍ଥାରେ ପ୍ରଥମ ୫-୬ ବର୍ଷ ମଧ୍ୟରେ ପିଲା ଯାହା କିଛି ଭଲ ବା ମନ୍ଦ ଶିକ୍ଷା କରିଥାଏ, ବିଦ୍ୟାଳୟରେ ପ୍ରବେଶ କଲାବେଳେ ସେହି ପ୍ରଶିକ୍ଷଣର ଭଲ ବା ମନ୍ଦ ପରିଣାମ ଭୋଗ-କରେ । ବେନଙ୍କ ମତରେ "When a child enters school, he begins to reap therewards or suffer the ills which follow from the first six year of life" ଉପରୋକ୍ତ ଉକ୍ତିରୁ ବ୍ୟକ୍ତିର ସାମାଜିକତାର ବିକାଶରେ ପରିବାର ତଥା ସମାଜର ମହତ୍ତ୍ୱପୂର୍ଣ୍ଣ ଭୂମିକା ସହଜରେ ଅନୁମେୟ ।

ଶିଶୁ ସାଧାରଣତଃ ଅନୁକରଣପ୍ରିୟ । ତେଣୁ ବାଲ୍ୟାବସ୍ଥାରେ ଅନ୍ୟମାନଙ୍କ ସହିତ କିପରି ଉପଯୋଜନ କରିବାକୁ ହେବ, ତାହା ଅନୁକରଣ ମାଧ୍ୟମରେ ଶିକ୍ଷା କରେ । ଅଧ୍ୟୟନରୁ ଜଣାଯାଇଛି ଯେ ଭାଷାରେ ଦୋଷ ତ୍ରୁଟି ଥିବା, ଯଥା : ଖନା ବା ପାଟି ଲାଗୁଥିବା ବ୍ୟକ୍ତିଙ୍କ ସହିତ ଛୋଟ ପିଲା ମିଳାମିଶା କଲେ ସେମାନେ ମଧ୍ୟ ସେହିପରି କଥା କହିବାକୁ ଶିଖନ୍ତି । ଛୋଟ ପିଲା ଅତିଶୀଘ୍ର ଅନ୍ୟମାନଙ୍କର ଭୟ, ଆବେଗ, ଉତ୍କଣ୍ଠା କ୍ରୋଧ ପ୍ରଭୃତି ଅନୁକରଣ କରି ନିଜେ ସେହିପରି ବ୍ୟବହାର ପ୍ରଦର୍ଶନ କରନ୍ତି । ତେଣୁ କିପରି ପରିବେଷ୍ଟନୀ ମଧ୍ୟରେ ଚଳପ୍ରଚଳ କଲେ ଓ କେଉଁ ବ୍ୟକ୍ତିମାନଙ୍କ ସହିତ ମିଳାମିଶା କଲେ ସୁସ୍ଥ ସାମାଜିକ ବିକାଶ ହୋଇପାରିବ ସେଥିପ୍ରତି ଦୃଷ୍ଟି ଦେଇ ଶିଶୁକୁ ଉପଯୁକ୍ତ ମାର୍ଗରେ ପରିଚାଳିତ କରିବାକୁ ପଡ଼ିବ ।

ବ୍ୟକ୍ତିତ୍ୱର ସାମାଜିକୀକରଣ କୌଣସି ଏକ ପ୍ରକ୍ରିୟା ଉପରେ ନିର୍ଭର ନ କରି ବହୁବିଧ ଉପାଦାନମାନଙ୍କର ମିଳିତ ପ୍ରକ୍ରିୟା ଉପରେ ନିର୍ଭର କରେ । କାରଣ ଏହା ନାନାପ୍ରକାରର ସାମାଜିକ ମାନଦ୍ୱାରା ପ୍ରଭାବିତ ହୁଏ ।

## ସାମାଜିକତାର ବିକାଶରେ ଦ୍ୱନ୍ଦର ଭୂମିକା

ଅନେକ କ୍ଷେତ୍ରରେ ଲକ୍ଷ୍ୟ କରାଯାଏ, ପିତାମାତା ବାଳକକୁ ଏକ ପ୍ରକାର ଉପଦେଶ ଦେଲାବେଳେ ପଡ଼ୋଶୀ ଅଥବା ଶିକ୍ଷକ ଅନ୍ୟ ପ୍ରକାରର ଉପଦେଶ ଦେଇ ତାର ବ୍ୟବହାରକୁ ନିୟନ୍ତ୍ରିତ କରିବାକୁ ଚେଷ୍ଟା କରନ୍ତି । ଦୃଷ୍ଟାନ୍ତ ସ୍ୱରୂପ ଶିକ୍ଷକ କହନ୍ତି, ଚଳଚିତ୍ର ମାଧ୍ୟମରେ

ଅନେକ କଥା ଶିକ୍ଷା କରିହୁଏ । ଏଣୁ ପିଲାମାନଙ୍କର ଚଳଚ୍ଚିତ୍ର ଦେଖିବା ଉଚିତ । ଅପର ପକ୍ଷରେ ପିତା ମାତା ଚଳଚ୍ଚିତ୍ର ଦେଖିବାକୁ ପିଲାଙ୍କୁ ବାରଣ କରନ୍ତି । ଆଉ କେତେକ କ୍ଷେତ୍ରରେ ଶିଶୁପାଳନ ପ୍ରଣାଳୀ ବା ଶିଶୁକୁ ଉପଦେଶ ଦେବାରେ ବା ଶିଶୁର ବ୍ୟବହାରକୁ ପରିଚାଳିତ କରିବାରେ ପିତା ଓ ମାତାଙ୍କ ମଧ୍ୟରେ ମତ ପାର୍ଥକ୍ୟ ଘଟିଲେ ଶିଶୁ ମନରେ ଦ୍ୱନ୍ଦ୍ୱ ବା ସଂଘର୍ଷ ଜାତ ହୁଏ । ଏହି ପ୍ରକାରର ଦ୍ୱନ୍ଦ୍ୱ ବା ସଂଘର୍ଷ ଶିଶୁ ବ୍ୟକ୍ତିତ୍ୱର ସାମାଜିକୀକରଣକୁ ବ୍ୟାହତ କରେ । ପିଲାର ଦୈନନ୍ଦିନ ବ୍ୟବହାରକୁ ପରିଚାଳିତ ତଥା ନିୟନ୍ତ୍ରିତ କଲାବେଳେ ମଧ୍ୟ ପିଲା, ପିତାମାତା, ଭ୍ରାତ ଓ ଶିକ୍ଷକମାନଙ୍କ ମଧ୍ୟରେ ସଂଘର୍ଷ ଘଟେ । ଉଦାହରଣ ସ୍ୱରୂପ – ଯଥା ସମୟରେ ନିଦରୁ ଉଠି ଝାଡ଼ାଯିବା, ଦାନ୍ତ ଘଷିବା, ଗାଧୋଇବା, ସମୟ ଅନୁସାରେ ଖାଦ୍ୟ ଖାଇବା, ଖେଳିବା ଇତ୍ୟାଦି ନେଇ ପିତାମାତା ଓ ସନ୍ତାନସନ୍ତତିଙ୍କ ମଧ୍ୟରେ ସର୍ବଦା ଦ୍ୱନ୍ଦ୍ୱ ଜାତ ହୁଏ । କାରଣ ପିଲା ନିୟମିତଭାବରେ ଏସବୁ କାର୍ଯ୍ୟ ସମ୍ପାଦନ କରିବାକୁ କୁଣ୍ଠିତ ହୁଏ । ସେହିପରି ବାଳ ବିଦ୍ୟାଳୟରେ ଶିଶୁ ଓ ଶିକ୍ଷକଙ୍କ ମଧ୍ୟରେ ନାନା ଘଟଣା ନେଇ ଦ୍ୱନ୍ଦ୍ୱ ଉପୁଜିଥାଏ । ଶିକ୍ଷକ କହନ୍ତି ଚୁପ୍‌ହୋଇ ଶ୍ରେଣୀରେ ବସି ପାଠରେ ମନ ଦେବାକୁ, ଗପ ନ କରିବାକୁ, ନଖ ନ କାମୁଡ଼ିବାକୁ, ଜାମାପଟା ଖାତା ବହି ପରିଷ୍କାର ରଖିବାକୁ ଇତ୍ୟାଦି । କିନ୍ତୁ ଅନେକ ସମୟରେ ସେସବୁ ମାନିବା ପିଲା ପକ୍ଷରେ କଷ୍ଟକର ହୋଇଥାଏ । ସେ ଯାହାହେଉ, ଏହି ଦ୍ୱନ୍ଦ୍ୱ ମଧ୍ୟରେ କାଳକ୍ରମେ ଶିଶୁ ପିତାମାତା ଓ ଶିକ୍ଷକଙ୍କ କଥା ମାନିନେଇ ସେମାନଙ୍କ ସହିତ ଉପଯୋଜନ କରିଥାଏ । ଏହା ଫଳରେ ତା'ର ସାମାଜିକୀକରଣର ଉତ୍ତମ ବିକାଶ ହୁଏ ଏବଂ ସନ୍ତୋଷ ମନୋଭାବ ସୁଦୃଢ଼ ହୁଏ ।

ସ୍ଥୂଳତଃ ବିଶ୍ଳେଷଣ କଲେ ଜଣାଯାଏ ଯେ ସାମାଜିକୀକରଣ ଏକ ନିଷ୍କ୍ରିୟ ପ୍ରକ୍ରିୟା ନୁହେଁ । ଏଠାରେ ବ୍ୟକ୍ତି ଏବଂ ସାମାଜିକ ପ୍ରକ୍ରିୟା ମଧ୍ୟରେ କ୍ରିୟାକଳାପ ଜାତ ହୁଏ । ଅତୀତର ସାମାଜିକୀକରଣ ଏବଂ ବର୍ତ୍ତମାନ ପରିସ୍ଥିତି ମଧ୍ୟରେ କ୍ରିୟାକଳାପ ଜାତ ହୁଏ । ତେଣୁ ସାମାଜିକୀକରଣ ବ୍ୟକ୍ତି, ଅତୀତର ଅଭିଜ୍ଞତା ଓ ବର୍ତ୍ତମାନ ଅଭିଜ୍ଞତା ମଧ୍ୟରେ ପାରସ୍ପରିକ ପ୍ରକ୍ରିୟାର ଫଳାଫଳ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

———

# ଅଷ୍ଟମ ଅଧ୍ୟାୟ

## କ୍ରୀଡ଼ା

ଉତ୍ତର ବାଲ୍ୟାବସ୍ଥାକୁ ସାଧାରଣତଃ ଖେଳର ବୟସ କୁହାଯାଏ । କାରଣ ଏହି ବୟସରେ ଅଧିକ ସମୟ ଖେଳରେ ବ୍ୟୟିତ ହୁଏ । କିନ୍ତୁ କାଳକ୍ରମେ ପିଲାର ଶାରୀରିକ ଓ ମାନସିକ ବିକାଶ ଘଟିଲେ ଖେଳର ମାତ୍ରା ଓ ପ୍ରକାରରେ ପରିବର୍ତ୍ତନ ଘଟେ । ଖେଳିବା ପାଇଁ ମଧ୍ୟ କମ ସମୟ ମିଳେ । ବିଶେଷ କରି ପିଲା ବିଦ୍ୟାଳୟରେ ଭର୍ତ୍ତି ହେଲାପରେ ପଢ଼ାପଢ଼ି କରିବା ହେତୁ ଖେଳିବାକୁ ପୂର୍ବାପେକ୍ଷା କମ ସମୟ ପାଏ । ୮।୯ ବର୍ଷ ବୟସ ପର୍ଯ୍ୟନ୍ତ ପିଲା ନିଜର କେତେକ ପ୍ରିୟ ଖେଳନା ନେଇ ଖେଳିବାକୁ ଆରମ୍ଭ କରେ । କିନ୍ତୁ କ୍ରମେ ବିଦ୍ୟାଳୟ ଓ ମହାବିଦ୍ୟାଳୟର ବାଳକବାଳିକାମାନଙ୍କର ସଂଗଠିତ କ୍ରୀଡ଼ା, ଯଥା—ଫୁଟବଲ, ହକି, କ୍ରିକେଟ, ଟେନିସ ଓ ବ୍ୟାଡ଼ମିଣ୍ଟନ ପ୍ରଭୃତି ଖେଳ ପ୍ରତି ସେ ସକ୍ରିୟ ଆଗ୍ରହ ପ୍ରକାଶ କରିବାକୁ ଆରମ୍ଭ କରେ ।

### କ୍ରୀଡ଼ାର ସଂଜ୍ଞା

ଲକ୍ଷ୍ୟ ବା ଉଦ୍ଦେଶ୍ୟ ସାଧନ କରିବାର ଅଭିପ୍ରାୟ ନ ରଖି ଫଳାଫଳ ବିଚାର ନ କରି ସ୍ୱତଃପ୍ରବୃତ୍ତ ଭାବରେ, ସ୍ୱଇଚ୍ଛାରେ, କେବଳ ଆନନ୍ଦଲାଭ କରିବା ପାଇଁ କୌଣସି କାର୍ଯ୍ୟ କଲେ ତାହା କ୍ରୀଡ଼ା ବୋଲି ଧରାଯାଏ । ଖେଳର ମୁଖ୍ୟ ଉଦ୍ଦେଶ୍ୟ ହେଲା ଆନନ୍ଦ ଓ ପ୍ରେରଣା ଲାଭ କରିବା । ଯେତେବେଳେ କୌଣସି ତଥାକଥିତ କ୍ରୀଡ଼ାରୁ ଆନନ୍ଦ ମିଳେ-ନାହିଁ, ତାହା କାର୍ଯ୍ୟ ରୂପରେ ପରିଗଣିତ ହୁଏ । ଗୁଲିକ୍‌ଙ୍କ ମତରେ ଯେତେବେଳେ ଆମେ ଯାହା କରିବାକୁ ଚାହୁଁ, ତାହା କରିବାର ସ୍ୱାଧୀନତା ମିଳିଲେ ସେହି କ୍ରିୟାକୁ କ୍ରୀଡ଼ା କୁହାଯାଏ ।

### କ୍ରୀଡ଼ାର ପ୍ରକୃତି

୧ । କ୍ରୀଡ଼ାରୁ ଆନନ୍ଦ ଓ ପ୍ରସନ୍ନତା ମିଳିଥାଏ । ଏହା କ୍ରୀଡ଼ାର ବିଶେଷ ଅଙ୍ଗ ଓ ପ୍ରକୃତି ଅଟେ । ଯେତେବେଳେ କୌଣସି ଏକ ପ୍ରକାରର କ୍ରୀଡ଼ାରୁ ଶିଶୁର ଆଗ୍ରହ ହ୍ରାସ ପାଏ, ସେ ଏହାକୁ ତ୍ୟାଗ କରି ଅନ୍ୟ ଏକ କ୍ରୀଡ଼ାରେ ବ୍ରତୀ ହୁଏ । କ୍ରୀଡ଼ାରୁ ଆନନ୍ଦ ଓ ପ୍ରସନ୍ନତା ନ ମିଳିଲେ ଏହା କାର୍ଯ୍ୟରେ ପରିଣତ ହୋଇଯାଏ ।

୨ । କ୍ରୀଡ଼ା ପ୍ରଥା ଓ ପରମ୍ପରାଦ୍ୱାରା ପ୍ରଭାବିତ ହୋଇଥାଏ । ପିଲାମାନଙ୍କର ଅଧିକାଂଶ କ୍ରୀଡ଼ା ଯେ ବୟସ୍କମାନଙ୍କର କାର୍ଯ୍ୟକଳାପର ଅନୁକରଣ, କହିଲେ ଅତ୍ୟୁକ୍ତି ହେବ ନାହିଁ । କୌଣସି ଏକ ନିର୍ଦ୍ଦିଷ୍ଟ ସମାଜର ଅଧିକାଂଶ କ୍ରିୟାକଳାପ ପୂର୍ବରୁ ସ୍ଥିରୀକୃତ ହୋଇଥିବା ହେତୁ କ୍ରୀଡ଼ା ଉପରେ ମଧ୍ୟ ଏହାର ପ୍ରଭାବ ପଡ଼ିଥାଏ । ଅର୍ଥାତ୍ ଏକ ବଂଶ ଓ ତାର ପରବର୍ତ୍ତୀ ବଂଶର ବ୍ୟକ୍ତିମାନଙ୍କର କ୍ରୀଡ଼ାରେ କୌଣସି ବିଶେଷ ପାର୍ଥକ୍ୟ ଲକ୍ଷ୍ୟ

କରାଯାଏ ନାହିଁ । ଛୋଟ ପିଲାମାନେ ବଡ଼ ପିଲାଙ୍କର କ୍ରୀଡ଼ାକୁ ଅନୁକରଣ କରନ୍ତି । ବଡ଼ ପିଲାମାନେ ସେମାନଙ୍କର ପୂର୍ବପୁରୁଷମାନଙ୍କର କ୍ରୀଡ଼ାକୁ ଅନୁକରଣ କରନ୍ତି । ଆମେରିକା ଓ ଜାପାନର ପିଲାମାନଙ୍କର କ୍ରୀଡ଼ାର ଏକ ତୁଳନାତ୍ମକ ଅଧ୍ୟୟନରୁ ସୂଚୀତ ହୁଏ ଯେ ଜାପାନୀ ପିଲାମାନେ ଅବିଧିକୃତ ଓ ଦଳଗତ କ୍ରୀଡ଼ାରେ ଅଧିକ ଭାଗ ନେଉଥିବାବେଳେ ଆମେରିକାସ୍ଥ ଶିଶୁମାନେ ଦଳଗତ କ୍ରୀଡ଼ା ଏବଂ ପ୍ରତିଯୋଗୀତାମୂଳକ କ୍ରୀଡ଼ାକୁ ଅଧିକ ପସନ୍ଦ କରନ୍ତି । ଜାପାନୀ ଶିଶୁଙ୍କ ଅପେକ୍ଷା ଆମେରିକାସ୍ଥ ଶିଶୁଙ୍କର ପରମ୍ପରାଗତ କ୍ରୀଡ଼ାରେ ଅଧିକ ପ୍ରକାର ଥିବାର ଲକ୍ଷ୍ୟ କରାଯାଏ ।

### କ୍ରୀଡ଼ା ଉପରେ ଋତୁର ପ୍ରଭାବ ପଡ଼ିଥାଏ

ବିଭିନ୍ନ ଋତୁରେ ପିଲାମାନେ ଭିନ୍ନ ଭିନ୍ନ ପ୍ରକାରର ଖେଳ ଖେଳନ୍ତି । ଶୀତ ଋତୁରେ ବ୍ୟାଡ଼ମିଣ୍ଟନ, କ୍ରିକେଟ, ସ୍କେଟ, ଗ୍ରୀଷ୍ମ ଋତୁରେ ପହଁରା, ନୌଚାଳନ ଇତ୍ୟାଦି କ୍ରୀଡ଼ା ଓ ପ୍ରାରମ୍ଭିକ ଶୀତ ଋତୁରେ ଫୁଟବଲ ଓ ହକି ଇତ୍ୟାଦି ଖେଳ ଖେଳାଯାଏ । ମୋଟ ଉପରେ ଲକ୍ଷ୍ୟ କଲେ ଶୀତକାଳରେ ଅଧିକ ସକ୍ରିୟ କ୍ରୀଡ଼ାରେ ଭାଗ ନିଆଯାଏ ।

### କ୍ରୀଡ଼ାରେ ଅତିବାହିତ ହେଉଥିବା ସମୟ ବୟସ ବୃଦ୍ଧି ସହିତ ହ୍ରାସ ପାଏ

ବିଦ୍ୟାଳୟରେ ନାମ ଲେଖାଇଲେ ଶିଶୁର କର୍ତ୍ତବ୍ୟ ଓ ଦାୟିତ୍ୱ ବୃଦ୍ଧି ପାଏ । ଫଳରେ ସେ ଖେଳିବାକୁ ସ୍ୱଳ୍ପ ସମୟ ପାଏ ଓ କ୍ରୀଡ଼ାର ପରିମାଣ ହ୍ରାସ ପାଏ । ଖେଳିବାକୁ ସୀମିତ ସମୟ ମିଳୁଥିବାରୁ ଶିଶୁ ବାଛି ବାଛି କେତେକ ଖେଳ ଖେଳେ ଯେଉଁଥିରୁ କି ସେ ଅଧିକ ଆନନ୍ଦ ଲାଭ କରେ । ଶିଶୁର ସାମାଜିକ ଆର୍ଥିକ ଅବସ୍ଥା ଆଂଶିକ ଭାବରେ ତାର କ୍ରୀଡ଼ାର ପରିମାଣ ଓ ପ୍ରକାରକୁ ନିର୍ଦ୍ଧାରଣ କରେ । ଉଚ୍ଚ ସାମାଜିକ ଆର୍ଥିକ ବର୍ଗର ଶିଶୁ କ୍ରୀଡ଼ାପାଇଁ ଅଧିକ ସମୟ ପାଉଥିବା ସ୍ଥଳେ ଦରିଦ୍ର ଓ ଦୁର୍ବଳ ଶ୍ରେଣୀର ଶିଶୁମାନେ ଗୃହକାର୍ଯ୍ୟ ଓ ଅନ୍ୟାନ୍ୟ ଦାୟିତ୍ୱରେ ବ୍ୟସ୍ତ ଥାଇ ଖେଳିବାକୁ ସମୟ ପାଆନ୍ତି ନାହିଁ କହିଲେ ଚଳେ ।

### ବୟସ ବୃଦ୍ଧି ସହିତ ଏକ ନିର୍ଦ୍ଦିଷ୍ଟ ପ୍ରକାରର କ୍ରୀଡ଼ାରେ ବୟସ ସୀମା ବୃଦ୍ଧିପାଏ

ଏକାଗ୍ରତା ଅଭାବରୁ ଛୋଟ ଶିଶୁମାନେ କୌଣସି ଏକ ନିର୍ଦ୍ଦିଷ୍ଟ ପ୍ରକାରର କ୍ରୀଡ଼ାରେ ଅଧିକ ସମୟ ପାଇଁ ମନୋନିବେଶ କରିପାରନ୍ତି ନାହିଁ । ଏଣୁ ଏକ ପ୍ରକାର କ୍ରୀଡ଼ାରୁ ଅନ୍ୟ ଏକ ପ୍ରକାର କ୍ରୀଡ଼ାକୁ ଧ୍ୟାନ ବିଚଳନ ଘଟେ । ବୟସର ବୃଦ୍ଧି ସହିତ ଏକାଗ୍ରତା ବୃଦ୍ଧି ପାଏ ଏବଂ ବୌଦ୍ଧିକ ପରିପକ୍ୱତା ମଧ୍ୟ ଘଟେ । ପରିଣାମରେ ଏକ ନିର୍ଦ୍ଦିଷ୍ଟ କ୍ରୀଡ଼ାରୁ ପୂର୍ବପରି ଏତେ ଶୀଘ୍ର ଧ୍ୟାନ ବିଚଳନ ଘଟେନାହିଁ ।

ବୟସର ବୃଦ୍ଧି ସହିତ କ୍ରୀଡ଼ା ଅଧିକ ନିୟମ ସମ୍ମତ ହୁଏ ଏବଂ କ୍ରୀଡ଼ାର ସ୍ୱତଃ-ପ୍ରବୃତ୍ତତା କମିଯାଏ । ଏହା ପ୍ରଥା ଅନୁଯାୟୀ ଅଧିକ ପରିଚାଳିତ ହୁଏ । ଏତଦ୍‌ବ୍ୟତୀତ ବୟସ ବୃଦ୍ଧି ସହିତ କ୍ରୀଡ଼ାରେ ଶାରୀରିକ ସକ୍ରିୟତା ମଧ୍ୟ ହ୍ରାସ ପାଏ । ପୂର୍ବ ଯୌବନାବସ୍ଥାରେ କ୍ରୀଡ଼ା କସରତରେ ଅଧିକ ସମୟ ବିନିଯୋଗ ନ କରି କଳ୍ପନା ବିଳାସିତାରେ ଅଧିକ ସମୟ ବିନିଯୋଗ କରିଯାଏ ।

## କ୍ରୀଡ଼ାକୁ ପ୍ରଭାବିତ କରୁଥିବା ଉତ୍ପାଦକଗଣ

ପିଲାମାନଙ୍କର ଖେଳ ସାଧାରଣତଃ ସମାନ ହୋଇଥିଲେ ମଧ୍ୟ ଭିନ୍ନ ଭିନ୍ନ ଉତ୍ପାଦକମାନଙ୍କର ପ୍ରଭାବରେ ଭିନ୍ନତା ଯୋଗୁଁ ପିଲାମାନଙ୍କର ଖେଳରେ ବିଭିନ୍ନତା ପରିଦୃଷ୍ଟ ହୁଏ । ଲେହମ୍ୟାନ ଓ ଉଇଝି ମତପୋଷଣ କରନ୍ତି ଯେ ବୁଦ୍ଧିମାନ ଓ ସ୍ୱଳ୍ପ ବୁଦ୍ଧି ସମ୍ପନ୍ନ ଶିଶୁଙ୍କର ଖେଳର ପ୍ରକାରରେ ଭିନ୍ନତା ନ ଥିଲେ ମଧ୍ୟ ଧୀମାନ୍ ଶିଶୁ କ୍ରୀଡ଼ାରେ ପ୍ରଦର୍ଶନ କରୁଥିବା ଅନୁକ୍ରିୟା ଓ ବୃତ ମନ୍ଦିତ ବୁଦ୍ଧି ଶିଶୁ ଅପେକ୍ଷା ଭିନ୍ନ ହୋଇଥାଏ । ଅଧିକନ୍ତୁ ଗଠନାତ୍ମକ କ୍ରୀଡ଼ା ଓ ବୁଦ୍ଧି ଆବଶ୍ୟକ କରୁଥିବା କ୍ରୀଡ଼ାକୁ ବୁଦ୍ଧିମାନ ଶିଶୁ ଅଧିକ ପସନ୍ଦ କରନ୍ତି । ଯଥା—ବିଭିନ୍ନ ପ୍ରକାରର ପଦାର୍ଥ ଗଠନ କରିବା, ଯେପରି କି ମାଟିରେ ଖେଳନା ତିଆରି କରି ସେଥିରେ ରଙ୍ଗ ଦେବା, ଡଙ୍ଗା, ଉଡ଼ାଜାହାଜ କରିବା, କାଠରେ ଘର, ପୋଲ ତିଆରି କରିବା ଇତ୍ୟାଦି—ମୋଟ ଉପରେ ବୁଦ୍ଧିମାନ ଶିଶୁ ଯଥେଷ୍ଟ ନିଜସ୍ୱ ଓ ପରିପକ୍ୱ କ୍ରୀଡ଼ା ପ୍ରଦର୍ଶନ କରନ୍ତି । ସ୍ୱଳ୍ପବୁଦ୍ଧି ସମ୍ପନ୍ନ ଶିଶୁ ଗଠନମୂଳକ କ୍ରୀଡ଼ା ଅପେକ୍ଷା ସାମାଜିକ କ୍ରୀଡ଼ାକୁ ଅଧିକ ପସନ୍ଦ କରନ୍ତି ।

ପାରିପାର୍ଶ୍ୱିକ ଅବସ୍ଥା—ଅସ୍ୱାସ୍ଥ୍ୟକର ଓ ଦରିଦ୍ର ପରିବେଷ୍ଟନୀରେ ବାସ କରୁଥିବା ଶିଶୁ ଅପେକ୍ଷାକୃତ କମ ଖେଳନ୍ତି । ପ୍ରଥମତଃ ସେମାନଙ୍କର ଖେଳନା ପାଇଁ ଉପକରଣ ନ ଥାଏ କି ଉପଯୁକ୍ତ ସ୍ଥାନ ନଥାଏ । ଦ୍ୱିତୀୟତଃ ଖେଳିବା ପାଇଁ ଖେଳସାଥୀ ଥିଲେ ମଧ୍ୟ ଉଦ୍ଦୀପକ ବିହୀନ ପାରିପାର୍ଶ୍ୱିକ ଅବସ୍ଥା ସେମାନଙ୍କୁ ଖେଳିବାକୁ ଉତ୍ସାହିତ କରେ ନାହିଁ ।

ଶିଶୁର ସାମାଜିକ ଆର୍ଥିକ ପରିସ୍ଥିତି ମଧ୍ୟ ତାର କ୍ରୀଡ଼ାକୁ ପ୍ରଭାବିତ କରେ । ଦରିଦ୍ର ପରିବାରର ଶିଶୁ ପିତାମାତାଙ୍କୁ ଗୃହକର୍ମ ଓ ବ୍ୟବସାୟରେ ସାହାଯ୍ୟ କରି ଖେଳିବାକୁ ପ୍ରାୟ ସମୟ ପାଆନ୍ତି ନାହିଁ । ଧନୀ ଓ ଉଚ୍ଚ ବଂଶର ପିଲାଙ୍କପରି ଏମାନଙ୍କର ଖେଳିବାକୁ ଉପଯୁକ୍ତ ଖେଳନା ମଧ୍ୟ ନ ଥାଏ । ଏଣୁ ମୂଲ୍ୟବାନ ଖେଳ ନ ଖେଳି ଲଟୁ, ବାଗୁଡ଼ି, କଢକଢ ଓ ଲୁଚକାଳି ଇତ୍ୟାଦି ଖେଳ ନିମ୍ନ ସାମାଜିକ ଆର୍ଥିକ ପରିବେଶର ଶିଶୁ ସମୟ ପାଇଲେ ଖେଳନ୍ତି ।

ଲିଙ୍ଗ—୮।୧୦ ବର୍ଷ ବୟସ ବେଳକୁ ସାଧାରଣତଃ ବାଳକ ବାଳିକାଙ୍କର ଖେଳର ପ୍ରକାର ଉପରେ ଲିଙ୍ଗର ପ୍ରଭାବ ପଡ଼ିଥାଏ । ଅର୍ଥାତ୍ ଖେଳରେ ଭିନ୍ନତା ଏହି ବୟସରେ

ଲକ୍ଷ୍ୟ କରାଯାଏ । ସାଧାରଣତଃ ସମାଜ ଓ ସଂସ୍କୃତିଦ୍ୱାରା ପ୍ରଭାବିତ ହୋଇ ପିତା, ମାତା, ପୁଅ ଝିଅମାନଙ୍କୁ ଭିନ୍ନ ଭିନ୍ନ ପ୍ରକାରର ଖେଳ ଖେଳିବା ପାଇଁ ବାଲ୍ୟକାଳରୁ ଉତ୍ସାହିତ କରିଥାନ୍ତି । ଏହି ଖେଳ ମାଧ୍ୟମରେ ସେମାନଙ୍କୁ ଭବିଷ୍ୟତ ପାଇଁ ପ୍ରସ୍ତୁତ କରାଯାଏ । ଫଳରେ କ୍ରୀଡ଼ାରେ ଭିନ୍ନତା ଲକ୍ଷ୍ୟ କରାଯାଏ ।

ତେବେ ଆଧୁନିକ ଯୁଗରେ ସାମାଜିକ ଗଠନରେ ପରିବର୍ତ୍ତନ ଓ ନାରୀ ସ୍ୱାଧୀନତା ଯୋଗୁଁ ପୁଅ ଓ ଝିଅମାନେ ଏକ ପ୍ରକାର ଖେଳ ଖେଳିବାକୁ ଆରମ୍ଭ କଲେଣି ।

ସ୍ୱାସ୍ଥ୍ୟ – ସ୍ୱାସ୍ଥ୍ୟବାନ ଶିଶୁର ମାଂସପେଶୀ ଓ ଅଙ୍ଗପ୍ରତ୍ୟଙ୍ଗର ସୁସ୍ଥ ବିକାଶ ହୋଇ ଥିବାରୁ ଅଳ୍ପ ସମୟ ଖେଳିବା ପରେ ଦୁର୍ବଳ ଶିଶୁମାନଙ୍କ ପରି ସେମାନେ କ୍ଲାନ୍ତ ଓ ବିରକ୍ତ ହୋଇପଡ଼ନ୍ତି ନାହିଁ । ଦୁର୍ବଳ ଶିଶୁ ଅପେକ୍ଷା ସ୍ୱାସ୍ଥ୍ୟବାନ୍ ଶିଶୁର ଯଥେଷ୍ଟ ଅଧିକ ଚଳିବା ଶକ୍ତି ଥିବାରୁ ଏହି ବଳକାଶକ୍ତିକୁ ସେ କ୍ରୀଡ଼ାରେ ବିନିଯୋଗ କରେ । ଦୁର୍ବଳ, ଶକ୍ତିହୀନ ଶିଶୁମାନେ ସକ୍ରିୟ କ୍ରୀଡ଼ାରେ ବିଶେଷ ଭାଗ ନ ନେଇ ଗୋଟିଏ ସ୍ଥାନରେ ବସିରହି ଖେଳିବାକୁ ସୁଖକର ମନେକରନ୍ତି । ଦୁର୍ବଳ ଶିଶୁମାନେ ସାଧାରଣତଃ କଳ୍ପନାବିଳାସୀ ହୁଅନ୍ତି ଏବଂ କ୍ରୀଡ଼ା ବଦଳରେ କଳ୍ପନାରୁ ହିଁ ସର୍ବାଧିକ ଆନନ୍ଦ ଲାଭ କରନ୍ତି । ଏଣୁ କ୍ରୀଡ଼ାର ପ୍ରକାର ଯେ ସ୍ୱାସ୍ଥ୍ୟଦ୍ୱାରା ପ୍ରଭାବିତ ହୁଏ, ଏହା ଅସ୍ୱୀକାର କରିହେବନାହିଁ ।

କେତେକ ମନସ୍ତତ୍ତ୍ୱବିତ୍‌ଙ୍କ ମତରେ ଶିଶୁର ପ୍ରେରକ ବିକାଶ ତାର କ୍ରୀଡ଼ାକୁ ପ୍ରଭାବିତ କରେ । ମାଂସପେଶୀମାନଙ୍କର ସମନ୍ୱୟତା ଉପରେ ପ୍ରତ୍ୟେକ ବୟସରେ ଏବଂ ପ୍ରତ୍ୟେକ ଅବସ୍ଥାରେ କ୍ରୀଡ଼ା ନିର୍ଭର କରିଥାଏ । ଯେଉଁ ଶିଶୁମାନଙ୍କର ମାଂସପେଶୀଗୁଡ଼ିକର ସମନ୍ୱୟତା ଘଟିନଥାଏ, ସେମାନେ ସହଜ ଓ ସ୍ୱାଭାବିକ ଭାବରେ ଖେଳିପାରନ୍ତି ନାହିଁ ।

### ଖେଳ ଉପକରଣ

ଖେଳ ଉପକରଣ ମଧ୍ୟ ଶିଶୁର କ୍ରୀଡ଼ାକୁ ପ୍ରଭାବିତ କରିବାର ଜଣାଯାଇଅଛି । ଶିଶୁର କଳ୍ପନାତ୍ମକ ଓ ଗଠନାତ୍ମକ ଶକ୍ତି ବିଭିନ୍ନ ଖେଳନା ନେଇ ଖେଳିବା ଦ୍ୱାରା ବିକାଶ ଲାଭ କରେ । ଖେଳନା ମଧ୍ୟ ଶିଶୁର ଜ୍ଞାନାତ୍ମକ ବିକାଶରେ ସାହାଯ୍ୟ କରେ । ଶିଶୁକୁ ଯେକୌଣସି ଖେଳନା ଖେଳିବାକୁ ନ ଦେଇ କେତେକ ନିର୍ଦ୍ଦିଷ୍ଟ ଧରଣର ଖେଳନା ଖେଳିବାକୁ ଦେଲେ କ୍ରୀଡ଼ାରେ ତାର ଆଗ୍ରହ ବୃଦ୍ଧିପାଏ ଏବଂ ବୌଦ୍ଧିକ ବିକାଶ ଘଟେ ।

### କ୍ରୀଡ଼ାର ମୂଲ୍ୟ

ଇଂରାଜୀରେ କଥିତ ଅଛି "All work, no play makes John a dull boy" ଉପରୋକ୍ତ ଉକ୍ତିରୁ ଶିଶୁ ବ୍ୟକ୍ତିତ୍ୱ ଗଠନ ନିମିତ୍ତ କ୍ରୀଡ଼ାର ମହତ୍ତ୍ୱ ସହଜରେ ଅନୁମେୟ । କ୍ରୀଡ଼ାରୁ ଶିଶୁ ଯେଉଁ ମୂଲ୍ୟବାନ ଅଭିଜ୍ଞତା ହାସଲ କରେ, ତାହା ତାର

ବ୍ୟକ୍ତିତ୍ୱକୁ ଶୃଙ୍ଖଳିତ ଓ ସଂଗଠିତ କରିବାରେ ସାହାଯ୍ୟ କରେ । କ୍ରୀଡ଼ାର ମୂଲ୍ୟ ସ୍ୱତନ୍ତ୍ର ଭାବରେ ନିମ୍ନରେ ପ୍ରଦତ୍ତ ହେଲା—

୧ । ଶାରୀରିକ ମୂଲ୍ୟ—ଶାରୀରିକ ସୁସ୍ଥତା ଓ ସବଳତା ନିମନ୍ତେ ଶରୀରର ମାଂସପେଶୀଗୁଡ଼ିକୁ ବଳିଷ୍ଠ ଓ ପରିପକ୍ୱ କରିବା ପାଇଁ ଓ ରକ୍ତ ସଞ୍ଚାଳନ ତଥା ବ୍ୟାୟାମ ନିମନ୍ତେ କ୍ରୀଡ଼ା ଯଥେଷ୍ଟ ସାହାଯ୍ୟ କରେ । ବିନିଯୋଗ ନ ହୋଇଥିବା ବଳକା ଶକ୍ତିକୁ କ୍ରୀଡ଼ା ମାଧ୍ୟମରେ ବ୍ୟୟ କରାଯାଇ ଶିଶୁର ସୁସ୍ଥ ଆବେଗିକ ବିକାଶରେ ସାହାଯ୍ୟ କରାଯାଏ । ବଳକା ଶକ୍ତି ବ୍ୟୟିତ ନ ହେଲେ ଚଞ୍ଚଳତା ସ୍ୱଭାବ, ଉଦ୍‌ବିଗ୍ନତା, ଅହେତୁକ ବ୍ୟସ୍ତତା ଓ ସ୍ନାୟବିକ ଅସ୍ଥିରତା ଇତ୍ୟାଦି ଲକ୍ଷ୍ୟ କରାଯାଏ । ଖେଳ ବ୍ୟାୟାମରେ ସାହାଯ୍ୟ କରେ । ଏହା ଫଳରେ ସଞ୍ଚିତ ଶକ୍ତି ବ୍ୟୟିତ ହୋଇଯାଏ, ଶରୀର ସୁସ୍ଥ ସବଳ ହେବା ସଙ୍ଗେ ସଙ୍ଗେ ବିଭିନ୍ନ ମନସ୍ତାତ୍ତ୍ୱିକ ପ୍ରକ୍ରିୟାମାନଙ୍କ ସୁସ୍ଥ ବିକାଶ ହୁଏ ।

୨ । ସାମାଜିକ ମୂଲ୍ୟ—କ୍ରୀଡ଼ା ମାଧ୍ୟମରେ ଶିଶୁର ସହଯୋଗୀ ମନୋଭାବ ବିକଶିତ ହୁଏ । ଖେଳ ମାଧ୍ୟମରେ ଶିଶୁ ତାର ସାଙ୍ଗସାଥିମାନଙ୍କ ସହିତ ସାମାଜିକ ସମ୍ପର୍କ ସ୍ଥାପନ କରେ । ଅନ୍ୟମାନଙ୍କର ଉପଦେଶ ଓ ନୀତିକୁ ଅନୁସରଣ କରି ସମାଜର ମାନ, ନିୟମକାନୁନ ଇତ୍ୟାଦି ପିଲାଖେଳ ମାଧ୍ୟମରେ ଉପଲବ୍ଧି କରେ । ଅନ୍ୟମାନଙ୍କର ମତ ଓ ବିଚାରକୁ ସେ ସମ୍ମାନ ଦେବାକୁ ଶିକ୍ଷା କରେ । ଦଳ ବା ଗୋଷ୍ଠୀର ମତକୁ ଗ୍ରହଣ କରିବାକୁ ଓ ସମୂହ ସ୍ୱାର୍ଥ ପାଇଁ ବ୍ୟକ୍ତିଗତ ସ୍ୱାର୍ଥକୁ ତ୍ୟାଗ କରିବାକୁ ଶିଶୁ ଖେଳରୁ ଶିକ୍ଷା କରେ । ଅନ୍ୟମାନଙ୍କ ସହିତ ଖେଳିବାକୁ ହେଲେ ସେମାନଙ୍କୁ ଆବଶ୍ୟକତା ପଡ଼ିଲେ ନିଜର ଖେଳନା ଦେବାକୁ ହେବ, ଦରକାର ହେଲେ ହାରିବା ପାଇଁ ହେବ ଏବଂ ସେଥିପାଇଁ ଭାଙ୍ଗିପଡ଼ିବା ଅନୁଚିତ, ଏହି ମନୋଭାବ ପିଲା କ୍ରୀଡ଼ାରୁ ହିଁ ଶିକ୍ଷା କରେ । ଏହିପରି ଭାବରେ ବିଭିନ୍ନ ପ୍ରକାର କ୍ରୀଡ଼ା ଶିଶୁର ବ୍ୟକ୍ତିତ୍ୱର ସାମାଜିକୀକରଣରେ ସାହାଯ୍ୟ କରେ ।

ନୈତିକ ମୂଲ୍ୟ

କ୍ରୀଡ଼ା ଶିଶୁର ବିବେକର ବିକାଶ ଓ ନୈତିକ ଶିକ୍ଷାରେ ବିଶେଷ ସହାୟତା କରିଥାଏ । ପିତାମାତା ଓ ଶିକ୍ଷକଙ୍କ ତତ୍ତ୍ୱାବଧାନରେ ଶିଶୁ ଭଲମନ୍ଦ, ନ୍ୟାୟ ଅନ୍ୟାୟ ସମ୍ପର୍କରେ ସମ୍ୟକ୍ ଧାରଣା କରୁଥିଲେ ମଧ୍ୟ ଦଳଗତ କ୍ରୀଡ଼ା ନୈତିକ ବିକାଶକୁ ତ୍ୱରାନ୍ୱିତ କରାଏ । କ୍ରୀଡ଼ାରେ ଭାଗ ନେବାକୁ ହେଲେ କୌଣସି ଏକ ଦଳର ସଭ୍ୟ ହେବାକୁ ହୋଇଥାଏ । ଦଳର ସଭ୍ୟ ହେବାକୁ ହେଲେ ସତ୍ୟବାଦୀ, ବିଶ୍ୱାସୀ, ସାଧୁ, ସଚ୍ଚୋଟ, ସହିଷ୍ଣୁ ଓ ତ୍ୟାଗୀ ଯେ ହେବାକୁ ହେବ ଏହା ଶିଶୁ କ୍ରୀଡ଼ାରୁ ହିଁ ଶିକ୍ଷା କରେ ।

ଶିକ୍ଷାଗତ ମୂଲ୍ୟ—କ୍ରୀଡ଼ା ମାଧ୍ୟମରେ ଶିଶୁ ଭିନ୍ନ ଭିନ୍ନ ପ୍ରକାରର ଉଦ୍ଦୀପକ ସଂସ୍ପର୍ଶରେ ଆସେ । ଏହି ବସ୍ତୁଗୁଡ଼ିକୁ ସ୍ପର୍ଶ କରି ଏବଂ ଏଗୁଡ଼ିକୁ ବିଭିନ୍ନ ପ୍ରକାରର କ୍ରୀଡ଼ାରେ

ପ୍ରୟୋଗ କରି ଶିଶୁ ପ୍ରତ୍ୟେକ ବସ୍ତୁର ଅର୍ଥ ଓ ବ୍ୟବହାର ଉପଲବ୍ଧି କରିବାକୁ ଚେଷ୍ଟା କରେ । ଚକ୍‌ଖଡ଼ିର ରଙ୍ଗ ଧଳା, ପେଣ୍ଡୁର ଆକାର ଗୋଲ ଇତ୍ୟାଦି ପିଲା କ୍ରୀଡ଼ା ମାଧ୍ୟମରେ ଆପେ ଆପେ ଶିଖିଯାଏ । ଏହା ତାକୁ ଶିଖାଯାଏ ନାହିଁ । ସେହିପରି ଉଡ଼ାଜାହାଜ, ରକେଟ, ଟେଲିଫୋନ୍, ମଟରଗାଡ଼ି, ରେଡିଓ, ରନ୍ଧା ସରଞ୍ଜାମ ଇତ୍ୟାଦିର ଆକାର ପ୍ରକାର ଓ ବ୍ୟବହାର ଶିଶୁ କ୍ରୀଡ଼ାରୁ ଶିକ୍ଷା କରେ ।

କ୍ରୀଡ଼ା ମାଧ୍ୟମରେ ଶିଶୁର ନୂତନ ନୂତନ ପ୍ରତ୍ୟୟର ବିକାଶ ଘଟେ ଏବଂ କେଉଁ ବସ୍ତୁର ବ୍ୟବହାର କିପରି କରାଯିବ ତାହା କ୍ରୀଡ଼ାରୁ ଅତି ସହଜ ଓ ସରଳ ଉପାୟରେ ଶିଶୁ ଶିଖିଥାଏ ।

ପରିବେଷ୍ଟନୀକୁ ବୁଝିବାରେ ନିଜର ଯୋଗ୍ୟତା ଓ ଶକ୍ତି ସଠିକ ଭାବରେ ଜାଣିବାରେ ଏବଂ ଅନ୍ୟମାନଙ୍କ ସହିତ ସେ କେତେଦୂର ସମକକ୍ଷ ହୋଇପାରିବ ତାହା ଜାଣିବାରେ କ୍ରୀଡ଼ା ପିଲାକୁ ସାହାଯ୍ୟ କରେ । ବିଭିନ୍ନ ବସ୍ତୁମାନଙ୍କର ପ୍ରୟୋଗ କ୍ରୀଡ଼ାରୁ ଜାଣିବାଦ୍ୱାରା ସେ ଭବିଷ୍ୟତ ପରିବେଷ୍ଟନୀ ସହିତ ନିଜକୁ ଉପଯୋଜନ କରିବାକୁ ଶିକ୍ଷା କରେ । କ୍ରୀଡ଼ା ଶିଶୁର ଜିଜ୍ଞାସା ପୂରଣ କରି ତାକୁ ସନ୍ତୋଷ ପ୍ରଦାନ କରେ ଏବଂ ନୂତନ ନୂତନ ବସ୍ତୁ ସମ୍ପର୍କରେ ଜାଣିବା ପାଇଁ କୌତୂହଳ ପ୍ରକାଶ କରିବାକୁ ଉଦ୍ଦୀପନା ଯୋଗାଏ । ଏହା ନିଶ୍ଚିତ ଭାବରେ କୁହାଯାଇପାରେ ଯେ ପୁସ୍ତକଗତ ଶିକ୍ଷାରୁ ଶିଶୁ ଯେଉଁ ସବୁ ତଥ୍ୟ ତଥା ଜ୍ଞାନ ଲାଭ କରିପାରେ ନାହିଁ, କ୍ରୀଡ଼ାରୁ ତାହା ଶିକ୍ଷା କରେ ।

ଚିକିତ୍ସା ମୂଲ୍ୟ—ପୂର୍ବରୁ ବର୍ଣ୍ଣନା କରାଯାଇଛି ଯେ ଶିଶୁର ବଳକା ଶକ୍ତି ବ୍ୟୟିତ ନ ହେଲେ ତାହା ନାନା ପ୍ରକାରର ମାନସିକ ଅସ୍ୱାଭାବିକତା ଜାତ କରାଏ । କ୍ରୀଡ଼ା ଏହି ବଳକା ଶକ୍ତିକୁ ବହିଷ୍କାର ତଥା ବିନିଯୋଗ କରିବାରେ ସାହାଯ୍ୟ କରୁଥିବାରୁ ଏହାର ଚିକିତ୍ସା ମୂଲ୍ୟ ରହିଅଛି । ପାରିବାରିକ ଓ ସାମାଜିକ ବାଧାବନ୍ଧନ ତଥା ନିୟମକାନୁନ ଯୋଗୁଁ ଶିଶୁ ତାର ଅନେକଗୁଡ଼ିଏ ଇଚ୍ଛା, ଆଶା, ଆକାଂକ୍ଷା ପୂରଣ କରିପାରେ ନାହିଁ । ଫଳରେ ତା ମନରେ ଦ୍ୱନ୍ଦ୍ୱ ଓ ତ୍ରାସ (tension) ଜାତ ହୁଏ । ଏହି ଦ୍ୱନ୍ଦ୍ୱ ଓ ତ୍ରାସକୁ ଦୂର କରି ନ ଗଲେ ତାହା ଶିଶୁର ମନସ୍ତାତ୍ତ୍ୱିକ ବିକାଶକୁ ବ୍ୟାହତ କରେ । ସାମାଜିକ ଗ୍ରହଣଯୋଗ୍ୟ ଉପାୟରେ ହତାଶା, ଦ୍ୱନ୍ଦ୍ୱ ଓ ତ୍ରାସକୁ ଦୂର କରିବା ପାଇଁ ଓ ଉପଯୁକ୍ତ ଆବେଗିକ ପରିପ୍ରକାଶ ନିମନ୍ତେ କ୍ରୀଡ଼ା ବିଶେଷ ସାହାଯ୍ୟ କରେ । ଖେଳିବା ସମୟରେ ଭୟ, ଉତ୍କଣ୍ଠା, ଘୃଣା, ଆନନ୍ଦ, କ୍ରୋଧ ଓ ସ୍ନେହ, ପ୍ରେମ ଇତ୍ୟାଦି ମାଧ୍ୟମରେ ଶିଶୁର ବଳକା ଶକ୍ତି ଖର୍ଚ୍ଚ ହୋଇଥାଏ । ସେ ମାନସିକ ସ୍ଥିରତା ତଥା ସ୍ୱାଭାବିକତା ଅନୁଭବ କରେ । ବାସ୍ତବ ଜୀବନରେ ଯେଉଁ ସବୁ ଆଶା ଆକାଂକ୍ଷା ପୂରଣ ହୋଇନପାରେ, କ୍ରୀଡ଼ାରେ ତାହା ପୂରଣ ହୋଇ ଶିଶୁର ହତାଶା ଅନେକାଂଶରେ ଦୂରୀଭୂତ ହୁଏ । ଏଣୁ ଏକ ଚିକିତ୍ସା ପ୍ରଣାଳୀ ହିସାବରେ କ୍ରୀଡ଼ାର ଗୁରୁତ୍ୱ ସ୍ୱୀକାର୍ଯ୍ୟ ।

# ନବମ ଅଧ୍ୟାୟ

## ଚିନ୍ତନ ଓ ବିଚାର

ବୟସର ବୃଦ୍ଧି ସହିତ ଶିଶୁର ପରିବେଷ୍ଟନୀ ଅଧିକ ବିସ୍ତୃତ ହୁଏ । ପରିବେଷ୍ଟନୀର ସଂସ୍ପର୍ଶରେ ଆସିଲାବେଳେ ଶିଶୁ ଦୈନନ୍ଦିନ ଜୀବନରେ ବିଭିନ୍ନ ସମସ୍ୟାର ସମ୍ମୁଖୀନ ହୁଏ । ପରିସ୍ଥିତି ସହିତ ଉପଯୋଜନ କରିବାକୁ ଅଥବା ନିଜର ଲକ୍ଷ୍ୟ ହାସଲ କରିବାକୁ ଏହି ସମସ୍ୟାଗୁଡ଼ିକର ସମାଧାନର ପ୍ରୟୋଜନ ଶିଶୁ ଉପଲବ୍ଧି କରେ । କେତେକ ସମସ୍ୟା ତାର ପିତାମାତା ଓ ଅଭିଭାବକଗଣ ସମାଧାନ କରିଦିଅନ୍ତି । ସହଜ ସମସ୍ୟାଗୁଡ଼ିକ ବିନା ଚିନ୍ତାରେ ସମାଧାନ ହୋଇଯାଏ, କିନ୍ତୁ କଷ୍ଟକର ସମସ୍ୟାଗୁଡ଼ିକର ସମାଧାନ ପାଇଁ ଶିଶୁକୁ ଚିନ୍ତା କରିବାକୁ ହୋଇଥାଏ । ବିଭିନ୍ନ ପ୍ରକାରର ସମସ୍ୟା ପାଇଁ ଭିନ୍ନ ଭିନ୍ନ ପ୍ରକାରର ଚିନ୍ତନର ସାହାଯ୍ୟ ନେବାକୁ ପଡ଼ିଥାଏ । ଚିନ୍ତନ ଏକ ଜଟିଳ ମାନସିକ ପ୍ରକ୍ରିୟା । ଏହା ମାନବକୁ ଶିଶୁଠାରୁ ପୃଥକ୍ କରିଥାଏ । ମାନବ ସମାଜର ଉନ୍ନତି, ପ୍ରଗତି ଓ ମଙ୍ଗଳ ବ୍ୟକ୍ତି-ବିଶେଷଙ୍କର ଚିନ୍ତନ ଶକ୍ତି ଉପରେ ନିର୍ଭର କରେ ।

୨ ବର୍ଷ ବୟସ ପର୍ଯ୍ୟନ୍ତ ଚିନ୍ତନ ଶକ୍ତିର ପ୍ରାୟ ବିଶେଷ ବିକାଶ ହୋଇନଥାଏ । କାରଣ ଶିଶୁ ଏହି ସମୟରେ ସାମ୍ବେଦିକ ପ୍ରେରକ କ୍ରିୟାକଳାପରେ ଅଧିକ ସମୟ ଅତିବାହିତ କରେ । ଏତଦ୍‌ଭିନ୍ନ ଶିଶୁକୁ ଅସହାୟ ମନେକରି ପିତାମାତା ତାର ଅନେକ ସମସ୍ୟାର ସମାଧାନ କରିଦିଅନ୍ତି । ଦୁଇ ବର୍ଷ ବୟସରେ ଶିଶୁର ଭାଷା ବିକାଶରେ ଉନ୍ନତି ହୋଇଥାଏ । ଭାଷାରୁ ସେ ସଙ୍କେତର ପ୍ରୟୋଗ କରିବାକୁ ଶିକ୍ଷାକରେ । ଚିନ୍ତନରେ ଆବଶ୍ୟକ ହେଉଥିବା ପ୍ରତ୍ୟୟମାନ ମଧ୍ୟ ଏହି ଅବସ୍ଥାରେ ଗଠିତ ହୁଏ । ଫଳରେ ଶିଶୁ ସଙ୍କେତ ଓ ପ୍ରତ୍ୟୟ ମାଧ୍ୟମରେ ଚିନ୍ତାକରି ବିଭିନ୍ନ ସମସ୍ୟାର ସମାଧାନ କରିବାକୁ ଚେଷ୍ଟା କରେ । ଚିନ୍ତନରେ ସଙ୍କେତ ଓ ସମସ୍ୟା ମୁଖ୍ୟ ଭୂମିକା ଗ୍ରହଣ କରିଥାଏ । ଏଣୁ ସଙ୍କେତ ସାହାଯ୍ୟରେ କୌଣସି ସମସ୍ୟାର ସମାଧାନ କରିବା ନିମନ୍ତେ ଆବଶ୍ୟକ ହେଉଥିବା ମାନସିକ ପ୍ରକ୍ରିୟାକୁ ଚିନ୍ତନ କୁହାଯାଇପାରେ । ଚିନ୍ତନକୁ କେହି କେହି ସମସ୍ୟା ସମାଧାନ ବ୍ୟବହାର ଓ ଆଉ କେହି କେହି ମାନସିକ ପ୍ରଯତ୍ନ ପ୍ରମାଦ ଆଖ୍ୟା ଦେଇଥାନ୍ତି ।

ବୈଜ୍ଞାନିକ ପଦ୍ଧତି ଅନୁସରଣ କରି ଶିଶୁମାନଙ୍କ ଉପରେ ପ୍ରୟୋଗ ବା ପରୀକ୍ଷା କରିବା ବିଶେଷ କଷ୍ଟସାଧ୍ୟ ହୋଇଥିବାରୁ ବାଳକର ଚିନ୍ତନ କ୍ରିୟାର ଅଧ୍ୟୟନ ମନସ୍ତତ୍ତ୍ୱ-ବିତ୍‌ଙ୍କ ନିମନ୍ତେ ବିଶେଷ କଠିନ ବ୍ୟାପାର । ଏଥିନିମନ୍ତେ ଏ କ୍ଷେତ୍ରରେ ଗବେଷଣା ଅତ୍ୟନ୍ତ ସୀମିତ । ସମ୍ପ୍ରତି ଶିଶୁମାନଙ୍କର ଚିନ୍ତନ ଓ ଜ୍ଞାନାତ୍ମକ ବିକାଶ ଉପରେ ବ୍ରୁନର ଓ ପିଆଜେଙ୍କର ଅଧ୍ୟୟନ ଓ ଅନୁସନ୍ଧାନ ବିଶେଷ ମହତ୍ତ୍ୱପୂର୍ଣ୍ଣ ଓ ମୂଲ୍ୟବାନ ଅଟେ ।

ବାଳକବାଳିକାମାନଙ୍କର ଶାରୀରିକ ଓ ମାନସିକ ଅବସ୍ଥା ସହିତ ସେମାନଙ୍କର ଚିନ୍ତନ ଶକ୍ତିର ବିକାଶକୁ ସମ୍ପୃକ୍ତ କରାଯାଇପାରେ ବୋଲି ପିଅଜେ ମତବ୍ୟକ୍ତ କରିଅଛନ୍ତି । ଜନ୍ମ ଆରମ୍ଭରୁ ପ୍ରାୟ ୧୪ ମାସ ପର୍ଯ୍ୟନ୍ତ ଶିଶୁ ପେଶିକ କ୍ରିୟାକଳାପରେ ଅଧିକ ସମୟ ଅତି-ବାହିତ କରେ । ଏହି ଅବସ୍ଥାରେ ଏହାର ଚିନ୍ତନର ବିଶେଷ ବିକାଶ ହୋଇନଥିଲେ ମଧ୍ୟ କେତେକ କ୍ଷେତ୍ରରେ ତାର ବ୍ୟବହାରରେ ବୌଦ୍ଧିକ କ୍ରିୟାକଳାପର ପରିଚୟ ମିଳେ । ଦୁଇରୁ ସାତବର୍ଷ ବୟସରେ ଶିଶୁର ଭାଷାରେ ଯଥେଷ୍ଟ ଉନ୍ନତି ଦେଖା ଯାଏ । ଅନ୍ୟମାନଙ୍କର କ୍ରିୟାକଳାପ ଅନୁକରଣ କରିବା ମଙ୍ଗେ ସଙ୍ଗେ ବିଭିନ୍ନ ଶବ୍ଦ ବ୍ୟବହାରରେ ତାର ଅମୂର୍ତ୍ତ ଚିନ୍ତନ ମଧ୍ୟ ଆରମ୍ଭ ହୋଇଯାଏ । ବିଭିନ୍ନ ସଙ୍କେତର ପ୍ରୟୋଗ କରିବାକୁ ମଧ୍ୟ ଶିଶୁ ଆରମ୍ଭ କରେ । ଏହି ଅବସ୍ଥାରେ ପ୍ରତ୍ୟୟ ଗଠନ ଆରମ୍ଭ ହୁଏ । ଏହା ବାଳକର ଚିନ୍ତନ ପ୍ରକ୍ରିୟାରେ ବିଶେଷ ସାହାଯ୍ୟ କରେ । ଯେଉଁମାନଙ୍କର ଉପଯୁକ୍ତ ପ୍ରତ୍ୟୟ ଗଠନ ହୋଇନଥାଏ, ସେମାନଙ୍କର ଚିନ୍ତନର ବିକାଶ ବ୍ୟାହତ ହୁଏ ।

ପୂର୍ବରୁ ବର୍ଣ୍ଣନା କରାଯାଇଅଛି ଯେ ଚିନ୍ତନକୁ ସମସ୍ୟା ସମାଧାନ ଆଖ୍ୟା ଦିଆଯାଇ-ପାରେ । ଏହାକୁ ମଧ୍ୟ ମାନସିକ ପ୍ରଯତ୍ନ ପ୍ରମାଦ କୁହାଯାଇପାରେ । ଚିନ୍ତନକୁ ସମସ୍ୟା ସମାଧାନ ଆଖ୍ୟା ଦିଆଯିବାର କାରଣ ହେଲା ଯେ, ଚିନ୍ତନରେ ସମସ୍ୟା ସମାଧାନର ଆବଶ୍ୟକତା ଅପରିହାର୍ଯ୍ୟ । ଏହି ସମସ୍ୟା ସରଳ ବା ଜଟିଳ ହୋଇପାରେ । ଦୃଷ୍ଟାନ୍ତ ସ୍ୱରୂପ, ସରସ୍ୱତୀ ପୂଜାରେ ବିଦ୍ୟାଳୟର ପୂଜାଗୃହ କିପରି ସଜାଇବାକୁ ପଡ଼ିବ, ଅଥବା ରେଳଗାଡ଼ି କିପରି ଚାଲେ, ସେ ପ୍ରଶ୍ନର ଉତ୍ତର ପାଇବାକୁ ପିଲାକୁ ଚିନ୍ତା କରିବାକୁ ପଡ଼େ । ବ୍ୟକ୍ତି ସର୍ବଦା ଚିନ୍ତା କରେ ନାହିଁ । ଯେତେବେଳେ ତା ସମ୍ମୁଖରେ କୌଣସି ସମସ୍ୟା ଉପସ୍ଥିତ ହୁଏ ଏବଂ ସହଜ ଭାବରେ ତାର ସମାଧାନ ହୋଇପାରେ ନାହିଁ, ସେପରି କ୍ଷେତ୍ରରେ ପିଲା ଚିନ୍ତନର ଆଶ୍ରୟ ନିଏ । ଜ୍ୟାମିତିର ଏକ ସମ୍ପାଦ୍ୟ ସମାଧାନ କରିନ-ପାରିଲେ କେଉଁ ଉପାୟରେ ଏହାର ସମାଧାନ ହୋଇପାରିବ, ବାଳକ ତାହା ବିଭିନ୍ନ ଦୃଷ୍ଟିକୋଣରୁ ଚିନ୍ତାକରେ । ମିଛ କଥା ବା ଚୋରି କରି ଧରା ନ ପଡ଼ିବାକୁ ଚାହୁଁଥିବା ପିଲା କ'ଣ କଲେ ନିର୍ଦ୍ଦୋଷ ବୋଲି ପ୍ରମାଣିତ ହୋଇପାରିବ ସେଥିପାଇଁ ତାକୁ ନାନା ଉପାୟ ଚିନ୍ତା କରିବାକୁ ହୋଇଥାଏ । ସମସ୍ୟାର ଉପସ୍ଥିତି ସହିତ ସ୍ୱଭାବତଃ ଚିନ୍ତନର ଆରମ୍ଭ ହୁଏ । ସମସ୍ୟାର ସମାଧାନ ହେଲେ ଚିନ୍ତନର ପରିସମାପ୍ତି ଘଟେ । ବିଭିନ୍ନ ସମସ୍ୟାର ସମାଧାନରେ କେବଳ ବର୍ତ୍ତମାନର ଅଭିଜ୍ଞତା ଉପରେ ନିର୍ଭର ନ କରି ବିଗତ ଅନୁଭୂତିର ସାହାଯ୍ୟ ନେବାକୁ ପଡ଼ିଥାଏ । କେତେକ ଅଙ୍କ କଷିବା ପାଇଁ ପରୀକ୍ଷିତ ବା ନିର୍ଦ୍ଦିଷ୍ଟ ଧାରାର ସାହାଯ୍ୟ ନେବା ଆବଶ୍ୟକ ହୁଏ । ଏହା ଅତୀତ ଅଭିଜ୍ଞତାରୁ ହିଁ ଆୟତ୍ତ ହୋଇଥାଏ ।

**ଚିନ୍ତନରେ ସାହାଯ୍ୟ କରୁଥିବା ଉପାଦକଗଣ**

**ସଙ୍କେତ**—ଏକ ଅବସ୍ଥା ବା ପରିସ୍ଥିତି ଅନ୍ୟ ଏକ ଅବସ୍ଥା ବା ପରିସ୍ଥିତିକୁ ବୁଝାଇଲେ ତାହାକୁ ସଙ୍କେତ କୁହାଯାଏ । ଦୃଷ୍ଟାନ୍ତ ସ୍ୱରୂପ, ଘଣ୍ଟା ବାଜିଲେ ପ୍ରାର୍ଥନା କାର୍ଯ୍ୟ

ଆରମ୍ଭ ହୁଏ । ଏଠାରେ ଘଣ୍ଟି ଶବ୍ଦ ପ୍ରାର୍ଥନା କାର୍ଯ୍ୟ ଆରମ୍ଭ ହେବା ନିମନ୍ତେ ସୂଚନା ଦିଏ । ପ୍ରଥମ ବର୍ଷରେ ଏହି ସଙ୍କେତଗୁଡ଼ିକ ସାଧାରଣତଃ ପ୍ରତିରୂପ ହିସାବରେ ବିକଶିତ ହୋଇ-ଥାଏ । ଦ୍ୱିତୀୟ ବର୍ଷରେ ଭାଷା ମାଧ୍ୟମରେ ସେ ଅନ୍ୟମାନଙ୍କ ସହିତ ଯୋଗାଯୋଗ ପ୍ରତିଷ୍ଠା କରେ । ବିଭିନ୍ନ ବାହ୍ୟ ଘଟଣା ଓ ସଙ୍କେତମାନଙ୍କ ମଧ୍ୟରେ ସମ୍ବନ୍ଧ ବା ସଂହତି ପ୍ରତିଷ୍ଠା କରିବାକୁ ବାଳକ ଶିକ୍ଷା କରେ । ଯଥା—ମାତାଙ୍କର ରନ୍ଧନଶାଳାକୁ ଯିବା ସହିତ ଖାଦ୍ୟ ଆଣିବା ମଧ୍ୟରେ ଶିଶୁ ସମ୍ବନ୍ଧ ଶିକ୍ଷା କରେ । ଏହି ପ୍ରକାରର ସଂହତି ତାର ଚିନ୍ତନ ଶକ୍ତିର ବିକାଶରେ ସାହାଯ୍ୟ କରେ । ବିଭିନ୍ନ ପ୍ରତ୍ୟୟଗୁଡ଼ିକ ସଙ୍କେତ ସାହାଯ୍ୟରେ ଚିନ୍ତନ କ୍ରିୟାରେ ବ୍ୟବହୃତ ହୁଏ । ଚିନ୍ତନରେ ସଙ୍କେତ ଓ ଚିହ୍ନ ବ୍ୟବହାର କଲେ ଶକ୍ତି ଓ ସମୟ କମ୍ ଖର୍ଚ୍ଚ ହୁଏ । ଯେପରି କ—ଲାଲ ସଙ୍କେତ ଦେଲେ କୌଣସି ଯାନବାହନ ଆଗକୁ ଗତି ନ କରି ଅପେକ୍ଷା କରେ, ସେହିପରି ଗଣିତ ଓ ବିଜ୍ଞାନ ଇତ୍ୟାଦିରେ ସଙ୍କେତର ବହୁଳ ବ୍ୟବହାର କରାଯାଇ ଶକ୍ତି ଓ ସମୟର ଅପଚୟରୁ ରକ୍ଷା ମିଳେ ।

ପ୍ରତ୍ୟୟ—ପୂର୍ବ ଅନୁଭବର ଅମୂର୍ତ୍ତ ଆକାରକୁ ପ୍ରତ୍ୟୟ କୁହାଯାଏ । ବିଭିନ୍ନ ପ୍ରତ୍ୟୟଗଣ ଚିନ୍ତନରେ ବିଶେଷ ସାହାଯ୍ୟ କରିଥାନ୍ତି । ଏହା ଚିନ୍ତନ ନିମନ୍ତେ ଖାଦ୍ୟ ଯୋଗାଇଥାନ୍ତି । ଯେଉଁ ବାଳକଠାରେ ବିଭିନ୍ନ ପ୍ରତ୍ୟୟଗୁଡ଼ିକର ଉତ୍ତମ ବିକାଶ ହୋଇ-ନଥାଏ, ତାର ଚିନ୍ତନ ବିଳମ୍ବିତ ହୁଏ, ଅର୍ଥାତ୍ ପ୍ରତ୍ୟୟ ବିନା ଶୀଘ୍ର ଓ ସହଜ ଭାବରେ ଚିନ୍ତା କରିବାକୁ ପିଲା ସକ୍ଷମ ହୁଏ ନାହିଁ ।

ପ୍ରତ୍ୟୟ ଏକ ସାମାନ୍ୟକରଣ ପ୍ରତିବିମ୍ବ । ପ୍ରକୃତ ଅଭିଜ୍ଞତା ଉପରେ ଏହା ପ୍ରତିଷ୍ଠିତ ହୋଇଥାଇନପାରେ । ଏହା ଏକ ସଙ୍କେତ ହୋଇପାରେ । ପ୍ରତ୍ୟୟ ଗଠନ ଶିକ୍ଷଣ ମାଧ୍ୟମରେ ହୁଏ । ପ୍ରତ୍ୟୟ ଗଠନର ପ୍ରକ୍ରିୟା ସାମାନ୍ୟକରଣ ଓ ପୃଥକ୍ କରଣ ପ୍ରକ୍ରିୟା ମଧ୍ୟ ଦେଇ ଗତି କରେ ।

ପ୍ରତିବିମ୍ବ—ଚିନ୍ତନ ପାଇଁ ଏହା ଅପରିହାର୍ଯ୍ୟ । ସାଧାରଣତଃ କୌଣସି ବ୍ୟକ୍ତି, ବସ୍ତୁ ବା ଘଟଣା ସମ୍ପର୍କରେ ବ୍ୟକ୍ତିଗତ ଅନୁଭୂତି ଅଥବା ପ୍ରକୃତରେ ଦେଖିଥିବା, ଶୁଣିଥିବା, ଅନୁଭବ କରିଥିବା ଦୃଶ୍ୟ ସମ୍ବନ୍ଧରେ ପ୍ରତିବିମ୍ବ ଜାତ ହୁଏ । ପ୍ରତିବିମ୍ବ ଆକାରରେ ଆମର ପୂର୍ବ ଅନୁଭବଗୁଡ଼ିକ ମନ ମଧ୍ୟରେ ବିଚରଣ କରେ । ଏହି ଅନୁଭବ ମାଧ୍ୟମରେ ଚିନ୍ତନ ଶକ୍ତିଶାଳୀ ହୁଏ ।

ସଂପ୍ରତି କେତେକ ଅଧ୍ୟୟନରୁ ଜଣାଯାଏ ଯେ ପୂର୍ବରୁ ଚିନ୍ତନରେ ପ୍ରତିବିମ୍ବଗୁଡ଼ିକୁ ଯେପରି ଗୁରୁତ୍ୱ ଦିଆଯାଉଥିଲା, ବର୍ତ୍ତମାନ ତାର ଆବଶ୍ୟକତା ଅନୁଭବ କରାଯାଉନି । ଜଣାଯାଏ ଯେ, ଅନେକ ଲୋକ ପ୍ରତିବିମ୍ବ ବଦଳରେ ଚିନ୍ତନରେ ସଙ୍କେତର ସାହାଯ୍ୟ ନିଅନ୍ତି ।

ଭାଷା—ଭାଷା ମାଧ୍ୟମରେ ହିଁ ସମସ୍ତ ଚିନ୍ତନ କ୍ରିୟା ସମାପନ ହୁଏ । ଭାଷା ଏକ ବ୍ୟକ୍ତିଠାରୁ ଅନ୍ୟ ବ୍ୟକ୍ତି ନିକଟକୁ ଭାବର ଆଦାନ ପ୍ରଦାନ କରେ । ଏହା ଅନ୍ୟମାନଙ୍କୁ ଚିନ୍ତା କରିବାକୁ ପ୍ରବର୍ତ୍ତାଏ । ଏହା ମଧ୍ୟ ଜ୍ଞାନ ହ୍ରାସ କରିବାରେ ସାହାଯ୍ୟ କରେ । ଭାଷାକୁ ଚିନ୍ତନରେ ଏକ ଅସ୍ତ୍ର ହିସାବରେ ବ୍ୟବହାର କରାଯାଏ । ଅର୍ଥାତ୍ ଭାଷା ମାଧ୍ୟମରେ ଯେଉଁ ସଙ୍କେତ ବ୍ୟବହାର କରାଯାଏ ତାହା ଚିନ୍ତନକୁ ଅଧିକ ଉନ୍ନତ ଓ ପରିପକ୍ୱ କରେ । ପ୍ରକୃତରେ କୌଣସି ଜଟିଳ ସମସ୍ୟା ସମ୍ବନ୍ଧରେ ଚିନ୍ତା କଲାବେଳେ ଶିଶୁ ମନେ ମନେ କଥାବାର୍ତ୍ତା କରିଥାଏ । ଅର୍ଥାତ୍ ସେ ଭାଷାର ବ୍ୟବହାର କରିଥାଏ । ଚିନ୍ତନ ସାମାଜିକ ବ୍ୟବହାରରେ ବିଶେଷଭାବରେ ବିକଶିତ ହେଉଥିବାରୁ ଭାଷା ଚିନ୍ତନ ପ୍ରକ୍ରିୟାରେ ବିଶେଷ ସାହାଯ୍ୟ କରେ । ଭାଷା ମାଧ୍ୟମରେ ଚିନ୍ତନର ଫଳାଫଳକୁ ଅନେକକାଳ ଧରି ମନ ମଧ୍ୟରେ ସଞ୍ଚିତ କରି ରଖାଯାଇପାରେ ଓ ଆବଶ୍ୟକତା ଅନୁସାରେ ତାର ବ୍ୟବହାର କରାଯାଇପାରେ । ଗୃହ ଓ ବିଦ୍ୟାଳୟରେ ପିଲାର ସମସ୍ତ ସମସ୍ୟାଗୁଡ଼ିକୁ ସମାଧାନ କରି ନ ଦେଇ ତା ସମକ୍ଷରେ କିଛି କିଛି ସମସ୍ୟା ଉପସ୍ଥାପିତ କରି ତାକୁ ସମାଧାନ କରିବାକୁ ସୁବିଧା ଦେଲେ ତାର ଚିନ୍ତନ ଶକ୍ତିର ବିକାଶ ହୁଏ । ଏଣୁ ବିଭିନ୍ନ ପରିବେଷ୍ଟନୀରେ ପିଲାକୁ ବିଭିନ୍ନ ସମସ୍ୟାର ସମ୍ମୁଖୀନ ହେବା ପାଇଁ ବାଲ୍ୟକାଳରୁ ଉପଯୁକ୍ତ ପାରିପାର୍ଶ୍ୱିକ ଅବସ୍ଥା ସୃଷ୍ଟି କରିବା ଆବଶ୍ୟକ । ପାରିପାର୍ଶ୍ୱିକ ଅବସ୍ଥାର ବିଭିନ୍ନ ଉପାଦାନମାନଙ୍କର ସଂସ୍ପର୍ଶରେ ଆସିବାଦ୍ୱାରା ପିଲା ନାନା ସମସ୍ୟାର ସମାଧାନ ନିମନ୍ତେ ଅଧିକ ସୁଯୋଗ ପାଏ । ଯେତେ-ବେଳେ ସେ କୌଣସି ସମସ୍ୟା ସମାଧାନ କରିବା ନିମିତ୍ତ ନାନାପ୍ରକାର ପଦ୍ଧତିର ଆଶ୍ରୟ ନେଇ ସର୍ବଶେଷରେ ବିଫଳ ହୁଏ, ତା ମନରେ ନିରାଶା ଓ ବ୍ୟର୍ଥତା ଜାତ ହୁଏ । ଏପରି କ୍ଷେତ୍ରରେ ପିଲାକୁ ତାର ସମସ୍ୟା ସମାଧାନରେ ସାହାଯ୍ୟ କରିବା ଆବଶ୍ୟକ । ଅର୍ଥାତ୍ ନିଜେ ସମସ୍ୟା ସମାଧାନ କରି ନଦେଇ ସମସ୍ୟା ସମାଧାନ କରିବାରେ କେତେକ ଉପାୟ ବାଳକକୁ ବତାଇଦେବା ଉଚିତ । ଏହା ଫଳରେ ତାର ବ୍ୟର୍ଥତା ଓ ଅସନ୍ତୋଷ ମନୋଭାବ ଦୂରୀଭୂତ ହୁଏ ।

କିନ୍ତୁ ଏହା ସ୍ପଷ୍ଟ ମନେ ରଖିବାକୁ ହେବ ଯେ, ଶିଶୁର ଚିନ୍ତା କରିବାର କ୍ଷମତା ଓ ପରିପକ୍ୱତା ନ ଆସିଲା ପର୍ଯ୍ୟନ୍ତ ତାକୁ ଜଟିଳ ସମସ୍ୟା ସମାଧାନ କରିବାକୁ ଦେଲେ ସେ ତାହା ସମାଧାନ କରିବାକୁ ଅକ୍ଷମ ହୁଏ । ଫଳରେ ତାର ନ୍ୟୂନ ମନୋଭାବ ଜାତ ହୁଏ ଏବଂ ଏହା ତାର ବ୍ୟକ୍ତିତ୍ୱର ସୁସ୍ଥ ବିକାଶ ପଥରେ ଅନ୍ତରାୟ ସୃଷ୍ଟି କରେ, ଆବଶ୍ୟକ ପରିପକ୍ୱତା ପ୍ରାପ୍ତ କରି ସାରିବା ପରେ ବାଳକ କୌଣସି ଜଟିଳ ସମସ୍ୟାର ସମାଧାନ ଶୀଘ୍ର ଶୀଘ୍ର କରିବାକୁ ସକ୍ଷମ ହୁଏ । ଯେତେବେଳେ ବିକାଶାତ୍ମକ ଦୃଷ୍ଟିକୋଣରୁ ପିଲା ଅମୂର୍ତ୍ତ ଚିନ୍ତନ ଓ ବସ୍ତୁରକୁ ଗ୍ରହଣ କରିବାକୁ ସକ୍ଷମ ହୋଇନଥାଏ, ତାକୁ ଏସବୁ ଶିଖାଦେଲେ, ସେ ଏହା ଗ୍ରହଣ କରିବାକୁ ଯୋଗ୍ୟ ହୁଏ ନାହିଁ । ସେହିପରି ବର୍ତ୍ତମାନକୁ ବୁଝିବାର ଯୋଗ୍ୟତା ସମ୍ପୂର୍ଣ୍ଣ ଭାବରେ ହୋଇନଥିଲା ବେଳେ ପିଲାଙ୍କୁ ଇତିହାସ ପଢ଼ାଇବା

ଆରମ୍ଭ କରିଦେଲେ ସେ ତାହା ବୁଝିବାକୁ ସକ୍ଷମ ହୁଏ ନାହିଁ । ସେହିପରି ପିଲା ସାମାଜିକ ସମସ୍ୟାକୁ ସମାଧାନ କରିବାକୁ ଯୋଗ୍ୟ ନ ଥିଲା ବେଳେ ତାକୁ ପ୍ରାଚୀନ ସଂସ୍କୃତି ତଥା ବିଶ୍ୱର ଆର୍ଥିକ ଓ ରାଜନୈତିକ ସମସ୍ୟା ଶିକ୍ଷା ଦେବାକୁ ଆରମ୍ଭ କଲେ ତାର ଚିନ୍ତନ ଉପରେ କୁ ପ୍ରଭାବ ପଡ଼େ ।

ଏତଦ୍‌ଭିନ୍ନ ବାସ୍ତବିକତା ଓ ଆଦର୍ଶ ମଧ୍ୟରେ ବିରୋଧ କରି ପିଲାକୁ ପରସ୍ପର ବିରୋଧୀ କାର୍ଯ୍ୟ ଶିକ୍ଷା ଦେଲେ ତାର ଚିନ୍ତନ ଓ ମାନସିକ ବିକାଶ ଉପରେ ମନ୍ଦ ପ୍ରଭାବ ପଡ଼ିବା ସ୍ୱାଭାବିକ ।

ବିଚାର

ସାଙ୍କେତିକ ଅନୁକ୍ରିୟା ଆକାରରେ ବିଚାର ଏକ ପ୍ରକାରର ସମସ୍ୟା ସମାଧାନ ଅଟେ । ଏହି ପ୍ରକ୍ରିୟାରେ ପୂର୍ବର ଅଭିଜ୍ଞତାକୁ ବ୍ୟବହାର କରାଯାଏ । ଅର୍ଜିତର ଅଭିଜ୍ଞ-ତାକୁ ବ୍ୟବହାର କରୁଥିବା ଜଟିଳ ଶିକ୍ଷଣରେ ମଧ୍ୟ ବିଚାର ପ୍ରୟୋଗ କରାଯାଏ । ପ୍ରାୟ ୫ ବର୍ଷ ବୟସରେ ଶିଶୁ ଏତେ ଯୋଗ୍ୟ ହୋଇଯାଏ ଯେ ବସ୍ତୁମାନଙ୍କର ସମ୍ବନ୍ଧ ଜାଣି-ପାଏ । ବିଭିନ୍ନ ବସ୍ତୁକୁ ପର୍ଯ୍ୟବେକ୍ଷଣ କରି ବିଚାର କରେ କ'ଣ କିପରି କରିବାକୁ ହେବ ଏବଂ ନିଜର ବିଚାରରେ ତା ସିଦ୍ଧାନ୍ତକୁ ପ୍ରୟୋଗ କରେ । ଅର୍ଥାତ୍ ବାଳକର ତାର୍କିକ ଯୋଗ୍ୟତା ବିକାଶର ପ୍ରାରମ୍ଭିକ ସ୍ଥିତିରେ ଯଥେଷ୍ଟ ବୃଦ୍ଧି ପାଏ । ଏହି ଯୋଗ୍ୟତା ସାହାଯ୍ୟରେ ପିଲା ନିଜର ପରିବେଷ୍ଟନୀଗତ ଉଦ୍ଦୀପକମାନଙ୍କ ସମ୍ବନ୍ଧରେ ଜ୍ଞାନ ଲାଭକରେ ଏବଂ କିପରି ସେ ତାର ପରିବେଷ୍ଟନୀ ସହିତ ଉଚିତ୍ ଅନୁକ୍ରିୟା ପ୍ରଦର୍ଶନ କରିବ, ତାହା ଶିକ୍ଷାକରେ । ବୟସର ବୃଦ୍ଧି ସହିତ ପିଲାର ଚିନ୍ତନ, ତର୍କ ତଥା ବିଚାର ଶକ୍ତିର କ୍ଷେତ୍ର ଅଧିକ ଉନ୍ନତ ଓ ବିସ୍ତୃତ ହୁଏ । ଏହି ଉନ୍ନତି ନିୟମିତ ଭାବରେ ହେଉଥାଏ । ପିଲା ବୟସ ଯେତେ କମ ହୋଇଥିବ ତାର ବିଚାର କରିବାର ଶକ୍ତି ସେହି ଅନୁସାରେ ସୀମିତ ହୋଇଥିବ ।

ପିଲାମାନଙ୍କୁ ଅଧ୍ୟୟନ କରି ଜଣାଯାଇଛି ଯେ, ଛୋଟ ଓ ବଡ଼ ପିଲାମାନଙ୍କର ତର୍କରେ କୌଣସି ବିଶେଷ ପ୍ରଭେଦ ନ ଥାଏ । ଉଭୟଙ୍କର ବିଭିନ୍ନ ସମସ୍ୟା ସମାଧାନ କରିବାର ଢଙ୍ଗ ସାଧାରଣତଃ ସମାନ ହୋଇଥାଏ । ଆୟୁଷ ବଢ଼ିବା ସହିତ ଅମୂର୍ତ୍ତ ବିଚାର ସହ ସମ୍ବନ୍ଧିତ ସମସ୍ତ ଯୋଗ୍ୟତାର ବିକାଶ ଘଟିଥାଏ ।

ବୟସ୍କ ବ୍ୟକ୍ତି ଓ ପିଲାମାନଙ୍କର ତର୍କରେ ବହୁତ କିଛି ପ୍ରଭେଦ ଦେଖିବାକୁ ମିଳେ । ବୟସ୍କ ବ୍ୟକ୍ତି ଅଧିକାଂଶ କ୍ଷେତ୍ରରେ ପୂରା ସମସ୍ୟା ମନ ମଧ୍ୟରେ ପୁନଃ ପୁନଃ ବିଶ୍ଳେଷଣ କରି ସମାଧାନ କରିବାକୁ ଚେଷ୍ଟାକରେ । କିନ୍ତୁ ପିଲାମାନେ ଚିନ୍ତନ ଓ ବିଚାରରେ ଅଧିକ ପ୍ରଯତ୍ନ ପ୍ରମାଦର ବ୍ୟବହାର ଦେଖାନ୍ତି । ପିଲାମାନଙ୍କର ବିଚାରଶକ୍ତି ବିଷୟରେ ବୁଝିବାକୁ-

ହେଲେ ବୟସ୍କମାନଙ୍କୁ ପିଲାମାନଙ୍କ ଦୃଷ୍ଟିକୋଣରୁ ତାହା ବିଚାର କରିବାକୁ ହେବ । ଯଦି ସେମାନଙ୍କର ବିଚାରଧାରାକୁ ବୟସ୍କମାନେ ନିଜ ଦୃଷ୍ଟିକୋଣରୁ ବୁଝିବାକୁ ଚେଷ୍ଟା ନକରନ୍ତି, ତେବେ ତାହା ଠିକ୍ ଭାବରେ ବୁଝିବାରେ ସଫଳତା ପ୍ରାପ୍ତ କରିବା କଠିନ ହେବ। ପିଲାର ଚିନ୍ତନ ଓ ବିଚାରକୁ ବୁଝିବାକୁ ଶିକ୍ଷକ, ପିତା, ମାତା ଓ ଅନ୍ୟ ବୟସ୍କ ବ୍ୟକ୍ତିମାନଙ୍କୁ ନିଜର ଅନୁଭବ ଓ ଦୃଷ୍ଟିଭଙ୍ଗୀ ତ୍ୟାଗ କରିବାକୁ ହେବ ।

ସମବୟସ୍କ ବିଭିନ୍ନ ବାଳକବାଳିକାମାନଙ୍କର ଚିନ୍ତାଧାରାରେ ବ୍ୟକ୍ତିଗତ ଭିନ୍ନତା ଲକ୍ଷ୍ୟ କରାଯାଏ । ଦୃଷ୍ଟାନ୍ତ ସ୍ୱରୂପ, ପରୀକ୍ଷାରେ ପ୍ରଶ୍ନକୁ କେଉଁ ଛାତ୍ର କିପରି ଭାବରେ ବିଚାର କରନ୍ତି, ତାହା ବିଶ୍ଳେଷଣ କରାଯାଇପାରେ । ଗୋଟିଏ ବାଳକ ପ୍ରଶ୍ନକୁ କଷ୍ଟକର ବୋଲି ବିଚାର କରେ, ଆଉ କେହି ଉତ୍ତର ଦେବା କଷ୍ଟରୁ ତ୍ରାହି ପାଇବା ପାଇଁ ଅନ୍ୟ କୌଣସି ବିକଳ୍ପ ପନ୍ଥା ଖୋଜି ବାହାର କରିବାକୁ ଚେଷ୍ଟା କରେ । ଏପରି ପିଲା ମଧ୍ୟ ଥାନ୍ତି ଯେଉଁ-ମାନେ କେବଳ ଉତ୍ତର ଦେବା ନିମିତ୍ତ ଉତ୍ତର ଦିଅନ୍ତି । ଏସବୁ ଦୃଷ୍ଟିରୁ ବୟସ୍କମାନଙ୍କୁ ବିଶେଷ ସାବଧାନ ହେବାକୁ ହେବ । ପିଲାମାନଙ୍କୁ ପ୍ରଶ୍ନ କଲେ ଯେଉଁ ଉତ୍ତର ମିଳେ ସେଥିରୁ ସେମାନଙ୍କ ଚିନ୍ତାଧାରାର ସୂଚନା ମିଳେ। ବହୁତ ଉତ୍ତର ବାସ୍ତବିକତା'ଠାରୁ ଦୂରରେ ଥାଏ । ଯେପରି 'ବଢ଼େଇ' କାହାକୁ କହନ୍ତି ବୋଲି ପଚାରିଲେ ବହୁତ ପିଲା ଉତ୍ତର ଦିଅନ୍ତି, "ଯେ ପ୍ରତ୍ୟେକ ବସ୍ତୁକୁ ତିଆରି କରେ" ଯଥା କାଠ ଜିନିଷ, ଘର, ମୋଟର କାର ଇତ୍ୟାଦି । ଏଥିରୁ ଜଣାଯାଏ ଯେ ପିଲାର ବଢ଼େଇର କାର୍ଯ୍ୟକଳାପ ସମ୍ବନ୍ଧରେ ସ୍ପଷ୍ଟ ଧାରଣା ନ ଥାଏ । ଯେଉଁ ପିଲାମାନେ ବୁଦ୍ଧିମାନ, ସେମାନଙ୍କ ବିଚାରରେ ବାସ୍ତବତା ଲକ୍ଷ୍ୟ କରାଯାଏ । ବୟସ୍କମାନଙ୍କୁ ଅନୁକରଣ କଲେ ପିଲା ତାର ବିଚାରଶକ୍ତିକୁ ଉନ୍ନତ କରେ । କିନ୍ତୁ ଅନେକ କ୍ଷେତ୍ରରେ ଭୁଲ ବିଶ୍ୱାସ ଏବଂ ଶବ୍ଦମାନଙ୍କର ଅନୁଚିତ ପ୍ରୟୋଗ ଯୋଗୁ କେତେକ ବିଚାରଧାରା ଗଠିତ ହୋଇଥାଏ । ବୟସ୍କମାନଙ୍କ କଥା ସତ୍ୟ ବୋଲି ଧରିନେବା ପିଲାମାନଙ୍କର ସାଧାରଣ ମନୋବୃତ୍ତି ଅଟେ । ବୟସ୍କ ବ୍ୟକ୍ତିମାନେ ନିଜ ନିଜ ମଧ୍ୟରେ କଥାବାର୍ତ୍ତା କରୁଥିବା ବେଳେ ପିଲା ଏହି କଥାଦ୍ୱାରା ପ୍ରଭାବିତ ହୋଇ ନିଜ ମନରେ କେତେକ ବିଚାର କରେ। ଏହି ବିଚାରକୁ ସେ ଭବିଷ୍ୟତରେ ଅନେକ ବିସ୍ତୃତ ଓ ସାମାନ୍ୟକରଣ କରିନିଏ । ଅନ୍ୟମାନଙ୍କର ଭାଷାକୁ ଠିକ୍ ଭାବରେ ନବୁଝିବା ଯୋଗୁଁ ମଧ୍ୟ ପିଲାଙ୍କର ଅନୁଚିନ୍ତା ଭୁଲ ହୋଇପାରେ । ଏହି କାରଣରୁ ପିଲା ବିଦ୍ୟାଳୟରେ କିଛି ନ ବୁଝି ଓ ବିଚାର ନ କରି ଉତ୍ତର ଦିଏ ଏଥିପାଇଁ ସେ ହାସ୍ୟାସ୍ପଦ ହୁଏ । ନିଜ କାର୍ଯ୍ୟରେ ମଧ୍ୟ ସେ ଏପରି ଶବ୍ଦର ପ୍ରୟୋଗ କରେ, ଯାହାର ପ୍ରକୃତ ଅର୍ଥ ସେ କେବେ ନିଜେ ମଧ୍ୟ ସ୍ପଷ୍ଟ ଜାଣିନଥାଏ ।

## ବିଚାରର ପ୍ରକୃତି

ଯେତେବେଳେ ଶିଶୁ କୌଣସି ଏକ ପରିସ୍ଥିତି ସହିତ ନିଜକୁ ଉପଯୋଜନ କରିପାରେ ନାହିଁ, ତା ସମ୍ମୁଖରେ ସମସ୍ୟା ସୃଷ୍ଟି ହୁଏ । ଏହି ସମସ୍ୟାର ସମାଧାନ ପାଇଁ

ପ୍ରତ୍ୟୟ ଓ ସଙ୍କେତ ସାହାଯ୍ୟରେ ସେ ଚିନ୍ତନ ପ୍ରକ୍ରିୟାର ଆଶ୍ରୟ ନିଏ । ଏହି ପ୍ରକ୍ରିୟାକୁ ବିଚାର କୁହାଯାଏ । ମନ ମଧ୍ୟରେ ଥିବା ବିଭିନ୍ନ ପ୍ରତ୍ୟୟଗୁଡ଼ିକ ପୃଥକ୍ ଭାବରେ ନରହି ସଙ୍ଗଠିତ ଭାବରେ ରହିଥାନ୍ତି । ଏହା ଏକ ମାନଚିତ୍ର ଯାହା ସାହାଯ୍ୟରେ ବର୍ତ୍ତମାନର ସମସ୍ୟାଗୁଡ଼ିକର ସମାଧାନ ଚେଷ୍ଟା କରାଯାଏ । ଏଠାରେ ଏକ ଦୃଷ୍ଟାନ୍ତ ଦେଇ ବିଚାର ପ୍ରକ୍ରିୟାକୁ ବିଶ୍ଳେଷଣ କରାହେବ । ଏକ ବାଳକ ପୁରସ୍କାର ବିତରଣୀ ଉତ୍ସବରେ ଉପସ୍ଥାପିତ ହେବାକୁ ଥିବା ନାଟକ ପ୍ରତିଯୋଗିତାରେ ଭାଗ ନେବାକୁ ବିଦ୍ୟାଳୟକୁ ଯିବା ନିମନ୍ତେ ବସ୍‌ଷ୍ଟାଣ୍ଡକୁ ଯାଇ ଦେଖିଲା ଯେ ବସ୍ ଚାଲିଯାଇଛି । ଏଣୁ ବାଳକ ସମ୍ମୁଖରେ ଏକ ଜଟିଳ ସମସ୍ୟା ଉପୁଜିଲା କିପରି ବିଦ୍ୟାଳରେ ଠିକ୍ ସମୟରେ ପହଞ୍ଚିବ । ସେଥିନିମିତ୍ତ ସେ ବିଭିନ୍ନ ପ୍ରକାରର ସମାଧାନ ଚିନ୍ତା କଲା । ଟ୍ୟାକ୍‌ସି କରି ବିଦ୍ୟାଳୟରେ ଶୀଘ୍ର ପହଞ୍ଚି ହେବ, କିନ୍ତୁ ଟ୍ୟାକ୍‌ସି ଭଡ଼ା ପାଇଁ ଏତେ ପଇସା ପାଖରେ ନାହିଁ । ଘରକୁ ଫେରି ପଇସା ଆଣିବା ବେଳକୁ ଅନେକ ବିଳମ୍ବ ହୋଇଯାଇଥିବ । କାହାଠାରୁ ଟଙ୍କା ଧାର କରିବାର ସୁବିଧା ନାହିଁ । ଏହି ସମୟରେ ହଠାତ୍ ତା'ର ମନେପଡ଼ିଲା ଯେ ପ୍ରାୟ ଅଧମାଇଲ ଦୂରରେ ତାର ଜଣେ ସହପାଠୀ ମୋଟରଯୋଗେ ବିଦ୍ୟାଳୟକୁ ଯାଆନ୍ତି । ତେଣୁ ସେ ସହପାଠୀଙ୍କ ଘରକୁ ଯାଇ ତାଙ୍କ ସହିତ ମୋଟର ଯୋଗେ ବିଦ୍ୟାଳୟକୁ ଗଲା । ଅନ୍ୟ ଏକ ଦୃଷ୍ଟାନ୍ତ— ବିଦ୍ୟାଳୟରୁ ଛୁଟୀ ହେଲାବେଳକୁ ଅଳ୍ପ ଅଳ୍ପ ବର୍ଷା ହେଉଛି । ନିକଟରେ ରିକ୍‌ସା ନାହିଁ, ଭୋକ ହେଉଥିବାରୁ ଅପେକ୍ଷା କରିବାକୁ ଧୈର୍ଯ୍ୟ ନାହିଁ । ପିଲା ନିକଟରେ ବର୍ଷାତି କପଡ଼ା ଅଛି କିନ୍ତୁ ଟୋପି ନାହିଁ । ବର୍ତ୍ତମାନ ପିଲା କିପରି ଘରକୁ ଯିବ ଚିନ୍ତା ପଡ଼ିଲା । ଶେଷରେ ବର୍ଷାତି କପଡ଼ା ପିନ୍ଧି ବହି ବାକ୍‌ସଟିକୁ ମୁଣ୍ଡ ଉପରେ ରଖି ଶୀଘ୍ର ଶୀଘ୍ର ଗୃହ ଅଭିମୁଖେ ପାଦ ପକାଇଲା । ଏହିପରି ଭାବରେ ଦୈନନ୍ଦିନ ଜୀବନର ନାନା ପରିସ୍ଥିତିରେ ପିଲା ବିଭିନ୍ନ ପ୍ରକାର ସମସ୍ୟାର ସମ୍ମୁଖୀନ ହୁଏ । ଏହି ସମସ୍ୟାଗୁଡ଼ିକର ସମାଧାନ କରିବାକୁ ସେ ବିଚାର ପ୍ରୟୋଗ କରେ । ଏହି ବିଚାର ଶକ୍ତି ତାର ପୂର୍ବର ଅନୁଭବ, ବର୍ତ୍ତମାନ ପରିସ୍ଥିତିକୁ ସଠିକ୍ ଭାବରେ ବିଶ୍ଳେଷଣ କରିବାର ଯୋଗ୍ୟତା ଓ ପ୍ରତ୍ୟୟମାନଙ୍କର ସଠିକ୍ ବ୍ୟବହାର ଉପରେ ନିର୍ଭର କରେ ।

ସେହିପରି କ୍ରିକେଟ୍, ଫୁଟବଲ ଓ ହକି ପ୍ରଭୃତି କ୍ରୀଡ଼ାମାନଙ୍କରେ ପରିସ୍ଥିତିକୁ ବିଶ୍ଳେଷଣ କରି ଦଳର ଖେଳାଳୀଗଣ, ବିଶେଷତଃ ନେତାଙ୍କୁ ଜିଣିବା ପାଇଁ ବିଚାର ଶକ୍ତିର ପ୍ରୟୋଗ କରିବାକୁ ପଡ଼ିଥାଏ । ବିଚାର ପ୍ରକ୍ରିୟାରେ ଭୁଲ ରହିଲେ କ୍ରୀଡ଼ାରେ ହାରିବାର ସମ୍ଭାବନା ଅଧିକ ଥାଏ । କେତେଗୁଡ଼ିଏ ଉପାଦାନର ଉପଯୁକ୍ତ ବିକାଶ ନ ହେଲେ ବିଚାର ଶକ୍ତି ସୀମିତ ହୋଇଯାଏ । ଫଳରେ ସମସ୍ୟାର ସଠିକ ସମାଧାନ କରିବା କଷ୍ଟକର ହୁଏ । ବିଚାର ପ୍ରକ୍ରିୟାର କେତେକ ଆବଶ୍ୟକୀୟ ଉପାଦାନ ନିମ୍ନରେ ପ୍ରଦତ୍ତ ହେଲା ।

### ପୂର୍ବ ଅଭିଜ୍ଞତା

ପୂର୍ବର ଅଭିଜ୍ଞତା ଉପରେହିଁ ବିଚାର ପ୍ରକ୍ରିୟା ଗଠିତ ହୁଏ, ଅର୍ଥାତ୍ ବିଚାର ପ୍ରକ୍ରି-ୟାରେ ଏହା ମୁଖ୍ୟ ଭୂମିକା ଗ୍ରହଣ କରିଥାଏ । ଅବଶ୍ୟ ସମସ୍ତ ପ୍ରକାରର ଆବଶ୍ୟକୀୟ-

ତଥ୍ୟ ଓ ଖବର ପାଖରେ ଥାଇ ମଧ୍ୟ ଅନେକ ସମୟରେ ତଥ୍ୟର ଉପଯୁକ୍ତ ବ୍ୟବହାର ଅଭାବରୁ ସମସ୍ୟାର ସମାଧାନ କରିହୁଏ ନାହିଁ । କୌଣସି ବିଷୟ ମନେଥାଇପାରେ, କିନ୍ତୁ ଏହାକୁ ଚିନ୍ତନ ପ୍ରକ୍ରିୟାରେ ପ୍ରୟୋଗ କରିବା ସ୍ୱତନ୍ତ୍ର ବ୍ୟାପାର ଅଟେ । କିନ୍ତୁ ବିଭିନ୍ନ ଅଧ୍ୟୟନମାନଙ୍କରୁ ଜଣାଯାଏ ଯେ ଚିନ୍ତନ ଶକ୍ତି ଓ ବ୍ୟକ୍ତିର ପୂର୍ବର ଅଭିଜ୍ଞତା ମଧ୍ୟରେ ସକାଶ୍ମ ସହସମ୍ବନ୍ଧ ରହିଅଛି ।

ତଥ୍ୟ କିପରି ସିଦ୍ଧାନ୍ତ ନିର୍ଣ୍ଣୟ କରେ ତାହାର ଏକ ଉଦାହରଣ ଗିଲଫୋର୍ଡ଼ ପ୍ରଦାନ କରିଅଛନ୍ତି । ଗୋଟିଏ ଛୋଟ ଝିଅ ତାର ମା'ଙ୍କୁ ପ୍ରଶ୍ନ କଲା, "ମା ! ରେଶମର ମୋଜା ଆସେ କେଉଁଠୁ ?" ମା' ଉତ୍ତର ଦେଲେ, କୀଟମାନଙ୍କଠାରୁ । ଝିଅ ଏହା ଶୁଣି କହିଲା—"ମା, ତୁମେ ବାପାଙ୍କୁ କାହିଁକି କୀଟ ବୋଲି କହୁଛ ?" ଏହି ଉଦାହରଣକୁ ଲକ୍ଷ୍ୟ କଲେ ଦେଖାଯିବ ଯେ, ମା ପ୍ରଦାନ କରିଥିବା ତଥ୍ୟରୁ ହିଁ କନ୍ୟା ସିଦ୍ଧାନ୍ତ ଗ୍ରହଣ କଲା, କୀଟମାନେ ରେଶମ ପ୍ରସ୍ତୁତ କରନ୍ତି ବୋଲି ମା ଜାଣନ୍ତି । କିନ୍ତୁ ଝିଅ ଜାଣେ ଯେ, ବାପା ରେଶମ ମୋଜା ଦିଅନ୍ତି । ତେଣୁ ଝିଅର ଚିନ୍ତନରେ ବାପା ରେଶମ ମୋଜା ଯୋଗାନ୍ତି । ଯଦି କୌଣସି ବିଷୟରେ ଦୁଇଜଣ ପିଲା ସମାନ ରକମର ସମ୍ବାଦ ପାଇଥାନ୍ତି, ବା ସେମାନଙ୍କର ପୂର୍ବ ଅଭିଜ୍ଞତା ସମାନ ହୋଇଥାଏ, ତେବେ ଏକ ସମସ୍ୟାକୁ ସେମାନେ ସମାନ ପଦ୍ଧତିରେ ସମାଧାନ କରିଥାନ୍ତି । ଏଥିରୁ ଚିନ୍ତନ ପ୍ରକ୍ରିୟାରେ ପୂର୍ବର ଅଭିଜ୍ଞତାର ଗୁରୁତ୍ୱ ସହଜରେ ଅନୁମେୟ ।

## ଚିନ୍ତନ ପ୍ରକ୍ରିୟାରେ ପ୍ରଯତ୍ନ ପ୍ରମାଦ ପଦ୍ଧତିର ଭୂମିକା

କେତେକ ମନସ୍ତତ୍ତ୍ୱବିତ୍‌ଙ୍କ ମତରେ ଚିନ୍ତନ ପ୍ରକ୍ରିୟାରେ ସ୍ୱାଭାବିକ ସ୍ତରରେ ପ୍ରଯତ୍ନ ପ୍ରମାଦ ବ୍ୟବହୃତ ହୁଏ । କିନ୍ତୁ ଅନ୍ୟମାନେ ଏହି ମତକୁ ଗ୍ରହଣ ନ କରି ଚିନ୍ତନ ପ୍ରକ୍ରି-ୟାରେ ଅନ୍ତର୍ଦୃଷ୍ଟିର ଭୂମିକା ଉପରେ ଅଧିକ ଗୁରୁତ୍ୱ ପ୍ରଦାନ କରନ୍ତି । ଥର୍ଣ୍ଣଡ଼ାଇକ ସମସ୍ୟା ସମାଧାନ ଉପରେ ଏକ ପରୀକ୍ଷା କରିଥିଲେ । ଏକ କ୍ଷୁଧାର୍ତ୍ତ ବିରାଡ଼ିକୁ ସେ ଗୋଟିଏ ଯନ୍ତା ମଧ୍ୟରେ ବନ୍ଦ କରି ଯନ୍ତା ବାହାରେ କିଛି ଖାଦ୍ୟ ରଖିଲେ । ଏଠାରେ କ୍ଷୁଧା ପ୍ରବର୍ତ୍ତକ ଓ ଖାଦ୍ୟ ଲକ୍ଷ୍ୟ ହିସାବରେ କାର୍ଯ୍ୟ କରିଲା । ଯନ୍ତାର ଝିଙ୍କିରିକୁ ଖୋଲିଲେ ଏହାର କବାଟ ଖୋଲିବାର ବ୍ୟବସ୍ଥା ଥିଲା । ବିରାଡ଼ି କିପରି ଭାବରେ କବାଟ ଖୋଲିବ, ଖାଦ୍ୟ ନିକଟକୁ ଯିବ, ତାର ସଠିକ୍ ପନ୍ଥା ଜାଣିନଥିବାରୁ ନାନା ପ୍ରକାର ଅନାବଶ୍ୟକ କ୍ରିୟାକଳାପ ପ୍ରଦର୍ଶନ କଲା । କିନ୍ତୁ ଶେଷରେ କବାଟ ଖୋଲି ଯନ୍ତା ବାହାରକୁ ଯାଇ ଖାଦ୍ୟ ଖାଇଲା । ଥର୍ଣ୍ଣଡ଼ାଇକଙ୍କ ମତରେ ଏହି ପ୍ରକାରର ସମାଧାନ ସମ୍ପୂର୍ଣ୍ଣ ଭାବରେ ପ୍ରଯତ୍ନ ପ୍ରମାଦ ସାହାଯ୍ୟରେ ସମ୍ଭବ ହେଲା । କିନ୍ତୁ ତାଙ୍କର ଏହି ମତକୁ ପ୍ରତିଷ୍ଠିତ କରିବା କଷ୍ଟକର ଅଟେ । କାରଣ ବିରାଡ଼ି ସ୍ୱାଭାବିକ ସ୍ତରରେ ଯେ ଲକ୍ଷ୍ୟ ହାସଲ କରିବାପାଇଁ ଚେଷ୍ଟା କରୁନଥିଲା ଏହା କୁହାଯାଇନପାରେ ।

ଭାବନାଜ ମାନସିକ ସ୍ତରରେ ସେ ହୁଏତ ପ୍ରଯତ୍ନ ପ୍ରମାଦ ପଦ୍ଧତି ବ୍ୟବହାର କରୁଥିଲା । ସମ୍ବେଦ ପ୍ରେରକ ପଦ୍ଧତି ଓ ଶାରୀରିକ କ୍ରିୟାକଳାପ ସହିତ ସେ ଯେ ପରିସ୍ଥିତିକୁ ବିଚାର କରିବାକୁ ଚେଷ୍ଟା କରୁନଥିଲା, ଏ କଥା ମଧ୍ୟ ସମ୍ପୂର୍ଣ୍ଣ ଭାବରେ ଅସ୍ୱୀକାର କରାଯାଇ ନପାରେ । ହୁଏତ କପଟ ଭାବରେ କ୍ରିୟାକଳାପ ପ୍ରଦର୍ଶନ କଲେ ଯନ୍ତ୍ରାର ଦ୍ୱାର ଖୋଲିପାରିବ, ସମ୍ପୂର୍ଣ୍ଣ ପରିସ୍ଥିତିକୁ ବିଚାର ତଥା ବିଶ୍ଳେଷଣ କରି ବିଗ୍ରଣ୍ଡ ତାହା ଜାଣିବାକୁ ଚେଷ୍ଟା କରୁଥିଲା ।

## ବିଚାର ପ୍ରକ୍ରିୟାର ସ୍ତର

୧ । ସମସ୍ୟାକୁ ବୁଝିବାର ଆବଶ୍ୟକତା—ଯେ କୌଣସି ବିଚାର ପ୍ରକ୍ରିୟାରେ ପ୍ରଥମ ପଦକ୍ଷେପ ହେଲା, ସମସ୍ୟାକୁ ସଠିକ୍ ଭାବରେ ବୁଝିବା । ବାଳକ ସମସ୍ୟାର ସମାଧାନର ଆବଶ୍ୟକତା ଉପଲବ୍ଧି କଲେ ସମସ୍ୟା ସମାଧାନ କରିବାକୁ ଚିନ୍ତା ଓ ବିଚାର ପ୍ରକ୍ରିୟାର ସାହାଯ୍ୟ ନେବ । ସମସ୍ତ ଘଟଣା ଓ ପରିସ୍ଥିତିକୁ ବିଶ୍ଳେଷଣ କରି ସମସ୍ୟାର ସମାଧାନ ପାଇଁ ଏକ ମୋଟାମୋଟି ପରିକଳ୍ପନା ପ୍ରସ୍ତୁତ କରାଯାଇପାରିବ ।

୨ । ତଥ୍ୟ ବା ଖବର ସଂଗ୍ରହ କରିବା – ବର୍ତ୍ତମାନର ସମସ୍ୟାକୁ ସମାଧାନ କରିବା ପାଇଁ ଯେଉଁ ସବୁ ତଥ୍ୟ ବା ଜ୍ଞାନ ଆବଶ୍ୟକ, ତାହା ଯଦି ପିଲାର ଥାଏ, ତେବେ ତାହା ସମସ୍ୟାର ସମାଧାନକୁ ଯଥେଷ୍ଟ ସହଜ ଓ ସରଳ କରିଦିଏ । ହୁଏତ ଅନ୍ୟ କେହି ଏହି ପ୍ରକାରର ସମସ୍ୟାକୁ ସମାଧାନ କରିବାରେ ଯେଉଁ ପଦ୍ଧତି ପ୍ରୟୋଗ କରିଥିଲା, ପିଲା ତାହା ଜାଣିଥିଲେ କରିପାରେ, ଅର୍ଥାତ୍ ଯଦି ପୂର୍ବର କୌଣସି ସମସ୍ୟା ଓ ବର୍ତ୍ତମାନର ସମସ୍ୟା ମଧ୍ୟରେ କିଛି ସାଧାରଣ ଲକ୍ଷଣ ଥାଏ, ତେବେ ବର୍ତ୍ତମାନର ସମସ୍ୟା ସମାଧାନ କରିବାକୁ ପୂର୍ବ ସମସ୍ୟା ସମାଧାନ ପଦ୍ଧତିରୁ କିଛି ଗ୍ରହଣ କରାଯାଇପାରେ । ଏଣୁ ସମସ୍ୟା ସମାଧାନ ସମୟରେ କିଛି ଆବଶ୍ୟକୀୟ ଅଭିଜ୍ଞତା ଓ ତଥ୍ୟ ଥିଲେ ବିଚାର ପ୍ରକ୍ରିୟା ପ୍ରୟୋଗ କରିବା ସହଜସାଧ୍ୟ ହୁଏ ।

୩ । ସମ୍ଭାବ୍ୟ ସମାଧାନ ବା ପ୍ରକଳ୍ପ ଗଠନ - କୌଣସି ଏକ ସମସ୍ୟା ସମାଧାନ ବିଗରେ କିଛି ତଥ୍ୟ ସଂଗ୍ରହ କରିସାରିବା ପରେ ସମସ୍ୟା ସମାଧାନ କରିବା ପାଇଁ ପ୍ରଥମେ କେତେକ ଭାବନା ମନକୁ ଆସେ । ସଠିକ୍ ସମାଧାନରେ ପହଞ୍ଚିବା ପୂର୍ବରୁ ଅସ୍ଥାୟୀ ଭାବରେ ହୁଏତ ଏହାକୁ ଗ୍ରହଣ କରାଯାଇଥାଏ । କେତେକ ପ୍ରକଳ୍ପ ମଧ୍ୟ ଗଠନ କରାଯାଏ । ଏହି ପ୍ରକଳ୍ପ ହୁଏତ ଶେଷରେ ଠିକ୍ ବା ଭୁଲ ପ୍ରମାଣିତ ହୋଇପାରେ । ପ୍ରକଳ୍ପର ସଠିକତା ପ୍ରକଳ୍ପ ଗଠନକାରୀଙ୍କର ଧୀଶକ୍ତି ଓ ବିଚାର ଶକ୍ତି ଉପରେ ସାଧାରଣତଃ ନିର୍ଭର କରିଥାଏ ।

ଦୃଷ୍ଟାନ୍ତ ସ୍ୱରୂପ, ବାଳକ ବାଳିକାମାନଙ୍କ ମଧ୍ୟରୁ ଅଧିକ ବୁଦ୍ଧିମାନ କିଏ, ତାହା କହିବା କଷ୍ଟକର, କିନ୍ତୁ କିଏ ବେଶୀ ବୁଦ୍ଧିମାନ ତାହା ପରୀକ୍ଷଣ ନ କଲେ କୁହାଯାଇ-ପାରିବ ନାହିଁ । ଏଣୁ ପରୀକ୍ଷା କରିବା ପୂର୍ବରୁ ଅବସ୍ଥାକୁ ପର୍ଯ୍ୟବେକ୍ଷଣ କରି ଏକ ପ୍ରକଳ୍ପ ଗଠନ କରିବାକୁ ପଡ଼ିବ । ଉଦାହରଣ ସ୍ୱରୂପ—ବାଳକ ବାଳିକାମାନଙ୍କ ମଧ୍ୟରେ ବାଳକମାନେ ଅଧିକ ବୁଦ୍ଧିମାନ । ପରେ ଫଳାଫଳକୁ ପରୀକ୍ଷା କରି ଏହି ପ୍ରକଳ୍ପଗୁଡ଼ିକ ଠିକ୍ ବା ଭୁଲ ତାହା କୁହାଯାଇପାରିବ ।

୪ । ସମ୍ଭାବ୍ୟ ସମାଧାନର ମୂଲ୍ୟାୟନ—ପ୍ରକଳ୍ପ ଗଠନ ହୋଇଗଲାପରେ ବିଷୟୀ ସମ୍ଭାବ୍ୟ ସମାଧାନଗୁଡ଼ିକର ମୂଲ୍ୟାୟନ କରିବାକୁ ଚେଷ୍ଟାକରେ । ସମସ୍ୟାର ସମାଧାନ ନିମନ୍ତେ ଆବଶ୍ୟକୀୟ ଓ ଦରକାରୀ ତଥ୍ୟ ତଥା ବିଷୟବସ୍ତୁ ଗ୍ରହଣ କରି ଅନ୍ୟ ସବୁ ଅନାବଶ୍ୟକ ଓ ଅସଙ୍ଗତ ତଥ୍ୟକୁ ତ୍ୟାଗ କରେ । ସମାଧାନ ସମ୍ବନ୍ଧୀୟ ଆବଶ୍ୟକୀୟ ମୂଲ୍ୟବାନ ତଥ୍ୟଗୁଡ଼ିକୁ ସେ ବିଶେଷଭାବରେ ସମସ୍ୟା ସମାଧାନ କାର୍ଯ୍ୟରେ ପ୍ରୟୋଗ କରେ ।

୫ । ସମ୍ଭାବ୍ୟ ସମାଧାନକୁ ପରୀକ୍ଷାକରି ଦେଖିବା—ସମାଧାନ ବିଜ୍ଞାନ-ସମ୍ମତ କି ନା—ଏହା କେତେଦୂର ବିଶ୍ୱାସଯୋଗ୍ୟ ଓ ସଠିକ୍ ତାହା ପରୀକ୍ଷା କରି ଦେଖିବା ଏହି ପର୍ଯ୍ୟାୟର ଲକ୍ଷ୍ୟ ।

୬ । ସିଦ୍ଧାନ୍ତ ଗଠନ କରିବା—ପ୍ରକଳ୍ପକୁ ପରୀକ୍ଷା କରି ଦେଖିବା ପରେ ସିଦ୍ଧାନ୍ତମାନ ଗ୍ରହଣ କରାଯାଏ ଏବଂ ଏହି ସିଦ୍ଧାନ୍ତ ଭବିଷ୍ୟତରେ ସମାନ ପ୍ରକାରର ସମସ୍ୟା ସମାଧାନ କରିବାରେ ସାହାଯ୍ୟ କରେ । ଦୃଷ୍ଟାନ୍ତ ସ୍ୱରୂପ, ଉଚ୍ଚ ସାମାଜିକ, ଆର୍ଥିକ ଶ୍ରେଣୀର ବାଳକମାନଙ୍କର ଆକାଂକ୍ଷା ଅଭିଳାଷ, ନିମ୍ନ ସାମାଜିକ ଶ୍ରେଣୀର ବାଳକ-ମାନଙ୍କ ଆକାଂକ୍ଷା ତଥା ଅଭିଳାଷ ତୁଳନାରେ ବେଶୀ କି କମ୍ ତାହା ପରୀକ୍ଷା କରି ଯେଉଁ ତଥ୍ୟ ଲାଭ କରାଯାଏ, ତାହା ଭବିଷ୍ୟତରେ ସେହି ପ୍ରକାରର ସମସ୍ୟା ଅଧ୍ୟୟନ କରିବା ଓ ଫଳାଫଳକୁ ବିଶ୍ଳେଷଣ କରିବାରେ ସାହାଯ୍ୟ କରେ ।

———

## ଦଶମ ଅଧ୍ୟାୟ

# ଅନୁକରଣ

ଶିଶୁ ଅନୁକରଣପ୍ରିୟ । ସେ ଯାହା ଦେଖେ ବା ଶୁଣେ ସଙ୍ଗେ ସଙ୍ଗେ ନିଜର ବ୍ୟବହାର ଓ କ୍ରିୟାକଳାପ ମାଧ୍ୟମରେ ତାହା ପ୍ରଦର୍ଶନ କରିବାକୁ ଚେଷ୍ଟା କରେ । ବିଶେଷତଃ ଶିଶୁ ଯେଉଁମାନଙ୍କୁ ଭଲପାଏ, ବିଶ୍ୱାସ କରେ ଓ ଭକ୍ତି କରେ ସେମାନଙ୍କ ସହିତ ନିଜକୁ ଏକୀକରଣ କରି ସେମାନଙ୍କର ବ୍ୟବହାରକୁ ଅନୁକରଣ କରିବାକୁ ଉଦ୍ୟମ କରେ । ଶୈଶବାବସ୍ଥାରେ ପିତାମାତା ଶିଶୁର ଆବଶ୍ୟକତା ପୂରଣ କରି ତାର ସେବା ଓ ଯତ୍ନ କରୁଥିବାରୁ ଏବଂ ନାନା କଷ୍ଟ ସହି ତାକୁ ସ୍ନେହଶ୍ରଦ୍ଧାର ସହିତ ଲାଳନପାଳନ କରୁଥିବାରୁ ଶିଶୁ ସେମାନଙ୍କ ବ୍ୟବହାରକୁ ଅନୁକରଣ କରେ । ଏଣୁ ମା' ଯେପରି ଚାଲନ୍ତି, କଥା କହନ୍ତି ଅଥବା ଆବେଗିକ ଅନୁକ୍ରିୟା ଓ ମନସ୍ତାତ୍ତ୍ୱିକ ପ୍ରକ୍ରିୟାଗୁଡ଼ିକୁ ପ୍ରକାଶ କରନ୍ତି, ଶିଶୁ ସେହିପରି ପ୍ରକାଶ କରିବାକୁ ଚେଷ୍ଟା କରେ । ଗୋଟିଏ ପିଲା ଜନ୍ମ ପରଠାରୁ କୌଣସି କାରଣରୁ ତାର ମା'ଙ୍କ ପାଖରେ ଲାଳିତ ପାଳିତ ନ ହୋଇ କେଜେମାଙ୍କ ପାଖରେ ପାଳିତ ହୋଇଥିଲା । ଦେଖାଗଲା ଯେ କେଜେମା ଯେଉଁପରି ଢଙ୍ଗରେ ଖା'ନ୍ତି, ଯେପରି ଚାଲନ୍ତି ଓ କଥା କହନ୍ତି, ପିଲା ସେହିପରି କଲା । ସେ ଯେଉଁ ଯେଉଁ ଖାଦ୍ୟକୁ ଭଲ ପାଆନ୍ତି, ପିଲା ଠିକ୍ ସେହି ପ୍ରକାରର ଖାଦ୍ୟକୁ ପସନ୍ଦ କଲା । ଏହି କାରଣରୁ ଭାଷାରେ ଦୋଷ ତ୍ରୁଟି ଥିବା ପିତାମାତାଙ୍କର ସନ୍ତାନ ସନ୍ତତିଙ୍କର ଭାଷାରେ ତ୍ରୁଟି ଥିବା ଲକ୍ଷ୍ୟ କରାଯାଏ । ଅନୁକରଣ ଓ ଏକାତ୍ମୀକରଣ ମାଧ୍ୟମରେ ମାନବ ବ୍ୟକ୍ତିତ୍ୱର ବହୁ ଲକ୍ଷଣ ଗଠିତ ହୋଇଥାଏ । ଉଭୟ ପଶୁ ଓ ମାନବଙ୍କ ଉପରେ ଅନୁକରଣ ପ୍ରକ୍ରିୟା ଉପରେ ବହୁ ଅଧ୍ୟୟନ ଓ ପରୀକ୍ଷା କରାଯାଇଛି । ଅନ୍ୟମାନଙ୍କର କ୍ରିୟାକଳାପ ଓ ବ୍ୟବହାରକୁ ପର୍ଯ୍ୟବେକ୍ଷଣ ଓ ଅନୁକରଣ କରି କେତେ ପରିମାଣରେ ଶିକ୍ଷଣ ସମ୍ଭବ, ତାହା ଉଦ୍‌ଘାଟନ କରିବା ଏହି ସବୁ ସଂପରୀକ୍ଷା ଓ ଅଧ୍ୟୟନମାନଙ୍କର ପ୍ରଧାନ ଉଦ୍ଦେଶ୍ୟ ଅଟେ । ପଶୁମାନଙ୍କ ଉପରେ ପ୍ରୟୋଗ କରାଯାଇଥିବା ଅଧିକାଂଶ ସଂପରୀକ୍ଷାରେ ବିପରୀତ ଫଳାଫଳ ମିଳିଅଛି । କେବଳ ସିମ୍ପାଞ୍ଜି ଓ ମାଙ୍କଡ଼ମାନଙ୍କ କ୍ଷେତ୍ରରେ ଅନୁକରଣଦ୍ୱାରା ଶିକ୍ଷଣ ସମ୍ଭବ ହେବାର କେତେକ ସୂଚନା ମିଳିଛି ।

ବିଭିନ୍ନ ଅଧ୍ୟୟନମାନଙ୍କରୁ ଅନୁମିତ ହୁଏ ଯେ, ମାନବ ଶିଶୁ ତାର ବାପ, ମା', ଭାଇ, ଭଉଣୀ ଇତ୍ୟାଦି ପରିବାରର ବିଭିନ୍ନ ସଦସ୍ୟମାନଙ୍କୁ ଅନୁକରଣ କରି ନାନା ଅଭ୍ୟାସ ଗଠନ କରେ । ପୂର୍ବରୁ ବର୍ଣ୍ଣନା କରାଯାଇଛି ଯେ, ଶିଶୁର ଚାଲିବାର ଢଙ୍ଗ, କଥାବାର୍ତ୍ତା, ଆଗ୍ରହ, ବ୍ୟବହାର, ରୁଚି ଓ ବିଭିନ୍ନ ଅଭ୍ୟାସ ଅନୁକରଣ ମାଧ୍ୟମରେ ଶିକ୍ଷା କରାଯାଇ-ଥାଏ । ଅନୁକରଣ ମାଧ୍ୟମରେ କିପରି ଶିକ୍ଷଣ ସମ୍ଭବ ହେଉଛି ତାହା ଜାଣିବା ପାଇଁ

ମିଲର୍, ଡୋଲାର୍ଡ଼ (୧୯୪୪) ୪୫ ଜଣ ଶିଶୁଙ୍କ ଉପରେ ଏକ ଅଧ୍ୟୟନ କରିଥିଲେ । ଏହି ଅଧ୍ୟୟନ ଏବଂ ଅନ୍ୟ କେତେକ ଅଧ୍ୟୟନର ଫଳାଫଳରୁ ଜଣାଯାଏ ଯେ ଶିକ୍ଷଣ ଓ ଅଭି-ପ୍ରେରଣର ମୌଳିକ ନିୟମଗୁଡ଼ିକ କେତେକ ପ୍ରକ୍ରିୟା ଅନୁକରଣ ମାଧ୍ୟମରେ ଶିଶୁକୁ ଶିକ୍ଷା ଦିଆଯାଇପାରିବ । କିନ୍ତୁ ଅନୁକରଣ ମାଧ୍ୟମରେ ଶିକ୍ଷଣ ପାଇଁ ଶରୀର ଓ ମନର ଉପଯୁକ୍ତ ପରିପକ୍ୱତା ଆବଶ୍ୟକ । ପରିପକ୍ୱତା ନହେଲେ, କେବଳ ଅନୁକରଣ ଦ୍ୱାରା ଶିକ୍ଷଣ ସମ୍ଭବ ନୁହେଁ । ଯେପରିକି ଶରୀରର ଅଙ୍ଗ ଉପଯୁକ୍ତ ଭାବରେ ପରିପକ୍ୱ ନହେଲେ କେବଳ ଅନ୍ୟର ଚାଲିକୁ ପର୍ଯ୍ୟବେକ୍ଷଣ କରି କୌଣସି ଶିଶୁ ଚାଲିବାକୁ ସକ୍ଷମ ହୋଇପାରିବ ନାହିଁ । ସେହିପରି ଗଳନଳୀର ଉପଯୁକ୍ତ ବିକାଶ ହୋଇନଥିଲେ ଅନ୍ୟମାନଙ୍କର କଥାକୁ ପର୍ଯ୍ୟବେକ୍ଷଣ କରି ଅନୁକରଣ କରିବା ସମ୍ଭବ ନୁହେଁ ।

ଦ୍ୱିତୀୟତଃ, କେବଳ ପର୍ଯ୍ୟବେକ୍ଷଣ ଓ ଅନୁକରଣ କରି କେହି କେବେ ହେଲେ ଜଟିଳ ପ୍ରକ୍ରିୟା ତଥା କୌଶଳ ଶିକ୍ଷା କରିପାରିବନାହିଁ । କୌଣସି ଜଟିଳ ପ୍ରକ୍ରିୟାର ଅର୍ଜନକୁ ଅନୁକରଣ ମାଧ୍ୟମରେ ତ୍ୱରାନ୍ୱିତ କରିବାକୁ ହେଲେ ପ୍ରଥମେ ଏକ ନିର୍ଦ୍ଦିଷ୍ଟ କ୍ରିୟା ବା କୁଶଳତାକୁ ଶିକ୍ଷା କରିବାକୁ ପଡ଼ିବ । କେବଳ ଏହାପରେ ଅନୁକରଣ ଶିକ୍ଷଣକୁ ତ୍ୱରାନ୍ୱିତ କରାଯାଇପାରିବ ।

କଳ୍ପନା

ସାଧାରଣତଃ କଥାବାର୍ତ୍ତା କରିବାକୁ ଆରମ୍ଭ କଲାବେଳକୁ କଳ୍ପନା କରିବାର ଯୋଗ୍ୟତା ଶିଶୁ ଅଳ୍ପ ଅଳ୍ପ ହାସଲ କରିବାକୁ ଆରମ୍ଭ କରେ । କିନ୍ତୁ କୌଣସି କୌଣସି ଶିଶୁଙ୍କଠାରେ କଥା କହି ଶିଖିବା ତୁଳନାରେ କଳ୍ପନା କରିବାର ଯୋଗ୍ୟତା ଅଧିକ ଲକ୍ଷ୍ୟ କରାଯାଏ । ଶିଶୁର ଅନୁକରଣରେ ତାର ଅନେକ କିଛି କଳ୍ପନା ପ୍ରକଟିତ ହୋଇଥାଏ । ଏଣୁ ତାର ଅନୁକରଣକୁ ଲକ୍ଷ୍ୟକଲେ ତାର କାଳ୍ପନିକ ମନୋବୃତ୍ତି ସମ୍ପର୍କରେ ଧାରଣା କରି ହେବ । କଥା କହିବାକୁ ଶିଖିଲା ପରେ କଥାବାର୍ତ୍ତା, କ୍ରୀଡ଼ା ଓ ଅନ୍ୟାନ୍ୟ ବ୍ୟବ-ହାରରେ ବହୁତ କିଛି କଳ୍ପନାତ୍ମକ ଅନୁକ୍ରିୟା ଦେଖିବାକୁ ମିଳେ । ବିଭିନ୍ନ ଅଧ୍ୟୟନ ତଥା ପର୍ଯ୍ୟବେକ୍ଷଣମାନଙ୍କରୁ ଜଣାଯାଏ ଯେ ୨ୟରୁ ୪ ବର୍ଷ ବୟସ ମଧ୍ୟରେ ଶିଶୁର କଳ୍ପନା କରିବାର ଯୋଗ୍ୟତା ବହୁତ ଶୀଘ୍ର ବିକଶିତ ହୁଏ ।

ପ୍ରାରମ୍ଭିକ ଅବସ୍ଥାରେ ଶିଶୁମାନଙ୍କର କଳ୍ପନାତ୍ମକ କ୍ରିୟାକଳାପକୁ ମୁଖ୍ୟତଃ ୩ ଭାଗରେ ବିଭକ୍ତ କରାଯାଇପାରେ : (୧) ନିର୍ଜୀବ ବସ୍ତୁ ସହିତ ଜୀବିତ ବସ୍ତୁ ପରି କଥାବାର୍ତ୍ତା କରିବା ଯଥା, : ଖେଳନା କଣ୍ଢେଇ ସହିତ କଥାବାର୍ତ୍ତା କରିବା ; (୨) ବସ୍ତୁମାନଙ୍କୁ ଏପରି ଢଙ୍ଗରେ ବ୍ୟବହାର କରିବା, ଯେପରିକି ତାହା ଅନ୍ୟ ଏକ ଉଦ୍ଦୀପକ ଭାବରେ ଶିଶୁମନରେ କାର୍ଯ୍ୟ କରିବ । ଉଦାହରଣ ସ୍ୱରୂପ, ଖାଲି ପିଆଲାକୁ ଓଠକୁ ନେଇ ଦୁଧ ବା 'ଚା' ପିଇବାର ଅଭିନୟ କରିବା, କାଗଜକୁ ମୋଡ଼ି ସିଗାରେଟ୍ ଭଳି ଓଠରେ ଲଗାଇ

ଟାଣିବା, ନିଜକୁ ପୁଲିସ ମନେ କରି ସେହିପରି ଆଜ୍ଞା ଚଳାଇବା ବା କେତେକ ପିଲାଙ୍କୁ କଏଦୀ କରି ହାତକଡ଼ା ପିନ୍ଧାଇବା ଇତ୍ୟାଦି ।

କଳ୍ପନାତ୍ମକ ଅନୁକ୍ରିୟାର ଲକ୍ଷ୍ୟ ହେଲା ସାଧାରଣତଃ ବିଭିନ୍ନ ବସ୍ତୁ ବା ଉଦ୍ଦୀପକ-ମାନଙ୍କୁ ନିଜର କଳ୍ପନା ଅନୁସାରେ ଏକତ୍ରିତ କରି ଏକ ନୂତନ ଉଦ୍ଦୀପକ ସୃଷ୍ଟି କରି ମାନସିକ ସନ୍ତୋଷ ଲାଭ କରିବା । ଏଥି ନିମିତ୍ତ କଳ୍ପନାକୁ Mental Manipulation କୁହାଯାଇଥାଏ । ସାଢ଼େ ୩ ବର୍ଷ ପରେ ପିଲାମାନଙ୍କର କଳ୍ପନାଶକ୍ତି ଯଥେଷ୍ଟ ବିସ୍ତୃତ ହୁଏ । ଏଥିପୂର୍ବରୁ ଯେଉଁ ବସ୍ତୁମାନଙ୍କୁ ସେ ଦେଖିପାରେ ବା ସ୍ପର୍ଶ କରିପାରେ, କେବଳ ସେଥି-ମଧ୍ୟରେ ତାର କଳ୍ପନା ସୀମିତ ହୁଏ । କିନ୍ତୁ ଏହା ପରେ ଶିଶୁର ପରିବେଷ୍ଟନୀ ବହିର୍ଭୂତ ଘଟଣା ତଥା ଉଦ୍ଦୀପକମାନଙ୍କ ସମ୍ବନ୍ଧରେ ସେ କଳ୍ପନା କରିବାରେ ଯୋଗ୍ୟତା ବିକଶିତ କରେ । ଦୃଷ୍ଟାନ୍ତ ସ୍ୱରୂପ—ସୁନାର ପାହାଡ଼ ବା ମଣିଷ ମୁଣ୍ଡ ଥିବା ମତ୍ସ୍ୟକନ୍ୟା କଥା ସେ କଳ୍ପନା କରି ଆନନ୍ଦ ପାଇପାରେ, ଯାହାକି ତାର ପରିବେଷ୍ଟନୀ ମଧ୍ୟରେ ଅନ୍ତର୍ଭୁକ୍ତ ନଥାଏ । ଏପରି କଳ୍ପନାରେ ପିଲା ବାସ୍ତବିକତା ତଥା ବସ୍ତୁର ଆଡ଼କୁ ଧ୍ୟାନ ଦିଏ ନାହିଁ । ପିଲାର କଳ୍ପନା ଭାବାତ୍ମକ ତଥ୍ୟ ଦ୍ୱାରା ସମୃଦ୍ଧି ଲାଭ କରେ । ଯେଉଁ ପିଲାପାଖରେ ୧୦।୨୦ ପଇସା ଥାଏ, ସେ ନିଜର କଳ୍ପନା ବା ଦିବାସ୍ୱପ୍ନରେ ନିଜକୁ ଲକ୍ଷ୍ୟପତି ବା କୋଟିପତି ବୋଲି ଭାବିନିଏ । ବାସ୍ତବ ଜୀବନରେ କୌଣସି ପ୍ରକାରର ସତ୍ୟତା ନଥିଲେ ମଧ୍ୟ ନିଜର କଳ୍ପନା ରାଜ୍ୟରେ ସେ କେତେ କ'ଣ ଭାବନାରେ ଘୂରି ବୁଲେ । ବାସ୍ତବ ଜୀବନରେ ତାର ଯେଉଁ ସବୁ ଆଶା, ଆକାଂକ୍ଷାଗୁଡ଼ିକ ପୂରଣ ହୋଇନପାରେ, ଦିବାସ୍ୱପ୍ନ ଓ କଳ୍ପନା ମାଧ୍ୟମରେ ତାହା ପିଲା ପୂରଣ କରିଥାଏ । ଏହା ଦ୍ୱାରା ତାର ହତାଶା ଓ ବ୍ୟର୍ଥତା କିଛି ପରିମାଣରେ ହ୍ରାସପାଏ । ଗୋଟିଏ ପିଲା ଅତି ଦରିଦ୍ର ହୋଇଥାଇପାରେ, କିନ୍ତୁ କଳ୍ପନା ମାଧ୍ୟମରେ ନିଜକୁ ଏକ ବିରାଟ କଳକାରଖାନା ମାଲିକଙ୍କର ଏକମାତ୍ର ସନ୍ତାନ ବୋଲି ମନେ କରିପାରେ । ବାଳକ ବାଳିକାମାନେ କଳ୍ପନା ମାଧ୍ୟମରେ ମଧ୍ୟ ବିଭିନ୍ନ ଆବେଗିକ ଅନୁକ୍ରିୟା ଯଥା : ସ୍ନେହ ସହାନୁଭୂତି, କ୍ରୋଧ ବା ଈର୍ଷା ପ୍ରକାଶ କରିଥାନ୍ତି । ଉଦାହରଣ ସ୍ୱରୂପ, ଗୋଟିଏ ବାଳିକା ନିଜର ଖେଳନା ସହିତ 'ମା' ଶାଶୁ ବା ଝିଅପରି ବ୍ୟବହାର କରି ନିଜର ସ୍ନେହ, ଶ୍ରଦ୍ଧା ପ୍ରକଟିତ କରେ । ଏହି ମନୋବୃତ୍ତି ମାଧ୍ୟମରେ ସେ ନିଜର ଭାବାତ୍ମକ ସମସ୍ୟାମାନଙ୍କୁ ସଠିକ୍ ଭାବରେ ସମାଧାନ କରିବାକୁ ଚେଷ୍ଟା କରେ । କାରଣ ଏସବୁ ସମସ୍ୟା ଏପରି ହୋଇଥାଏ ଯେ ବାସ୍ତବ ଜୀବନରେ ଏହାକୁ ଠିକ୍ ଭାବରେ ସମାଧାନ କରିବାକୁ ବାଳିକା ପକ୍ଷରେ କଷ୍ଟକର ବ୍ୟାପାର ହୋଇପଡ଼େ । ଅନେକ ଶିଶୁ କଳ୍ପନା ମାଧ୍ୟମରେ ନିଜର କେତେକ ଭୟକୁ ଦୂର କରନ୍ତି । ନିଜର କ୍ରୋଧ, ନୈରାଶ୍ୟ ଓ ହତାଶାକୁ କଳ୍ପନା ମାଧ୍ୟମରେ ସନ୍ତୁଷ୍ଟ କରିବାକୁ ପ୍ରୟାସ କରନ୍ତି । ବ୍ୟକ୍ତିବିଶେଷଙ୍କ ପ୍ରତି ଜାତ ହେଉଥିବା କ୍ରୋଧ, ଖେଳନା କଣ୍ଢେଇ ବା କୌଣସି ନିର୍ଜୀବ ବସ୍ତୁ ଉପରେ ପ୍ରକାଶ କରି ମନକୁ କ୍ରୋଧମୁକ୍ତ କରନ୍ତି ।

## କଳ୍ପନାର ମୂଲ୍ୟ

ବାଳକ ବାଳିକାମାନଙ୍କର କଳ୍ପନାମୂଳକ ଅନୁକ୍ରିୟା ନିଜକୁ ଭବିଷ୍ୟତ ପାଇଁ ପ୍ରସ୍ତୁତ କରିବାରେ ଓ ଜୀବନ ସଂଗ୍ରାମରେ ସମ୍ମୁଖୀନ ହେବାପାଇଁ ସାହାଯ୍ୟ କରେ । କଳ୍ପନା ମାଧ୍ୟମରେ ନିଜର ବିଭିନ୍ନ ଲକ୍ଷ୍ୟ ହାସଲ କରିବାରେ ଯୋଗ୍ୟତା ଶିଶୁ ହାସଲ କରିନିଏ । ବେଳେ ବେଳେ ବାଳକର କଳ୍ପନାମାନଙ୍କଦ୍ୱାରା ତାର ଦୈନନ୍ଦିନ ଜୀବନର ଘଟଣାବଳୀର ବ୍ୟବହାର ଏପରି ହୋଇଥାଏ ଯେ, ତାକୁ ବୁଝିବା ଅନ୍ୟମାନଙ୍କ ପକ୍ଷରେ କଷ୍ଟକର ବ୍ୟାପାର ହୁଏ । ଅନେକ କ୍ଷେତ୍ରରେ ପିଲା କଳ୍ପନାରେ ନାନା ପ୍ରକାର ଚିନ୍ତା କରିଥାଏ । କିନ୍ତୁ ତାହା ଯେତେବେଳେ ବାସ୍ତବରେ ପୂରଣ ହୋଇନପାରେ, ପିଲାର ରାଗ ବଢ଼ିଯାଏ ଓ ତାହାର କ୍ରୋଧର ପ୍ରକୃତ କାରଣ ବୁଝିବା ପିତାମାତାଙ୍କ ପକ୍ଷରେ କଷ୍ଟକର ହୋଇ-ଉଠେ । ଉଦାହରଣ ସ୍ୱରୂପ, ବାପା ଅଫିସରୁ ଫେରିଲେ ପିଲା ତାଙ୍କ ସହିତ ଯାତ୍ରା ଦେଖିବାକୁ ଯାଇ ସେଠାରୁ ନାନା ପ୍ରକାର କଣ୍ଢେଇ ବା ଖେଳନା କିଣିବା, ବାରମଜା, ଚକୋଲେଟ୍ ଖାଇବା ଇତ୍ୟାଦି କଳ୍ପନା କରିଥାଏ । କିନ୍ତୁ ଅନ୍ୟ କ'ଣ ଜରୁରୀ କାମ ଥିବାରୁ ବାପା ପିଲାକୁ ଯାତ୍ରା ଦେଖାଇ ନେଇ ପାରିବେ ନାହିଁ ବୋଲି କୁହନ୍ତି । ପିଲାର କଳ୍ପନା ବିଫଳ ହୋଇଯାଏ । ସେ ଅତ୍ୟନ୍ତ ନିରାଶ ହୋଇପଡ଼େ ଓ କ୍ରୋଧ ପ୍ରକାଶ କରେ । କିନ୍ତୁ ଏହି ସାମାନ୍ୟ ବ୍ୟର୍ଥତା ଶିଶୁ ମନରେ ଏତେ ମାତ୍ରାରେ କ୍ରୋଧ ଜାତ କରାଇବା ଦେଖି ବୟସ୍କମାନେ ବିସ୍ମୟ ପ୍ରକାଶ କରନ୍ତି ।

୫।୬ ବର୍ଷ ବେଳକୁ ବାଳକ ବାଳିକାମାନଙ୍କର କଳ୍ପନାମୂଳକ କ୍ରିୟାକଳାପ ଅଧିକ ମାତ୍ରାରେ ଦିବାସ୍ୱପ୍ନ ରୂପରେ ଦେଖାଦିଏ । ଦିବାସ୍ୱପ୍ନ ସାଧାରଣତଃ ବିଭିନ୍ନ ଇଚ୍ଛା ଓ ଉଦ୍ଦେଶ୍ୟ ପୂରଣ କରିବା, ଦୁଃଖରୁ ମୁକ୍ତି ପାଇବା ଏବଂ ପ୍ରତିଶୋଧ ନେବା ଇତ୍ୟାଦିରେ ପର୍ଯ୍ୟବସିତ ହୋଇଥାଏ । ଏହି ଦିବାସ୍ୱପ୍ନରେ ବାଳକ ସାଧାରଣତଃ ନାୟକ ଭୂମିକାରେ ଥାଇ ନିଜର ବିଭିନ୍ନ ଇଚ୍ଛା ଓ ଆବଶ୍ୟକତା ପୂରଣ କରେ । ଦିବାସ୍ୱପ୍ନ ଜୀବନର ସମସ୍ତ ଅବସ୍ଥା ଓ ସ୍ଥିତିରେ ଦେଖିବାକୁ ମିଳେ । କିନ୍ତୁ ଦିବାସ୍ୱପ୍ନର ବିଷୟବସ୍ତୁ ସମୟର ଗତିରେ ପରିବର୍ତ୍ତିତ ହୋଇଥାଏ । ଶିଶୁ ତାର ବିଭିନ୍ନ ଆବଶ୍ୟକତା ଓ ଅପୂରଣୀୟ ଆଶା, ଆକାଂକ୍ଷା ପୂରଣ କରିବା ନିମନ୍ତେ କଳ୍ପନା କରେ ବା ଦିବାସ୍ୱପ୍ନର ଆଶ୍ରୟ ନିଏ । ଏହି ଦୃଷ୍ଟିରୁ ଦିବାସ୍ୱପ୍ନ ଓ କଳ୍ପନାର ଯଥେଷ୍ଟ ମୂଲ୍ୟ ଅଛି ।

ଶିଶୁ ତାର ଦିବାସ୍ୱପ୍ନରେ ଏକ କାଳ୍ପନିକ ସାଥୀର ସାହାଯ୍ୟ ନିଏ । ଏହା ଏକ ମାନବ ପଶୁ ବା ଏକ ବସ୍ତୁ ହୋଇପାରେ । କାଳ୍ପନିକ ସାଥୀ ବାଳକର ବିଭିନ୍ନ ଆବଶ୍ୟକତା ପୂରଣ କରିବାରେ ସାହାଯ୍ୟ କରେ । ଯାହା ଶିଶୁର ବାସ୍ତବିକ ଜୀବନରେ ମିଳେ ନାହିଁ, ତାହା ତାର ଏହି କାଳ୍ପନିକ ସାଥୀ ପୂରଣ କରେ ।

ଶିଶୁମାନଙ୍କର ଦିବାସ୍ୱପ୍ନର ଉଦ୍ଦେଶ୍ୟ ସମ୍ବନ୍ଧରେ ଜେରସିଲ୍ଡଙ୍କ ଅଧ୍ୟୟନରୁ କେତେକ ସୂଚନା ମିଳିଅଛି । ତାଙ୍କ ମତରେ ସ୍ୱଳ୍ପବୁଦ୍ଧିସମ୍ପନ୍ନ ବାଳକ ବାଳିକାଙ୍କର ଦିବାସ୍ୱପ୍ନ ବିଶେଷ ଭାବରେ ବାସ୍ତବମୁଖୀ ହୋଇଥାଏ । କିନ୍ତୁ ବାଳକ ଯେତେ ବୁଦ୍ଧିମାନ୍ ହେବ ତାର ସ୍ୱପ୍ନ ସେତେ ଅମୂର୍ତ୍ତ (Abstract) ହେବ ବୋଲି ତାଙ୍କର ଅଧ୍ୟୟନର ଫଳାଫଳରୁ ଅନୁମିତ ହୁଏ ।

ଶିଶୁ ତଥା ବାଳକ ବାଳିକାଙ୍କର ଦିବାସ୍ୱପ୍ନ କଳ୍ପନାରେ ବ୍ୟକ୍ତିଗତ ଭେଦ ଲକ୍ଷ୍ୟ କରିଯାଏ । ଏହା ତାଙ୍କ ବ୍ୟକ୍ତିଗତ ଅନୁଭବର ଭିନ୍ନତା ଯୋଗୁ ହୋଇଥାଏ ।

ପିଲାର କ୍ରୀଡ଼ାରେ ମଧ୍ୟ ତାର କଳ୍ପନା ଅନେକ ପରିମାଣରେ ପ୍ରକାଶ ପାଇଥାଏ । ପିଲାର କ୍ରୀଡ଼ାକୁ ଲକ୍ଷ୍ୟ କଲେ ତାର କଳ୍ପନା ଶକ୍ତି ସମ୍ବନ୍ଧରେ ଯଥେଷ୍ଟ ଧାରଣା କରିହୁଏ ।

ପିଲାମାନଙ୍କର ସ୍ୱପ୍ନକୁ ଉପଯୁକ୍ତ ଭାବରେ ବିଶ୍ଳେଷଣ କରିପାରିଲେ ସେମାନଙ୍କର କଳ୍ପନା ତଥା ବ୍ୟବହାରକୁ ବୁଝିବା ସହଜ ଓ ସୁଗମ ହୋଇଥାଏ । ଏତଦ୍‌ବ୍ୟତୀତ ଚିତ୍ରକଳା, ଅସମ୍ପୂର୍ଣ୍ଣ ଗଳ୍ପ ଓ ବାକ୍ୟକୁ ପୂର୍ଣ୍ଣ କରିବା ଓ ପ୍ରକ୍ଷେପୀ ପରୀକ୍ଷା (Projective test) ଇତ୍ୟାଦି ମାଧ୍ୟମରେ ବାଳକର କଳ୍ପନା ଶକ୍ତିକୁ ଅଧ୍ୟୟନ କରାଯାଇପାରେ ।

ନାନା ଦିଗରୁ ପର୍ଯ୍ୟାଲୋଚନା କଲେ ଜଣାଯିବ ଯେ, ଶିଶୁର ବ୍ୟକ୍ତିତ୍ୱ ଗଠନ କରିବା ଦିଗରେ ଦିବାସ୍ୱପ୍ନ ଓ କଳ୍ପନାର ଯଥେଷ୍ଟ ଅବଦାନ ରହିଅଛି । କିନ୍ତୁ କଳ୍ପନା ଓ ଦିବା-ସ୍ୱପ୍ନର ମାତ୍ରା ଯଦି ଅତ୍ୟଧିକ ହୋଇଥାଏ ଏବଂ ବାସ୍ତବତା ସହିତ କୌଣସି ସମ୍ବନ୍ଧ ନରଖି କେବଳ ଦିବାସ୍ୱପ୍ନ ଓ କଳ୍ପନା ମାଧ୍ୟମରେ ବିଭିନ୍ନ ଆବଶ୍ୟକତା ପୂରଣ କରିବା ତଥା ଆନନ୍ଦ ପାଇବାକୁ ଯଦି ପିଲା ଚେଷ୍ଟା କରେ, ତେବେ ଏହା ତାର ବ୍ୟକ୍ତିତ୍ୱର ସୁସ୍ଥ ବିକାଶ ପଥରେ ଅନ୍ତରାୟ ହୁଏ ।

———

## ଏକାଦଶ ଅଧ୍ୟାୟ

# ପ୍ରକ୍ଷୋଭ

ଶିଶୁମାନଙ୍କ ସହିତ ବୟସ୍କମାନେ ଚଳପ୍ରଚଳ କଲାବେଳେ ବା ପାରସ୍ପରିକ ପ୍ରତିକ୍ରିୟାରେ ଆବଦ୍ଧ ହେଲାବେଳେ ବିଭିନ୍ନ ଭାବାତ୍ମକ ସମସ୍ୟାର ସମ୍ମୁଖୀନ ହେବାକୁ ହୁଏ । ପ୍ରତି ମୁହୂର୍ତ୍ତରେ ଶିଶୁର ବ୍ୟବହାର ଓ କ୍ରିୟାକଳାପ ତାର ଆବେଗିକ ବିକାଶ ଦ୍ୱାରା ପ୍ରଭାବିତ, ପରିଚାଳିତ ତଥା ନିୟନ୍ତ୍ରିତ ହୁଏ । ତେଣୁ ଶିଶୁ ଜୀବନରେ ପ୍ରକ୍ଷୋଭର ଉପଯୁକ୍ତ ବିକାଶ ଯେପରି ପ୍ରୟୋଜନ, ଅଭିଭାବକମାନଙ୍କର ଶିଶୁର ପ୍ରକ୍ଷୋଭକୁ ଉପଯୁକ୍ତ ଭାବରେ ବୁଝିବା ସେପରି ଆବଶ୍ୟକ ଓ ଦରକାରୀ ମନେହୁଏ । ଗୋଟିଏ ପିଲା କ୍ରୋଧରେ ଅଜ୍ଞାନ ହୋଇ କାନ୍ଦି କାନ୍ଦି ତଳେ ଗଡ଼ିଯାଉଛି । ଯେତେ ବୁଝାଇଲେ ବୁଝୁନାହିଁ । ଆଉ କେହି ଏଇ ମୁହୂର୍ତ୍ତରେ ଖୁସି ଅଛି ତ ପର ମୁହୂର୍ତ୍ତରେ ଅନ୍ୟମାନଙ୍କର ଜାଣିଲାଭଳି ଯଥାର୍ଥ କୌଣସି କାରଣ ନ ଥାଇ କାନ୍ଦିବା ଆରମ୍ଭ କରିଦେଲାଣି । କେହି ଶିଶୁ ତାର ସହୋଦରର ଖେଳନା ନେଇ ଲୁଚାଇ ଦେଲାଣି । କେହି ଅନ୍ଧାର ହୋଇଯିବାରୁ ଭୟରେ ଚିତ୍କାର କରି ଉଠିଲାଣି । ଏହିପରି ଭାବରେ ପ୍ରତ୍ୟହ ଅଭିଭାବକମାନଙ୍କୁ କିଛି ନା କିଛି ଭାବାତ୍ମକ ସମସ୍ୟାର ସମ୍ମୁଖୀନ ହେବାକୁ ହୁଏ । ଶିଶୁର ଏହି ପ୍ରକାରର ଆବେଗାତ୍ମକ ଅନୁକ୍ରିୟା ଦେଖି ବୟସ୍କମାନେ ବ୍ୟତିବ୍ୟସ୍ତ ହୋଇ ନିଜର ପ୍ରକ୍ଷୋଭର ପ୍ରକୃତ ରୂପ ପ୍ରକାଶ କରିଦିଅନ୍ତି । ଅର୍ଥାତ୍ ନିଜେ କ୍ରୋଧ, ଭୟ ବା ଘୃଣା ପ୍ରଦର୍ଶନ କରନ୍ତି, ଯାହାକି ଶିଶୁର ଆବେଗିକ ବିକାଶକୁ ଅଧିକ କଳୁଷିତ କରିଦିଏ । ଯେଉଁ ପିତାମାତା ଓ ଶିକ୍ଷକଙ୍କର ପ୍ରକ୍ଷୋଭର ସୁସ୍ଥ ବିକାଶ ହୋଇ-ନଥାଏ, ସେମାନେ ଶିଶୁର ପ୍ରକ୍ଷୋଭକୁ ଉପଯୁକ୍ତ ମାର୍ଗରେ ବିକାଶ କରାଇବାକୁ ସକ୍ଷମ ହୁଅନ୍ତି ନାହିଁ । ବରଂ ସେମାନଙ୍କର କ୍ରୋଧ, ଭୟ, ଈର୍ଷା, ଘୃଣା ଓ ଅତି ସମ୍ବେଦନ-ଶୀଳତା ଶିଶୁର ପ୍ରକ୍ଷୋଭକୁ ପ୍ରଭାବିତ କରେ । ବିକାଶମୁଖୀ ଶିଶୁର ବିଭିନ୍ନ ସମ୍ବେଗାତ୍ମକ ବିକାଶ ଧୀରେ ଧୀରେ ହୁଏ । ବୟସ୍କମାନେ ଶିଶୁର ବିଭିନ୍ନ ସମ୍ବେଗକୁ ଠିକ୍ ଭାବେ ବୁଝିବାକୁ ଚେଷ୍ଟା କରିବା ସଙ୍ଗେ ସଙ୍ଗେ ଆବେଗିକ ବିକାଶରେ ସ୍ନେହ, ସହାନୁଭୂତି ଓ ଗ୍ରହଣୀୟ ମନୋଭାବର ଗୁରୁତ୍ୱ ଉପଲବ୍ଧି କରିବା ଆବଶ୍ୟକ । ରୋଗାକ୍ରାନ୍ତ ଦୁର୍ବଳ ଶିଶୁମାନେ ଅତ୍ୟଧିକ ଚିଡ଼ିଚିଡ଼ା ସ୍ୱଭାବ ଓ ଅସ୍ୱାଭାବିକ କ୍ରୋଧ ପ୍ରକାଶ କରିବାର ସମ୍ଭାବନା ଥାଏ । କାହିଁକି ଓ କେଉଁ ପରିସ୍ଥିତିରେ ଶିଶୁ ନିଷେଧାତ୍ମକ ସମ୍ବେଗଗୁଡ଼ିକ ପ୍ରକାଶ କରୁଛି, ତାହା ଧୈର୍ଯ୍ୟର ସହିତ ବିଶ୍ଳେଷଣ କରିବା ଆବଶ୍ୟକ । ଶ୍ରେଣୀରେ ପିଲା ମନରେ କାହିଁକି ଭୟ ବା ଘୃଣା ଜାତ ହେଉଛି ତାହାର ଯଥାର୍ଥତା ଖୋଜି ବାହାର କରିବା ପ୍ରୟୋଜନ ।

ଜନ୍ମ ସମୟରେ ନବଜାତ ଶିଶୁର ସମ୍ବେଗ ସାଧାରଣ ଉତ୍ତେଜନା ରୂପରେ ପ୍ରକାଶ ପାଏ । ଏହା ଅବିଭକ୍ତ ଓ ସାଧାରଣ ଅବସ୍ଥାରେ ଥାଏ । ସାଧାରଣ ଉତ୍ତେଜନା ବ୍ୟତୀତ ଭୟ,

କ୍ରୋଧ ଓ ଘୃଣା ଇତ୍ୟାଦି କୌଣସି ନିର୍ଦ୍ଦିଷ୍ଟ ଓ ସ୍ୱତନ୍ତ୍ର ପ୍ରକ୍ଷୋଭ ନବଜାତ ଶିଶୁଠାରେ ଲକ୍ଷ୍ୟ କରାଯାଏ ନାହିଁ । ଜନ୍ମ ସମୟରେ ପ୍ରକାଶ ପାଇଥିବା ଏହି ସାଧାରଣ ଉତ୍ତେଜନାରୁ ଭୟ, କ୍ରୋଧ, ଈର୍ଷା, ଘୃଣା, ସ୍ନେହ ଓ ଉଲ୍ଲାସ ପ୍ରଭୃତି ସ୍ୱତନ୍ତ୍ର ପ୍ରକ୍ଷୋଭମାନ ବିକଶିତ ହୁଏ । ବୟସ ବୃଦ୍ଧି ସହିତ ପ୍ରକ୍ଷୋଭ ଅଧିକ ବିଶିଷ୍ଟ ହୁଏ ଏବଂ ଯେଉଁ ପରିସ୍ଥିତି ଏହାକୁ ଜାଗ୍ରତ କରେ ତା ସହିତ ଅଧିକ ସମ୍ପୃକ୍ତ ହୋଇଥାଏ । ସ୍ନେହ, ଉଲ୍ଲାସ ଓ ଆବେଗ ବ୍ୟତୀତ ଅନ୍ୟ ସମସ୍ତ ପ୍ରକ୍ଷୋଭ ନିଷେଧାତ୍ମକ ଅଟନ୍ତି । ୧ ବର୍ଷ ବୟସ ବେଳକୁ ପ୍ରାୟ ସମସ୍ତ ପ୍ରକ୍ଷୋଭ ବିକଶିତ ହୋଇଥାଏ ।

### ପ୍ରକ୍ଷୋଭର ସଂଜ୍ଞା

ମନସ୍ତାତ୍ତ୍ୱିକ କାରଣ ଯୋଗୁ ସମସ୍ତ ଶରୀରରେ ତୀବ୍ର ଗୋଳମାଳ ଜାତ ହୋଇ ବ୍ୟବହାର, ସଚେତନ ଅନୁଭବ ଏବଂ ଉଦରସ୍ଥ କ୍ରିୟାକଳାପ ଲକ୍ଷ୍ୟ କରାଗଲେ ତାହାକୁ ପ୍ରକ୍ଷୋଭ କୁହାଯାଏ ।

### ପ୍ରକ୍ଷୋଭ ଓ ଅନୁଭବ

ପ୍ରକ୍ଷୋଭ ଅନୁଭବଠାରୁ ପୃଥକ୍ । ଅନୁଭବ ମୃଦୁ ଗୋଳମାଳ, ଯେଉଁଥିରେ ପ୍ରାୟ ଶାରୀରିକ ପ୍ରକ୍ରିୟା ଦୃଷ୍ଟିଗୋଚର ହୁଏ ନାହିଁ । କେବଳ ମନରେ ହର୍ଷ ବା ବିଷାଦ ଜାତ ହୁଏ ।

କୌଣସି ପ୍ରକ୍ଷୋଭାତ୍ମକ ଅନୁଭବ ସମୟରେ ହୃତ୍‌ପିଣ୍ଡର କମ୍ପନ, ନାଡ଼ୀର ଗତି, ରକ୍ତ ସଞ୍ଚାଳନର ଗତି, ରକ୍ତଚାପର ମାତ୍ରାରେ ଯଥେଷ୍ଟ ପରିବର୍ତ୍ତନ ଲକ୍ଷ୍ୟ କରାଯାଏ । ପ୍ରକ୍ଷୋଭର ସୃଷ୍ଟି ମନସ୍ତାତ୍ତ୍ୱିକ କାରଣଯୋଗୁ ହୋଇଥାଏ । ଅନୁଭବ କଲାବେଳେ ବ୍ୟକ୍ତି ଅନୁଭବ କରୁଥିବା ପ୍ରକ୍ଷୋଭ ସମ୍ବନ୍ଧରେ ସଚେତନ ଥାଏ ଏବଂ ତାର ଇଚ୍ଛାନୁସାରରେ ସେ ସମସ୍ତ ଅନୁକ୍ରିୟା ପ୍ରଦର୍ଶନ କରେ ।

### ପ୍ରକ୍ଷୋଭର ବିକାଶ

ବୟସର ବୃଦ୍ଧି ସହିତ ପ୍ରକ୍ଷୋଭାତ୍ମକ ଅନୁକ୍ରିୟା କମ୍ ବ୍ୟାପକ ଓ ଅଧିକ ବିଭିନ୍ନ ହୋଇଯାଏ । ଜନ୍ମ ସମୟରେ ଦେଖାଯାଉଥିବା ବ୍ୟାପକ ଉତ୍ତେଜନାରୁ ଭୟ, କ୍ରୋଧ, କଷ୍ଟ, ଆନନ୍ଦ, ଉଲ୍ଲାସ, ସ୍ନେହ ଓ ଈର୍ଷାର ବିକାଶ ହୁଏ । ପ୍ରକ୍ଷୋଭାତ୍ମକ ବିକାଶର ଏକ କ୍ରମ ରହିଛି, ଯାହା ସାଧାରଣତଃ ସମସ୍ତ ଶିଶୁଙ୍କ ପାଇଁ ସମାନ । ଏହି ଅନୁକ୍ରମରେ ବିଭିନ୍ନ ପ୍ରକ୍ଷୋଭାତ୍ମକ ପ୍ରତିକ୍ରିୟା ବିଶେଷ ବିଶେଷ କାଳରେ ଦେଖାଯାଏ ଏବଂ ବୟସ ବୃଦ୍ଧି ସହିତ ଅନୁକ୍ରିୟାର ପ ମଧ୍ୟ ବଦଳିଯାଏ ।

ବ୍ରିଜେସ୍‌ଙ୍କ ଦ୍ୱାରା ପ୍ରଦତ୍ତ ପ୍ରକ୍ଷୋଭର ବିକାଶ ନିମ୍ନରେ ପ୍ରଦତ୍ତ ହେଲା ।

ଉତ୍ତେଜନା — ଜନ୍ମ

ଦୁର୍ଦ୍ଦଶା ଉତ୍ତେଜନା ଆନନ୍ଦ — ୩ ମାସ

ଭୟ, ଅତି ବିରକ୍ତି, କ୍ରୋଧ, ଦୁର୍ଦ୍ଦଶା ଉତ୍ତେଜନା ଆନନ୍ଦ — ୬ ମାସ

ଭୟ, ଅତି ବିରକ୍ତି, କ୍ରୋଧ, ଦୁର୍ଦ୍ଦଶା ଉତ୍ତେଜନା ଆନନ୍ଦ, ଉଲ୍ଲାସ, ସ୍ନେହ, — ୧୨ ମାସ

ଭୟ, ଅତି ବିରକ୍ତି, କ୍ରୋଧ, ଈର୍ଷା, ଦୁର୍ଦ୍ଦଶା ଉତ୍ତେଜନା ଆନନ୍ଦ, ଉଲ୍ଲାସ, ବୟସ୍କ ସ୍ନେହ, ଶିଶୁ ସ୍ନେହ — ୧୮ ମାସ

ଭୟ, ଅତି ବିରକ୍ତି, କ୍ରୋଧ, ଈର୍ଷା, ଦୁର୍ଦ୍ଦଶା, ଉତ୍ତେଜନା, ଆନନ୍ଦ, ଉଲ୍ଲାସ, ବୟସ୍କ ସ୍ନେହ, ଶିଶୁ ସ୍ନେହ — ୨୪ ମାସ

ଜନ୍ମର କିଛି ସମୟ ପରେ ନବଜାତ ଶିଶୁ କ୍ରନ୍ଦନ କରିବା ଓ ଚିତ୍କାର କରିବା ଲକ୍ଷ୍ୟ କରାଯାଏ । ୪।୮ ମାସ ବୟସ ପର୍ଯ୍ୟନ୍ତ ନିଜ ମନର ଅସୁଖକର ଭାବକୁ କ୍ରନ୍ଦନ କରି ଅଥବା ଜୋର ଶବ୍ଦ କରି ଶିଶୁ ପ୍ରକାଶ କରେ । ୪।୮ ମାସ ବୟସ ପର୍ଯ୍ୟନ୍ତ କ୍ରନ୍ଦନ କରିବା ସହିତ ଡାକିବା ମଧ୍ୟ ଦେଖାଯାଏ । ଶିଶୁ ଅବସ୍ଥାରେ ଯେଉଁ ସବୁ ପ୍ରକ୍ଷୋଭ ଶିଶୁକୁ ଜାଗ୍ରତ କରେ, ତା ମଧ୍ୟରେ ଭୟ ଓ କ୍ରୋଧ ଅନୁପାତରେ ଅଧିକ ଅଟେ । ଏମାନଙ୍କର ସ୍ଥାୟିତ୍ୱ କମ୍ । କିନ୍ତୁ ତୀବ୍ରତା ଅଧିକ । ଏସବୁ ବାରମ୍ବାର ଦେଖାଯାଏ କିନ୍ତୁ କମ୍ ସମୟ ସ୍ଥାୟୀ ଅଟେ । ମୁଖ୍ୟତଃ ବୟସର ବୃଦ୍ଧି ସହିତ ଭାଷାଜନିତ ଅନୁକ୍ରିୟାର ଅଧିକ ବିକାଶ ଘଟେ ଏବଂ ପ୍ରେରକ କ୍ରିୟାକଳାପ ହ୍ରାସ ପାଏ । ବିଶେଷ କରି କ୍ରୋଧ ଏବଂ ଭୟ ଉଦ୍ରେକ କରାଉଥିବା ଉଦ୍ଦୀପକ କ୍ଷେତ୍ରରେ ଏହା ବିଶେଷ ଦେଖାଯାଏ । ପିଲାମାନଙ୍କର ପ୍ରକ୍ଷୋଭମୂଳକ କ୍ରିୟା-କଳାପ ଯେ କ୍ରମଶଃ ଅଧିକ ନିର୍ଦ୍ଦେଶିତ ହୋଇଯାଏ, ତାହା ନିମ୍ନଲିଖିତ ଅଧ୍ୟୟନ କରି ଇନ୍‌ସେଲ୍‌ବର୍ଗ (୧୯୫୮) ଜାଣିବାକୁ ପାଇଥିଲେ । କ୍ଷୁଦ୍ର ଶିଶୁ କ୍ରୋଧାନ୍ୱିତ ହେଲେ ମୁଖ୍ୟତଃ କ୍ରନ୍ଦନ କରିଥାନ୍ତି । ଟିକିଏ ବଡ଼ ହେଲେ ମୁଣ୍ଡବାଳ ଟାଣି, ଗୋଇଠାମାରି, ଭୂଇଁରେ ଗଡ଼ି ଅଥବା ଜିନିଷପତ୍ର ପିଙ୍ଗା ଫୋପଡ଼ା କରି କ୍ରୋଧ ପ୍ରକାଶ କରିଥାନ୍ତି । ଅପେକ୍ଷାକୃତ ବଡ଼ ଶିଶୁ କ୍ରୋଧ ଓ ହିଂସ୍ର ସ୍ୱଭାବ, ପାଟିତୁଣ୍ଡ, ବ୍ୟଙ୍ଗ ବିଦ୍ରୂପ ଓ ଭାଷା ମାଧ୍ୟମରେ ପ୍ରକାଶ କରେ ।

ସାଧାରଣ ଉତ୍ତେଜନା ଆନୁବଂଶିକ ହେଲେ ମଧ୍ୟ ବିକାଶ ଶିକ୍ଷଣ ଓ ପରିପକ୍ୱତାର ମିଳିତ ପ୍ରକ୍ରିୟା ଉପରେ ନିର୍ଭର କରେ । ଏ ଉଭୟଙ୍କର ଭୂମିକା ଆବେଗିକ ବିକାଶରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପରିପକ୍ୱ ସ୍ନାୟବିକ ଓ ଗ୍ରନ୍ଥିଗତ ବିକାଶ ଉପରେ ବ୍ୟକ୍ତିର ଆବେଗିକ ବିକାଶ ନିର୍ଭର କରୁଥିବାର ଜଣାଯାଇଛି । ପଶୁ ଓ ମାନବ ଶିଶୁର ସମ୍ମୁଖ ଖଣ୍ଡକୁ

ସ୍ଥାନଚ୍ୟୁତ ପ୍ରକ୍ଷୋଭର ମାତ୍ରା ହ୍ରାସ ପାଏ । ଏଥିରୁ ଅନୁମିତ ହୁଏ ଯେ, ମସ୍ତିଷ୍କ ଖଣ୍ଡର ବିକାଶ ଉପରେ ମଧ୍ୟ ପ୍ରକ୍ଷୋଭ ନିର୍ଭର କରେ ।

କଲନା ଓ ବୃଦ୍ଧାମଣାର ବିକାଶ ସହିତ ଆବେଗିକ ବିକାଶର ଉନ୍ନତି ଘଟେ । ଅର୍ଥାତ୍ କେଉଁ ଉଦ୍ଦୀପକ ଭୟ, କ୍ରୋଧ ବା ଈର୍ଷାର କାରଣ ତାହା ଧୀଶକ୍ତିର ବିକାଶ ଓ ଅଭିଜ୍ଞତା ସହିତ ଶିଶୁ ବୁଝିବାକୁ ସମର୍ଥ ହୁଏ । ଗୁଡ୍ ଏ ନଫ୍ ଜନ୍ମରୁ ଏକ ମୂକ ବଧିର ଶିଶୁକୁ ପର୍ଯ୍ୟବେକ୍ଷଣ କରି ଆବେଗିକ ବିକାଶର ପରିପକ୍ୱତାର ମହତ୍ତ୍ୱ ଉପଲବ୍ଧି କରିଥିଲେ । ସେମାନେ ଲକ୍ଷ୍ୟ କରିଥିଲେ ଯେ ଚିନ୍ତନ ମାଧ୍ୟମରେ ଶିଶୁ ନିଜର ଭୟ ଓ ଅନୁଭୂତି ପ୍ରଦର୍ଶନ କରିବାକୁ ସକ୍ଷମ ହୋଇଥିଲା । ଜନ୍ମ ପରେ ପରେ ସ୍ୱାଭାବିକ ତଥା ସାମାଜିକ ପରିବେଷ୍ଟନୀରୁ ଶିଶୁକୁ ପୃଥକ୍ କରି Isolation technique ମାଧ୍ୟମରେ ଶିଶୁର ଆବେଗିକ ବିକାଶ ଉପରେ ପରିପକ୍ୱତାର ଭୂମିକା ଅଧ୍ୟୟନ କରାଯାଇଛି । ଅନ୍ତଃସ୍ରାବୀ ଗ୍ରନ୍ଥିର ପରିପକ୍ୱତା ସହିତ ଭୟର ସମ୍ବନ୍ଧ ରହିଥିବାର ଜଣାଯାଇଛି ।

## ଶିକ୍ଷଣର ଭୂମିକା

ସାଧାରଣ ଉତ୍ତେଜନା ଜନ୍ମଜାତ ହୋଇଥିଲେ ହେଁ ଏବଂ ପ୍ରକ୍ଷୋଭର ବିକାଶ କେତେକ ଅନୁବଂଶିକ କାରଣଯୋଗୁ ହୋଇଥିଲେ ମଧ୍ୟ, କେଉଁ ଉଦ୍ଦୀପନ ପ୍ରତି କପରି ଭାବରେ ଶିଶୁ ଅନୁଭୂତି ପ୍ରଦର୍ଶନ କରିବ, ତାହା ଶିକ୍ଷଣ ଉପରେ ନିର୍ଭର କରେ । ଯେଉଁ ଅନୁଭୂତିଗୁଡ଼ିକ ସାମାଜିକ ଅନୁମୋଦନ ଲାଭ କରେ ଶିଶୁ ସେହି ପ୍ରକାରର ଅନୁଭୂତି ପ୍ରଦର୍ଶନ କରିବାକୁ ଶିକ୍ଷା କରେ । ବିଶେଷ କରି ବାଲ୍ୟକାଳରେ ଅଭ୍ୟାନୁକୂଳନ, ପ୍ରଶିକ୍ଷଣ, ଅନୁକରଣ ଓ ସହିତ ଆବେଗିକ ବିକାଶର ସହାୟତା କରନ୍ତି । ପୂର୍ବରୁ କୁକୁର, ବିଲେଇ, ସାପ ବା ନିଆଁ ପ୍ରତି ଭୟ ପ୍ରଦର୍ଶନ କରୁନଥିବା ଶିଶୁ କେତେକ ଅଭିଜ୍ଞତା ବା ଶିକ୍ଷଣ ପରେ ଭୟ ପ୍ରଦର୍ଶନ କରିବାକୁ ଶିକ୍ଷା କରେ । ଶିଶୁ ପୂର୍ବରୁ ଜଳନ୍ତା ନିଆଁ ପ୍ରତି ଭୟ ପ୍ରଦର୍ଶନ କରୁନଥିଲା । କିନ୍ତୁ ନିଆଁର ରଙ୍ଗରେ ମୁଗ୍ଧ ହୋଇ ହାତ ପୁରାଇବାଦ୍ୱାରା ହାତ ପୋଡ଼ିଯିବାରୁ ସେ ଯେଉଁ କଷ୍ଟ ପାଇଲା ସେହି ଅନୁଭବ ନିଆଁ ପ୍ରତି ତା ମନରେ ଭୟ ଜାତ କରାଇଲା ।

ପ୍ରତିମନ ପଦ୍ଧତି ଓ ସଂଯୁକ୍ତ ଶିକ୍ଷଣ ମାଧ୍ୟମରେ କପରି ଭୟଜାତ କରାଯାଇପାରିବ, ତାହା ଓ୍ୱାଟ୍ସନ୍ ଓ ରେନରଙ୍କର ଆଲବର୍ଟ ଉପରେ ହୋଇଥିବା ସୁବିଖ୍ୟାତ ପରୀକ୍ଷଣରୁ ସୂଚିତ ହୁଏ । ୯ ମାସ ବୟସରେ ଆଲବର୍ଟକୁ କୁକୁର, ମାଙ୍କଡ଼, ଧଳାଠେକୁଆ, ପଶମ ଇତ୍ୟାଦି ଦେଖାଇ ଦିଆଗଲା । କିନ୍ତୁ ଏସବୁ ପ୍ରତି ସେ ଭୟ ପ୍ରଦର୍ଶନ କରିନଥିଲା । କିନ୍ତୁ ପରେ ପ୍ରଶିକ୍ଷଣ ପ୍ରଣାଳୀ ମାଧ୍ୟମରେ ଶ୍ୱେତ ଠେକୁଆ ପ୍ରତି ସେ କପରି ଭୟ ପ୍ରଦର୍ଶନ କଲା, ତାହା ନିମ୍ନରେ ପ୍ରଦତ୍ତ ହେଲା । ଆଲବର୍ଟ ସମ୍ମୁଖରେ ଏକ ଶ୍ୱେତ ଠେକୁଆ ଉପସ୍ଥାପିତ କରାଗଲା ଏବଂ ତାହା ସଙ୍ଗେ ସଙ୍ଗେ ଏକ ଶବ୍ଦ ସୃଷ୍ଟି କରାଗଲା । ଏହି ଶବ୍ଦ ଶୁଣି ଆଲବର୍ଟ ଚମକିପଡ଼ିଲା ଏବଂ ସାଧାରଣ ଉତ୍ତେଜନା ପ୍ରକାଶ କଲା । ଏହିପରି ଭାବରେ କିଛି ଥର ଆଲବର୍ଟ

ସମ୍ମୁଖରେ ଠେକୁଆକୁ ଉପସ୍ଥାପିତ କରାଗଲା ଏବଂ ସେ ଠେକୁଆକୁ ଧରିବାକୁ ଉଦ୍ୟତ ହେଲାବେଳକୁ ତାର ପଶ୍ଚାତ୍ ଭାଗରେ ଉଚ୍ଚ ଶବ୍ଦ କରାଗଲା । ପ୍ରତ୍ୟେକ ଥର ଶବ୍ଦ ହେଲା-କ୍ଷଣି ଆଲବର୍ଟ ଭୟ ପ୍ରଦର୍ଶନ କଲା । ପଞ୍ଚମ ଉପସ୍ଥାପନା ପରେ କୌଣସି ଶବ୍ଦ ନ କରି ଯେତେବେଳେ କେବଳ ଠେକୁଆକୁ ଉପସ୍ଥାପିତ କରାଗଲା, ଆଲବର୍ଟ ଠେକୁଆକୁ ଦେଖି ଧରିବାକୁ ଉଦ୍ୟତ ହେବାତ ଦୂରର କଥା, ଭୟରେ ଦଉଡ଼ି ପଳାଇ କାନ୍ଦିବାକୁ ଆରମ୍ଭ କଲା । ଠେକୁଆ ପ୍ରତି ଆଲବର୍ଟର ଭୟ ପୁନଶ୍ଚ ଠେକୁଆ ସହିତ ସାମଞ୍ଜସ୍ୟ ଥିବା ଅନେକ ଉଦ୍ଦୀପକମାନଙ୍କ ପ୍ରତି ବିସ୍ତାରିତ ହେଲା । ଉଦାହରଣ ସ୍ୱରୂପ ଧଳା ମୂଷା, କୁକୁର, ତୁଳା, ଉଲ୍ ର ଫର୍ କୋଟ୍ ଇତ୍ୟାଦି ପ୍ରତି ପୂର୍ବରୁ ସେ ଭୟ ପ୍ରଦର୍ଶନ କରୁନଥିଲେ ମଧ୍ୟ ବର୍ତ୍ତମାନ ଭୟ ଦେଖାଇବାକୁ ଆରମ୍ଭ କଲା । ଏହିପରି ଭାବରେ ଅଭ୍ୟାନୁକୂଳନ ବା ପ୍ରତ୍ୟକ୍ଷ ପ୍ରତିମାନ ପଦ୍ଧତି ଓ ସହିତ ଶିକ୍ଷଣ ମାଧ୍ୟମରେ ଶିଶୁମାନଙ୍କୁ ନାନାପ୍ରକାର ଭୟ ପ୍ରଦର୍ଶନ କରିବାକୁ ଶିକ୍ଷା ଦିଆଯାଇପାରେ । ପିଲାର ଆତ୍ମବିଶ୍ୱାସ ଓ ଆତ୍ମପ୍ରତ୍ୟୟକୁ ବ୍ୟାହତ କରୁଥିବା ଗୃହ ଓ ବିଦ୍ୟାଳୟର ବିଭିନ୍ନ ଅଭିଜ୍ଞତା ଶିଶୁର ଭୟ ବୃଦ୍ଧି କରିବାରେ ସାହାଯ୍ୟ କରେ । ଶିଶୁ-ପିତାମାତା ସମ୍ପର୍କ ସ୍ନେହ, ଅନୁରାଗ ଓ ଶ୍ରଦ୍ଧା ଉପରେ ପର୍ଯ୍ୟବସିତ ହୋଇଥିଲେ, ଶିଶୁ ଅନ୍ୟମାନଙ୍କ ପ୍ରତି ସ୍ନେହ, ଭକ୍ତି ଓ ଶ୍ରଦ୍ଧା ପ୍ରଦର୍ଶନ କରିବାକୁ ସକ୍ଷମ ହୁଏ । ଶିଶୁମାନଙ୍କର ପ୍ରକ୍ଷୋଭଜନିତ ଅନୁକ୍ରିୟା ଶିକ୍ଷଣ ଓ ପରିପକ୍ୱତାଦ୍ୱାରା କେତେକ ପରିମାଣରେ ପ୍ରଭାବିତ ହୁଏ, ସଠିକ୍ ଭାବରେ କୁହାଯାଇନପାରିଲେ ମଧ୍ୟ ଉଭୟଙ୍କର ଯେ ଗୁରୁତ୍ୱ ରହିଛି ତାହା ସ୍ୱୀକାର୍ଯ୍ୟ । ପରିପକ୍ୱତା ବ୍ୟତୀତ ସାମାଜିକ ପରିବେଷ୍ଟନୀ ଯେ ପ୍ରକ୍ଷୋଭାତ୍ମକ ଅନୁକ୍ରିୟାକୁ ଯଥେଷ୍ଟ ପ୍ରଭାବିତ କରେ, ତାହା ଅସ୍ୱୀକାର କରାଯାଇନପାରେ ।

## ପ୍ରକ୍ଷୋଭାତ୍ମକ ପ୍ରତିକ୍ରିୟାରେ ବ୍ୟକ୍ତିଗତ ଭିନ୍ନତା

ପ୍ରକ୍ଷୋଭାତ୍ମକ ପ୍ରତିକ୍ରିୟାରେ ଶିଶୁମାନଙ୍କଠାରେ ବ୍ୟକ୍ତିଗତ ଭିନ୍ନତା ଲକ୍ଷ୍ୟ କରାଯାଏ । ଏହି ଭିନ୍ନତାର ପରିସର ଯଥେଷ୍ଟ ବିସ୍ତୃତ । ଏକପ୍ରକାରର ପ୍ରକ୍ଷୋଭାତ୍ମକ ଉଦ୍ଦୀପକକୁ ବିଭିନ୍ନ ଶିଶୁ ଭିନ୍ନ ଭିନ୍ନ ପ୍ରକାରର ପ୍ରତିକ୍ରିୟା ପ୍ରଦର୍ଶନ କରନ୍ତି । ସେମାନଙ୍କର ଅତୀତର ଅନୁଭବ ତଥା ଅଭିଜ୍ଞତା ଏବଂ ନିଜ ସମ୍ବନ୍ଧରେ ମନୋଭାବ ସେମାନଙ୍କର ପ୍ରକ୍ଷୋଭର ବିକାଶରେ ଗୁରୁତ୍ୱପୂର୍ଣ୍ଣ ପ୍ରଭାବ ପକାଏ ଏବଂ ସେମାନେ ସମାନ ଆବେଗିକ ଉଦ୍ଦୀପକକୁ ଭିନ୍ନ ଭିନ୍ନ ପ୍ରତିକ୍ରିୟା ପ୍ରଦର୍ଶନ କରନ୍ତି । ଶିକ୍ଷଣର ପାର୍ଥକ୍ୟ ଯୋଗୁ ଏହା ସମ୍ଭବ ହୁଏ ।

### ବାଲ୍ୟାବସ୍ଥାରେ ପ୍ରକ୍ଷୋଭର ପ୍ରକାର

ଭୟ, କ୍ରୋଧ, ଈର୍ଷା, ହର୍ଷ, ବିଷାଦ, ଜିଜ୍ଞାସା ଇତ୍ୟାଦି ବିଭିନ୍ନ ପ୍ରକାରର ପ୍ରକ୍ଷୋଭ ପ୍ରାରମ୍ଭିକ ବାଲ୍ୟାବସ୍ଥାରେ ବିକଶିତ ହୋଇଥାଏ ।

### କ୍ରୋଧ

ବାଲ୍ୟାବସ୍ଥାରେ କ୍ରୋଧ ସର୍ବାଧିକ ସାଧାରଣ ପ୍ରକ୍ଷୋଭ ଅଟେ । କାରଣ ଶିଶୁର ପରିବେଶରେ କ୍ରୋଧ ଜାତ କରାଉଥିବା ଅନେକ ଉଦ୍ଦୀପକ ଥାଏ । ଦ୍ୱିତୀୟତଃ ବୟସ୍କ-

ମାନଙ୍କର ଧ୍ୟାନ ଆକର୍ଷଣ କରାଇବାକୁ ବା ନିଜର ଇଚ୍ଛା ପୂରଣ କରିବା ପାଇଁ କ୍ରୋଧ ଯେ ସର୍ବଶ୍ରେଷ୍ଠ କୌଶଳ ତାହା ପିଲା କ୍ରମେ କ୍ରମେ ଜାଣିପାରେ । ସାଧାରଣ ଓ ସହଜ ଭାବରେ ପିଲାର ଯେଉଁ ଦାବୀ ବା ଅଳି ପୂରଣ କରାନଯାଏ, କ୍ରୋଧ ପ୍ରକାଶ ଦ୍ୱାରା ସାଧାରଣତଃ ସେସବୁ ଦାବୀ ପୂରଣ ହୋଇଯିବାରୁ ପିଲା କ୍ରୋଧକୁ ଅସ୍ତ୍ରରୂପେ ବ୍ୟବହାର କରିବାକୁ ଉତ୍ସାହିତ ହୁଏ । ବୟସର ବୃଦ୍ଧି ସହିତ କ୍ରୋଧ ଉଦ୍ଦୀପକଗୁଡ଼ିକର ସଂଖ୍ୟା ବୃଦ୍ଧି ପାଇବା ଫଳରେ ପିଲାର କ୍ରୋଧର ପରିମାଣ ଓ ତୀବ୍ରତା ବୃଦ୍ଧିପାଏ । କିନ୍ତୁ ୩/୪ ବର୍ଷ ବୟସ ବେଳକୁ କ୍ରୋଧର ମାତ୍ରା, ବିଶେଷତଃ କ୍ରୋଧର ବାହ୍ୟ ଲକ୍ଷଣଗୁଡ଼ିକ ପୂର୍ବାପେକ୍ଷା କମ୍ ପ୍ରକାଶ ପାଏ ।

## କ୍ରୋଧର କାରଣ

ପ୍ରାରମ୍ଭିକ ବାଲ୍ୟାବସ୍ଥାରେ ପିଲା ଯାହା କରିବାକୁ ଚାହେଁ ସେଥିରେ ବାଧା ଦେଲେ ଅର୍ଥାତ୍ ପିଲା ଖେଳିବାକୁ ଚାହିଁଲା ବେଳେ ତାକୁ ପଢ଼ିବାକୁ ବା ଖାଇବାକୁ ବାଧ୍ୟ କଲେ, ଖାଇବାକୁ ମାଗିଲାବେଳେ ଖାଦ୍ୟ ନ ଦେଲେ, ତାର ଇଚ୍ଛା ପୂରଣରେ ବାଧା ଦେଲେ ପିଲା ମନରେ କ୍ରୋଧ ଜାତ ହୁଏ । ପିଲା ପିତାମାତାଙ୍କର ଧ୍ୟାନ ଆକର୍ଷଣ କରିବାକୁ କାନ୍ଦୁଥିଲାବେଳେ ତାକୁ କୋଳକୁ ନନେଲେ, ସେ ଯାହା କରିବାକୁ ଚାହୁଁଛି ତାକୁ କରିବାରେ ସାହାଯ୍ୟ ନ କଲେ, ପିଲା ମନରେ କ୍ରୋଧ ଜାତ ହୁଏ । ପିଲା ନେବାକୁ ଚାହୁଁଥିବା ଜିନିଷକୁ ଉଚ୍ଚ ସ୍ଥାନରେ ରଖିଦେଲେ—(ଯେପରିକି ତାହାକୁ ସେ ଆଣିପାରିବ ନାହିଁ) ପିଲା ମନରେ କ୍ରୋଧ ଜାତ ହୋଇଥାଏ । ଅନୁରୂପ ବାଲ୍ୟାବସ୍ଥାରେ କ୍ରୋଧ ଜାତ କରାଇବାର କେତେକ ସାଧାରଣ ପରିସ୍ଥିତି ହେଲା, ପିଲାର ପ୍ରିୟ ଜିନିଷକୁ ଛଡ଼ାଇନେବା, ତାର ମୁହଁ ହାତ ଧୋଇ ଗାଧୋଇଦେବା, ଘରେ ଏକୁଟିଆ ଛାଡ଼ିଯିବା, ପିଲାର କଥା-ବାର୍ତ୍ତାକୁ ନ ବୁଝିବା ଇତ୍ୟାଦି । ଶିଶୁର ସାମାଜିକୀକରଣ ପଦ୍ଧତିରେ ଯେଉଁ ପ୍ରକାରର ବାଳପ୍ରଶିକ୍ଷଣ ବିଧି ପ୍ରୟୋଗ କରାଯାଏ, ତାହାର ପ୍ରଭାବ ଶିଶୁର କ୍ରୋଧ ଉପରେ ପଡ଼ିଥାଏ । ଉଦାହରଣ ସ୍ୱରୂପ ପିଲମାନେ ପାତ୍ରରେ ହାତପୂରାଇ ଖାଇବାକୁ ସୁବିଧା ମନେକରନ୍ତି, କିନ୍ତୁ ସାମାଜିକ ଗ୍ରହଣୀୟ ମାନ ଦୃଷ୍ଟିରେ ଖାଇବାକୁ ଶିକ୍ଷାଦେଲେ ପ୍ରାରମ୍ଭରେ ତାଙ୍କ ମନରେ କ୍ରୋଧ ଜାତ ହୁଏ ।

## ହତାଶା

ଏହା କ୍ରୋଧ ଉଦ୍ରେକ କରାଇବାର ଏକ ପ୍ରଧାନ କାରଣ । ପରିବେଷ୍ଟନୀ ସହିତ ନିଜକୁ ଉପଯୋଜନ କରିବା ଅବସ୍ଥାରେ ପିଲା ବିଭିନ୍ନ ସମସ୍ୟାର ସମ୍ମୁଖୀନ ହୁଏ । ନିଜର ଶାରୀରିକ ଓ ମାନସିକ ଅକ୍ଷମତା ଯୋଗୁ ବା ଅନ୍ୟ କୌଣସି ବାଧାବିଘ୍ନ ହେତୁ ସେ ଯେତେବେଳେ କେତେକ ଆବଶ୍ୟକତା ପୂରଣ କରିପାରେ ନାହିଁ, ତାର ମନରେ ହତାଶା ଜାତ ହୁଏ । ଏହି ହତାଶା କ୍ରୋଧର ପ୍ରଧାନ କାରଣ ଅଟେ । ପିଲାଟି ଗୋଟିଏ ପେଣ୍ଡୁ ପାଇଁ ଅଳି କଲା । ମାତ୍ର ପିତାମାତା ସମ୍ବଳ ଅଭାବରୁ ପିଲାକୁ ତାହା ଦେଇପାରିଲେ ନାହିଁ ।

ପରିଣାମରେ ତାର ମନରେ କ୍ରୋଧର ଉଦ୍ରେକ ହେଲା । କ୍ରୋଧର ମାତ୍ରା ଆବଶ୍ୟକତାର ପରିମାଣ ବା ତୀବ୍ରତା ଓ ହତାଶା ସହ୍ୟକରିବାର ଶକ୍ତି ଉପରେ ନିର୍ଭର କରେ ।

ଦୁର୍ବଳ ସ୍ୱାସ୍ଥ୍ୟ, ଉଦ୍‌ବିଗ୍ନତା ମଧ୍ୟ କ୍ରୋଧ ଉଦ୍ରେକ କରାଇବାରେ ଯଥେଷ୍ଟ ସାହାଯ୍ୟ କରେ । ଏତଦ୍‌ବ୍ୟତୀତ ଗୃହ ଓ ବିଦ୍ୟାଳୟର ପରିବେଷ୍ଟନୀ, ଶିଶୁ ପ୍ରଶିକ୍ଷଣ ପଦ୍ଧତି, ସାମାଜିକ, ଅର୍ଥନୈତିକ ଅବସ୍ଥା ଓ ଶୃଙ୍ଖଳାର ପ୍ରକାର ଉପରେ କ୍ରୋଧ ନିର୍ଭର କରେ । କେତେକ ଅଧ୍ୟୟନର ଫଳାଫଳରୁ ଜଣାଯାଏ ଯେ, ପ୍ରତ୍ୟେକ ଅବସ୍ଥାରେ ସାଧାରଣତଃ ବାଳକମାନେ ବାଳିକାମାନଙ୍କ ଅପେକ୍ଷା ବେଶୀ କ୍ରୋଧ ପ୍ରକାଶ କରିଥାଆନ୍ତି ।

ସାଧାରଣତଃ ନିତ୍ୟକର୍ମ ସମାପନ କଲାବେଳେ, ସାମୟିକ ଶାରୀରିକ ଅସୁସ୍ଥତା ହେତୁ କ୍ରୋଧ ଜାତହୁଏ । ପିଲାର ସଞ୍ଚିତ ଦ୍ରବ୍ୟ ନେଇ ଅନ୍ୟପିଲା ସହିତ ମଧ୍ୟ ତାର କଳହ ଜାତ ହୁଏ । ଅନ୍ୟ ପିଲାଙ୍କ ସହିତ ତୁଳନା କରି, ସମାଲୋଚନା କଲେ, ପିଲାକୁ ଶାରୀରିକ ଆଘାତ ଦେଲେ ତାର ବିରକ୍ତି ଅଳ୍ପେ ଅଳ୍ପେ କ୍ରୋଧରେ ପରିଣତ ହୁଏ । ଅପେକ୍ଷାକୃତ ବଡ଼ପିଲାଙ୍କ କ୍ଷେତ୍ରରେ ସେମାନଙ୍କ ଅହଂକୁ କୁଠାରାଘାତ କଲେ, ସବୁଦା କାର୍ଯ୍ୟରେ ଭୁଲ ବାହାର କଲେ, ବ୍ୟଙ୍ଗ, ବିଦ୍ରୂପ କଲେ କ୍ରୋଧ ଜାତ ହୁଏ ।

### ଦୋଷୀ ମନୋଭାବ

ଦୋଷୀ ମନୋଭାବ ମଧ୍ୟ କେତେକ କ୍ଷେତ୍ରରେ ପିଲାମନରେ କ୍ରୋଧ ଜାତ କରାଇ-ଥାଏ । ଅସମ୍ପୂର୍ଣ୍ଣ କାର୍ଯ୍ୟକୁ ସମ୍ପୂର୍ଣ୍ଣ କରିବାରେ ଅକ୍ଷମ ହେଲେ ବା ସେଥିରେ କେହି ବାଧା ସୃଷ୍ଟି କଲେ କ୍ରୋଧ ଜାତ ହୋଇଥାଏ ।

### କ୍ରୋଧର ଲକ୍ଷଣ

କ୍ଷୁଦ୍ର ଶିଶୁ କ୍ରୋଧାନ୍ୱିତ ହେଲେ କେତେକ ଅଙ୍ଗଭଙ୍ଗୀ ପ୍ରକାଶ କରେ । ସେ କ୍ରନ୍ଦନ କରେ, ଚିତ୍କାର କରେ, ହାତଗୋଡ଼ କଚାଡ଼େ, ହାତଗୋଡ଼ ନିରୁଦ୍ଦିଷ୍ଟ ଭାବରେ ପରିଚାଳିତ କରେ, ଗୋଇଠା ମାରେ, ତଳ ଉପରକୁ ଧାଁ ଧପଡ଼ କରେ ଅଥବା ଭୂଇଁରେ ଗଡ଼େ । ନିଶ୍ୱାସ ବନ୍ଦ କରିଦିଏ ଅଥବା ନିଶ୍ୱାସ ପୁରାପୁରି ଛାଡ଼ିଦିଏ । ଦାନ୍ତ କାମୁଡ଼ିବା, ବାଳ ଟାଣିବା, ସାମନାରେ ଥିବା ଯେ କୌଣସି ବସ୍ତୁକୁ ପିଙ୍ଗାଫୋପଡ଼ା କରିବା ମଧ୍ୟ କ୍ରୋଧର ଲକ୍ଷଣ । ୩/୪ ବର୍ଷ ବୟସରେ ଯେତେବେଳେ କ୍ରୋଧ ଶେଷ ସୀମାରେ ପହଞ୍ଚେ, ନିଜ ଶରୀର ଉପରେ ଆଘାତ କରି ପ୍ରତିଶୋଧ ନେବାର ଇଚ୍ଛା ତୀବ୍ର ହୁଏ । ପ୍ରାରମ୍ଭିକ ବାଲ୍ୟାବସ୍ଥାର ଶେଷ ପର୍ଯ୍ୟାୟରେ କ୍ରୋଧର ପରିମାଣ ହ୍ରାସ ପାଏ ଏବଂ ଏହା ବଦଳରେ, ରୁଷିବା, ନ ଖାଇବା, ସବୁଦା ଚିନ୍ତାମଗ୍ନ ରହିବା, ଅଭିମାନ କରିବା, ମୁହଁ ଶୁଖାଇବା ଇତ୍ୟାଦି ଲକ୍ଷଣମାନ ପ୍ରକାଶ ପାଏ । ବାଲ୍ୟାବସ୍ଥାରେ ଇଚ୍ଛାର ଅତ୍ୟଧିକ ବିଫଳତାଯୋଗୁ ଆକ୍ରମଣ କରିବାର ଅନୁକିସ୍ମା ଜାତ ହୁଏ ।

କେତେକ ପିଲାଙ୍କର ପ୍ରାରମ୍ଭିକ ବାଲ୍ୟାବସ୍ଥାର ଶେଷବେଳକୁ କ୍ରୋଧ ଉପରେ ନିୟନ୍ତ୍ରଣ ଆସିଯାଏ । କିନ୍ତୁ ଅଧିକାଂଶ କ୍ଷେତ୍ରରେ ଏହା ସମ୍ଭବ ହୋଇନଥାଏ । ଫଳରେ ଏମାନେ ନିଜର କ୍ରୋଧ ବିଭିନ୍ନ ମାତ୍ରାରେ ପ୍ରକାଶ କରନ୍ତି ।

କ୍ରୋଧର ନିୟନ୍ତ୍ରଣ -

ଶିଶୁର ସାମାଜିକ ବିକାଶ ସହିତ ତାର କ୍ରୋଧର ମାତ୍ରା ହ୍ରାସ ପାଏ । ସେ ଯେତେବେଳେ ଲକ୍ଷ୍ୟ କରେ ଯେ, କ୍ରୋଧ ପ୍ରକାଶ କଲେ ସେ ଅନ୍ୟମାନଙ୍କର ଅପ୍ରିୟ ହେଉଛି, ଅନ୍ୟମାନଙ୍କର ପ୍ରିୟପାତ୍ର ହେବା ପାଇଁ ସେ ନିଜର କ୍ରୋଧକୁ ଆୟତରେ ରଖିବାକୁ ଚେଷ୍ଟା କରେ । ନିଜର ବ୍ୟର୍ଥ ଆଶାକୁ ଅନ୍ୟ ଉପାୟରେ ପୂରଣ କରି ସେ କାଳକ୍ରମେ କ୍ରୋଧକୁ ଦମନ କରିବାକୁ ଚେଷ୍ଟା କରେ । କ୍ରୋଧ ମାନବର ପରମ ଶତ୍ରୁ । କ୍ରୋଧକୁ ସେ ଯେତେ ପରିମାଣରେ ନିୟନ୍ତ୍ରିତ କରି ନିଜ ଆୟତ୍ତାଧୀନ କରିପାରେ, ସେ ସେତେ ପରିମାଣରେ ସାମାଜିକ ହୋଇଥାଏ ।

କ୍ରୋଧକୁ ସମ୍ପୂର୍ଣ୍ଣଭାବରେ ଦମନ କରିବା ଅସମ୍ଭବ । କିନ୍ତୁ କ୍ରୋଧର ଲକ୍ଷଣଗୁଡ଼ିକୁ ସାମାଜିକ ଗ୍ରହଣୀୟ ଉପାୟରେ ପ୍ରକାଶ କରିବାକୁ ଶିଶୁକୁ ଶିକ୍ଷା ଦେଲେ ତାହା ଶିଶୁପାଇଁ ଯଥେଷ୍ଟ ଲାଭଦାୟକ ହୋଇଥାଏ । ମାନବ ଜୀବନରେ ବ୍ୟର୍ଥତା ଅବଶ୍ୟମ୍ଭାବୀ । ତେଣୁ ଜୀବନର ବ୍ୟର୍ଥତାକୁ ଯଥେଷ୍ଟ ଗୁରୁତ୍ୱ ନ ଦେଇ ସହ୍ୟ କରିବାକୁ, ସାମାନ୍ୟ ବିଫଳତାରେ ଅଧୈର୍ଯ୍ୟ ନ ହେବାକୁ ଏବଂ ଜୀବନର ଯାତ୍ରାପଥରେ ବିଭିନ୍ନ ସମସ୍ୟାକୁ ଶାନ୍ତିପୂର୍ଣ୍ଣ ଭାବରେ ସମାଧାନ କରିବାକୁ ଶିଶୁକୁ ପ୍ରସ୍ତୁତ କରିବା ଆବଶ୍ୟକ । କ୍ରୋଧର ମନ୍ଦ ପରିଣାମ କେତେଦୂର ଅନିଷ୍ଟକର, ତାହା ନିଜର ବ୍ୟବହାର ମାଧ୍ୟମରେ ଶିଶୁକୁ ଶିକ୍ଷା ଦେବା ଉଚିତ୍ ।

ଶିଶୁର ପରିବେଷ୍ଟନୀରେ ଯେପରି ଅତ୍ୟଧିକ ପରିମାଣରେ ଅନାବଶ୍ୟକ ଓ ଅଯଥା ବ୍ୟର୍ଥତା ଜାତ ନ ହୁଏ ସେଥିପ୍ରତି ଦୃଷ୍ଟି ଦେଲେ ଶିଶୁର କ୍ରୋଧର ମାତ୍ରା ହ୍ରାସ କରାଯାଇପାରିବ । ନିଜର ବିଭିନ୍ନ ଇଚ୍ଛା ଓ ଆବଶ୍ୟକତାର ପୂରଣ ପାଇଁ କ୍ରୋଧକୁ ଅସ୍ତ୍ରରୂପେ ପ୍ରୟୋଗ ନ କରି ସାମାଜିକ ଗ୍ରହଣୀୟ ପନ୍ଥା ଅନୁସରଣ କରିବାକୁ ଶିଶୁକୁ ଶିକ୍ଷାଦେଇ ତାର କ୍ରୋଧକୁ ନିୟନ୍ତ୍ରଣ କରାଯାଇପାରିବ ।

ଶିଶୁଉପରେ ବହୁ ପ୍ରସ୍ତାବ ତଥା ପ୍ରତିପତ୍ତି ବିସ୍ତାର କଲେ ଏବଂ ଅତିଶୟ ଉତ୍ତେଜନା ଓ କ୍ଳାନ୍ତିଯୋଗୁ ଶିଶୁ ହଠାତ୍ କ୍ରୋଧାନ୍ୱିତ ହୋଇପଡ଼େ । ତେଣୁ ଏହା ଯେପରି ନ ହୁଏ, ସେଥିପ୍ରତି ଯଥେଷ୍ଟ ଦୃଷ୍ଟି ଦେବାକୁ ପଡ଼ିବ । ଶିଶୁର କ୍ରୋଧପୂର୍ଣ୍ଣ ଅନୁଭୂତିଗୁଡ଼ିକୁ ଉତ୍ସାହିତ କଲେ ତାହା ପୁନର୍ବଳିତ ହୁଏ । ତେଣୁ ପିଲାର ଏହିପ୍ରକାର କ୍ରିୟାକଳାପ ପ୍ରତି ଗୁରୁତ୍ୱ ନ ଦେଲେ ଭବିଷ୍ୟତରେ ସେ କ୍ରୋଧପୂର୍ଣ୍ଣ ବ୍ୟବହାର ପ୍ରଦର୍ଶନ କରିବନାହିଁ । ବଡ଼ମାନେ

ଅଧ୍ୟୟନର ଫଳାଫଳରୁ ଅନୁମିତ ହୁଏ ଯେ, ଦୈନନ୍ଦିନ ସମସ୍ୟାର ସମାଧାନ ଶିଶୁ କିପରି ସ୍ୱାଭାବିକ ଓ ସୁସ୍ଥ ଉପାୟରେ କରିପାରିବ, ସେ ସମ୍ପର୍କରେ ବ୍ୟକ୍ତିଗତ ଉପଦେଶ ନ ଦେଲେ ଶିଶୁ ସମସ୍ୟା ସମାଧାନ କଲାବେଳେ କ୍ରୋଧ ପ୍ରକାଶ କରିଥାଏ ।

କ୍ରୋଧ ପ୍ରକାଶ କରୁଥିବା ସମୟରେ ପିଲାର ଧ୍ୟାନକୁ ଅନ୍ୟଦିଗକୁ କେନ୍ଦ୍ରିତ କଲେ ତାର କ୍ରୋଧ ଦୂର ହୋଇଥାଏ । ଏକ ନିର୍ଦ୍ଦିଷ୍ଟ ଇଚ୍ଛା ପୂରଣ ହୋଇନପାରିଲେ ଶିଶୁ ଯଦି କ୍ରୋଧ ପ୍ରକାଶ କରେ ଅନ୍ୟ ଏକ ପଦାର୍ଥ ଦେଇ ତାର କ୍ରୋଧକୁ ଦୂର କରାଯାଇପାରେ ।

କ୍ରୋଧ ନିୟନ୍ତ୍ରଣ କରିବା ଅର୍ଥ ଏହାକୁ ଦମନ କରିବା ନୁହେଁ । କ୍ରୋଧ ଏକ ପ୍ରକ୍ଷୋଭ ହୋଇଥିବାରୁ ଏହାର ସ୍ୱାଭାବିକ ପରିପ୍ରକାଶ ଆବଶ୍ୟକ । ତେଣୁ ଧମକ ଦେଖାଇ ଓ ଭୟଭୀତ କରାଇ ଶିଶୁର କ୍ରୋଧକୁ ଦମନ କରିବା ଉଚିତ୍ ନୁହେଁ । ଯେତେଦୂର ସମ୍ଭବ ସାମାଜିକ ଗ୍ରହଣୀୟ ଉପାୟରେ କ୍ରୋଧର ପରିପ୍ରକାଶ ଶିଶୁର ସୁସ୍ଥ ବ୍ୟକ୍ତିତ୍ୱ ଗଠନରେ ସାହାଯ୍ୟ କରେ ।

## ଭୟ

ଶିଶୁର ପରିବେଷ୍ଟନୀରେ କ୍ରୋଧ ଅପେକ୍ଷା ଭୟ ଉଦ୍ରେକ କରାଉଥିବା ଉଦ୍ଦୀପକ ଅପେକ୍ଷାକୃତ କମ୍ ଲକ୍ଷ୍ୟ କରାଯାଏ । ୬।୭ ମାସରେ ଭୟ ସାଧାରଣ ଓ ବ୍ୟାପକ ରୂପରେ ଦେଖାଯାଏ । କାଳକ୍ରମେ ଶିଶୁର ଅଭିଜ୍ଞତା ଓ ଅନୁଭବ ସହିତ ଭୟ ଉଦ୍ରେକକାରୀ ଉଦ୍ଦୀପକଗୁଡ଼ିକ ଅଧିକ ନିର୍ଦ୍ଦିଷ୍ଟ ଓ ବିଶିଷ୍ଟ ହୁଏ । ପ୍ରାରମ୍ଭରେ ଭୟ ଉଦ୍ଦୀପକମାନଙ୍କ ସଂସ୍ପର୍ଶରେ ଶିଶୁ ବିଶେଷଭାବରେ ଆସିନଥାଏ । କାଳକ୍ରମେ ପରିବେଷ୍ଟନୀ ସହିତ ଶିଶୁ ଅଧିକ ସକ୍ରିୟ ଭାବରେ ପାରସ୍ପରିକ ପ୍ରକ୍ରିୟାରେ ଆବଦ୍ଧ ରହେ ଓ ଭୟ ଉଦ୍ରେକକାରୀ ଉଦ୍ଦୀପକ-ମାନଙ୍କ ସଂସ୍ପର୍ଶରେ ଆସି ଭୟ ପ୍ରଦର୍ଶନ କରେ । ପ୍ରାରମ୍ଭରେ ସାମାନ୍ୟ ବିପଦରେ, ଯଥା—କାହାକୁ ଗାଡ଼ିରୁ ପଡ଼ିଯିବା ଅଥବା ଉଚ୍ଚସ୍ଥାନରୁ ତଳକୁ ପଡ଼ିବା ଦେଖିଲେ ସେ ଭୟ ପାଏ । ଉଚ୍ଚସ୍ୱର, ଅପରିଚିତ ଲୋକ ଓ ସ୍ଥାନ, ଗର୍ଜ୍ଜନ କରୁଥିବା ଓ ଭୁକୁଥିବା ଅଥବା ହଠାତ୍ ଆକ୍ରମଣ କରୁଥିବା ଜନ୍ତୁମାନଙ୍କ ପ୍ରତି ମଧ୍ୟ ପିଲା ଭୟ ପ୍ରଦର୍ଶନ କରେ । ଏତଦ୍‌ବ୍ୟତୀତ ଅପ୍ରିୟ ଅନୁଭବକୁ ସ୍ମରଣକରି ନିଜର ପରିବେଶର ବ୍ୟକ୍ତି ଓ ବସ୍ତୁମାନଙ୍କୁ ଡରିବାକୁ ଶିଖେ ।

ବିଭିନ୍ନ ବ୍ୟକ୍ତିମାନଙ୍କ ସହିତ ପାରସ୍ପରିକ ପ୍ରକ୍ରିୟାରେ ଆବଦ୍ଧ ରହି ଶିଶୁ ସେମାନଙ୍କ-ଠାରୁ ଭୟ ଶିକ୍ଷାକରେ । ଉଦାହରଣ ସ୍ୱରୂପ—ରାତିରେ ପିଲା କୌଣସି କାରଣରୁ ନ ଶୋଇ କ୍ରନ୍ଦନ କଲେ ମା' ପିଲାକୁ ଶୁଆଇ ନିଜେ ଟିକିଏ ଶୋଇବା ପାଇଁ ନାନାପ୍ରକାର ଭୟାବହ

ଗଳ୍ପ କହନ୍ତି । ଯଥା : "ଘରରେ କାନ୍ଦିଲେ ବଣ ବାଘୁଆ ଆସିବ । ମୁଣିରେ ପୂରାଇ ନେଇଯିବ" ଇତ୍ୟାଦି ପିଲାପ୍ରତି ବିପଦ ଜାତ କରୁନଥିବା ଉଦ୍ଦୀପକ ପ୍ରତି ଭୟ ପ୍ରଦର୍ଶନ କରିବାକୁ ଏବଂ ତା' ନିକଟକୁ ନ ଯିବାପାଇଁ ମଧ୍ୟ ଅଭିଭାବକ ପିଲାଙ୍କୁ ଉପଦେଶ ଦିଅନ୍ତି । 'କୁକୁର କାମୁଡ଼ିଦେବ, ଗାତରେ ହାତ ପୂରାଅନାହିଁ ସାପ ଥିବ କାମୁଡ଼ିଦେବ; ପାଇଖାନାକୁ ଅନ୍ଧାରଘରରେ ଏକୁଟିଆ ଯିବନାହିଁ, ସାପ ବାହାରିପାରେ ; କୂଅ ବା ପୋଖରୀ ନିକଟକୁ ଯିବନାହିଁ, ବୁଡ଼ିଯିବ'—ଇତ୍ୟାଦି କହି ପିଲାକୁ ବିଭିନ୍ନ ଉଦ୍ଦୀପକ ପ୍ରତି ଭୟପ୍ରଦର୍ଶନ କରିବାକୁ ଶିକ୍ଷା ଦିଅନ୍ତି ।

କେତେକ କ୍ଷେତ୍ରରେ ପିଲା ଯେତେବେଳେ ନିଜେ ଜାଣେ ଯେ କୁକୁର କାହାକୁ କାମୁଡ଼ି ଦେବାରୁ କ୍ଷତ ସ୍ଥାନରୁ ରକ୍ତ ଝରୁଛି ଏବଂ ବ୍ୟକ୍ତି କଷ୍ଟପାଉଛି, ଅଥବା ନିଆଁରେ ହାତ ପୂରାଇବାରୁ ହାତ ପୋଡ଼ିଗଲା ସେ ଏସବୁ ଉଦ୍ଦୀପକମାନଙ୍କ ପ୍ରତି ଭୟ ପ୍ରଦର୍ଶନ କରିବାକୁ ଆରମ୍ଭ କରେ । ଏହିପରି ଭାବରେ ନିଜର ଅଭିଜ୍ଞତା ଓ ଅନ୍ୟମାନଙ୍କଠାରୁ ଶିକ୍ଷା କରି ପିଲା ପୂର୍ବରୁ ଭୟ ପ୍ରଦର୍ଶନ କରୁନଥିବା ଉଦ୍ଦୀପକମାନଙ୍କ ପ୍ରତି ଭୟ ଅନୁକ୍ରିୟା ପ୍ରଦର୍ଶନ କରେ ।

କେଉଁ ଉଦ୍ଦୀପକଗୁଡ଼ିକ ନିଜପାଇଁ ବିପଦକାରକ ଏବଂ କେଉଁଗୁଡ଼ିକୁ ଭୟକରିବା ଅନାବଶ୍ୟକ, ତାହା ଧୀଶକ୍ତିର ବିକାଶ ସହିତ ଶିଶୁ କ୍ରମେ କ୍ରମେ ପର୍ଯ୍ୟବେକ୍ଷଣ ତଥା ଉପଲବ୍ଧି କରିପାରେ । ଉଦାହରଣ ସ୍ୱରୂପ—ପୂର୍ବରୁ ପିଲା ସାପକୁ ଭୟ ଦେଖାଉନଥିଲା, କିନ୍ତୁ ଯେତେବେଳେ ସେ ବୁଝିଲା ଯେ ସାପ ମଣିଷ ପାଇଁ ବିପଦପୂର୍ଣ୍ଣ, ସାପକୁ ସେ ଡ଼ରିବାକୁ ଆରମ୍ଭ କଲା । ସେହିପରି କୌଣସି କାରଣରୁ ପ୍ରଥମେ ସେ ବେଙ୍ଗ ବା ବୁଢ଼ୀ-ଆଣିକୁ ଡରୁଥିଲା କିନ୍ତୁ ପରେ ସେ ଜାଣିଲା ଯେ, ଏସବୁ ତାର କୌଣସି କ୍ଷତି କରିପାରିବେ ନାହିଁ, ପିତାମାତା, ଅଭିଭାବକ ତଥା ପରିବାରର ଆତ୍ମୀୟମାନଙ୍କର ଅସାବଧାନତା ତଥା ଭୁଲ ପ୍ରଶିକ୍ଷଣ ଯୋଗୁ ଅଧିକାଂଶ ଶିଶୁ ବିପଦଜନକ ହୋଇନଥିବା ଉଦ୍ଦୀପକମାନଙ୍କୁ ଭୟ ପ୍ରଦର୍ଶନ କରିବାକୁ ଶିକ୍ଷା କରନ୍ତି । ଯଥା—ଏକୁଟିଆ ଘରେ ରହିବାକୁ, ଅନ୍ଧାରସ୍ଥାନକୁ, ଗୃହପାଳିତ ପଶୁମାନଙ୍କୁ, ଅସରପା, ବୁଢିଆଣି, ବେଙ୍ଗ, ବିଜୁଳି, ଘଡ଼ଘଡ଼ି ଅଥବା ଭୂତ, ଡ଼ାହାଣୀ ଓ ରାମାୟଣ ମହାଭାରତ ବର୍ଣ୍ଣିତ ରାକ୍ଷସମାନଙ୍କ ପ୍ରତି ଭୟ ଦେଖାଇ ପିଲା ଅଯଥା ଭୀରୁ ହୋଇଯାଏ । ଏପରିକି ଏକ ଘରୁ ଅନ୍ୟ ଘରକୁ ଯିବାକୁ, ପାଇଖାନା ଯିବାକୁ ଅଥବା ବିଦ୍ୟାଳୟକୁ ଯିବାକୁ ସେ ଅନ୍ୟ ସାଥୀ ଲୋଡ଼େ । ଏତାଦୃଶ ଭୟ ପିଲାର ଶାରୀରିକ ଓ ମାନସିକ ସ୍ୱାସ୍ଥ୍ୟର ଅଭିବୃଦ୍ଧିକୁ ବ୍ୟାହତ କରେ । ତାର ନ୍ୟୁନ ମନୋଭାବ ଜାତହୁଏ ଏବଂ ଜୀବନର ଯାତାପଥରେ ନିଜେ ଅନ୍ୟର ବିନା-ସହାୟତାରେ ସ୍ୱାଧୀନଭାବରେ କୌଣସି ସମସ୍ୟା ସମାଧାନ ପାଇଁ ପଦକ୍ଷେପ ନେବାକୁ ସେ ସାହସ କରିପାରେ ନାହିଁ । ବିଭିନ୍ନ କ୍ଷେତ୍ରରେ ଅନ୍ୟମାନଙ୍କ ସହିତ ଉପଯୋଜନ କରିବାକୁ ମଧ୍ୟ ପିଲାକୁ ଅସୁବିଧା ହୁଏ ।

### ଭୟର କାରଣ

ଭୟ ପ୍ରଦର୍ଶନ କରିବାରେ ବ୍ୟକ୍ତିଗତ ଭିନ୍ନତା ଦେଖାଗଲେ ମଧ୍ୟ ଭୟର କେତେକ ସାଧାରଣ କାରଣ ରହିଛି ।

ସାଧାରଣତଃ ପିଲାର ବୟସ, ସ୍ୱାସ୍ଥ୍ୟ ଶାରୀରିକ ଓ ମାନସିକ ଅବସ୍ଥା, ପରିବେଷ୍ଟନୀଗତ ପ୍ରଶିକ୍ଷଣ, ଧୀ ଶକ୍ତି, ସାମାଜିକ ଓ ସାଂସ୍କୃତିକ ମୂଲ୍ୟବୋଧ, ଅସୁରକ୍ଷିତ ମନୋଭାବ, ଅତୀତର ଅଭିଜ୍ଞତା, ନୂତନ ଉଦ୍ଦୀପକମାନଙ୍କୁ ହଠାତ୍ ବା ଅପ୍ରତ୍ୟାଶିତ ଭାବରେ ସମ୍ମୁଖୀନ ହେବା, ଅପରିଚିତ ବ୍ୟକ୍ତି ବା ବସ୍ତୁ ଇତ୍ୟାଦି ଭୟର କାରଣ ହୋଇଥାଏ । ଏତଦ୍‌ବ୍ୟତୀତ ଜୀବ, ଜନ୍ତୁ ଉଚ୍ଚ ସ୍ଥାନ, ଉଚ୍ଚ ସ୍ୱର, ଆଘାତ ଇତ୍ୟାଦି ଯୋଗୁ ମଧ୍ୟ ଶିଶୁ ଭୟ ପାଇଥାଏ ।

ଏହା ଛଡ଼ା ଭୟ ଅନେକ କ୍ଷେତ୍ରରେ ବ୍ୟକ୍ତିଗତ ଅନୁଭବରୁ ଶିକ୍ଷା କରାଯାଏ ଏବଂ ଏହା ପ୍ରତ୍ୟେକଠାରୁ ଭିନ୍ନ ହୁଏ । ଯେଉଁ ସବୁ ଉଦ୍ଦୀପକ ହଠାତ୍ ଅପ୍ରତ୍ୟାଶିତ ଭାବରେ ଉପସ୍ଥିତ ହୁଏ, ପିଲାଙ୍କୁ ଏଥି ସହିତ ଉପଯୋଜନ କରିବାକୁ କମ୍ ସମୟ ମିଳେ । ଯେତେବେଳେ ପିଲା କୌଣସି ପରିଚିତ ବ୍ୟକ୍ତିର ଉପସ୍ଥିତି ଆଶା କରୁଥାଏ ତା ବଦଳରେ ଜଣେ ଅପରିଚିତ ବ୍ୟକ୍ତି ସହିତ ଉପଯୋଜନ କରିନପାରି ଭୟ ପାଇଥାଏ । ପୁନଶ୍ଚ ଯେତେବେଳେ ଏକ ପରିଚିତ ବ୍ୟକ୍ତି ଅପରିଚିତ ପୋଷାକ ପିନ୍ଧି ପିଲାକୁ କୋଳ କରିବାକୁ ଆସେ, ପିଲା ଭୟ ପାଇଥାଏ । ଯେତେବେଳେ ନୂତନତା ଦୂର ହୁଏ, ପିଲା ମନରୁ ଭୟ ଦୂରୀଭୂତ ହୁଏ । ଏତଦ୍‌ବ୍ୟତୀତ ଭୟର କେତେଗୁଡ଼ିଏ ନିର୍ଦ୍ଦିଷ୍ଟ କାରଣ ରହିଛି ।

### ବୟସ

ଶୈଶବାବସ୍ଥାରେ ହଠାତ୍ କୌଣସି ଉଚ୍ଚ ଶବ୍ଦ ହେଲେ ପିଲା ଭୟ ପ୍ରଦର୍ଶନ କରନ୍ତି । କିନ୍ତୁ ଧୀଶକ୍ତି, ପ୍ରତ୍ୟକ୍ଷ ପ୍ରକ୍ରିୟା ଓ ଅଭିଜ୍ଞତାରେ ଭିନ୍ନତା ହେତୁ ଭିନ୍ନ ଭିନ୍ନ ବୟସରେ ବିଭିନ୍ନ ପ୍ରକାର ଭୟର ସୃଷ୍ଟିପାତ ହୁଏ । କ୍ଷୁଦ୍ର ଶିଶୁ ଅପେକ୍ଷା ବଡ଼ ଶିଶୁ ଅଧିକ ଭୟ ପ୍ରଦର୍ଶନ କରୁଥିବାର ଦେଖାଯାଇଅଛି । ପର୍ଯ୍ୟବେକ୍ଷଣ ଓ ଅଧ୍ୟୟନମାନଙ୍କରୁ ଜଣାଯାଏ ଯେ ପ୍ରଥମେ ୩ବର୍ଷ ବୟସରେ ଓ ପୁଣି ୧୧ ବର୍ଷ ବୟସରେ ଭୟର ମାତ୍ରା ଓ ତୀବ୍ରତା ବୃଦ୍ଧି ପାଏ । ୩ବର୍ଷ ବୟସରେ ଶିଶୁ ସଂସ୍ପର୍ଶରେ ଆସୁଥିବା ଉଦ୍ଦୀପକ ତାର ଭୟର କାରଣ ହୋଇଥାନ୍ତି । ୫ବର୍ଷର ପିଲା ଡାକ୍ତର, ମୃତ ବ୍ୟକ୍ତିର ଶବ, ଦୁର୍ଘଟଣା, ରକ୍ତ, ଆହତ ବ୍ୟକ୍ତି ବା ପଶୁପକ୍ଷୀ, ଗଭୀର ବା ଉଚ୍ଚ ସ୍ଥାନରୁ ପଡ଼ୁଥିବା ଜଳକୁ ଦେଖି ଭୟ ପ୍ରଦର୍ଶନ କରନ୍ତି । ୧୧ ବର୍ଷ ବୟସରେ ଭୟ ସାମାନ୍ୟକରଣ ହୁଏ ଏବଂ ଉଦ୍‌ବେଗ ଓ ଚିନ୍ତା ରୂପରେ ପ୍ରକାଶ ପାଏ । ଶିଶୁର ବୟସ ବଢ଼ିଲେ ତାର ପ୍ରତ୍ୟକ୍ଷ ପ୍ରକ୍ରିୟା ଓ ବୌଦ୍ଧିକ ବିକାଶ ଘଟେ । ଫଳରେ ସେ ଅଧିକ ସଫଳତାର ସହିତ ଜଗତକୁ ଉପଯୋଜନ କରେ । କେଉଁ ଉଦ୍ଦୀପକ ଭୟର କାରଣ ନୁହେଁ ତା ମଧ୍ୟ ଜାଣିଯାଏ ।

### ସ୍ୱାସ୍ଥ୍ୟ

ପିଲା ଯଦି ସ୍ୱାସ୍ଥ୍ୟବାନ ହୋଇନଥାଏ, ଅଥବା ବହୁଦିନ ଧରି ରୋଗାକ୍ରାନ୍ତ, ଅସୁସ୍ଥ ହୋଇ ରୁଗ୍ଣ ବା ଦୁର୍ବଳ ହୋଇଥାଏ, ଅତି ସାଧାରଣ ଉଦ୍ଦୀପକ ମଧ୍ୟ ତା ମନରେ ଭୟ ଉଦ୍ରେକ କରାଇପାରେ ।

### ଲିଙ୍ଗ

ପ୍ରତ୍ୟେକ ଅବସ୍ଥାରେ ବାଳିକାମାନେ ବାଳକମାନଙ୍କ ଅପେକ୍ଷା ଅଧିକ ଭୟ ପ୍ରଦର୍ଶନ କରନ୍ତି । ବାଳକମାନେ ହିଂସ୍ର ଜନ୍ତୁଙ୍କୁ ଭୟ ପ୍ରଦର୍ଶନ କରୁଥିବା ସ୍ଥଳେ ବାଳିକାମାନେ ଅସରପା, ବୁଢ଼ିଆଣୀ, ଏଣ୍ଡୁଅ, ସାପ କାକୁଆ, ଚେଲୁଣି ପୋକ ଇତ୍ୟାଦିକୁ ଭୟ କରନ୍ତି । ବାଳକମାନେ ଶିକ୍ଷକ ଦେଇଥିବା ପାଠ ସମ୍ପାଦନ କରିବାକୁ ଭୟ କରୁଥିବା ବେଳେ ବାଳିକାମାନେ ଅସୁସ୍ଥତା, ଅନ୍ଧାର ରାତି, ଏକଲା ରହିବା ଓ ରୋଗକୁ ଭୟକରନ୍ତି ।

### ଶାରୀରିକ ଓ ମାନସିକ ଅବସ୍ଥା

ଅସୁରକ୍ଷିତ ମନୋଭାବ ଶିଶୁର ଭୟକୁ ତ୍ୱରାନ୍ୱିତ କରିଥାଏ । ଯଦି ଶିଶୁ କ୍ଲାନ୍ତ ଓ କ୍ଷୁଧାର୍ତ୍ତ ହୋଇଥିବ ଅଥବା ଆବେଗାତ୍ମକ ଅସ୍ଥିରତା ଅନୁଭବ କରୁଥିବ ସେ ହଠାତ୍ ଭୟ ପାଇପାରେ ।

### ସାମାଜିକ ଆର୍ଥିକ ଅବସ୍ଥା

ଉଚ୍ଚ ସାମାଜିକ ଆର୍ଥିକମାନର ଶିଶୁମାନେ ନୀଚ ପରିବାରର ଶିଶୁମାନଙ୍କଠାରୁ ଅଧିକ ଭୟ ପ୍ରଦର୍ଶନ କରିଥାନ୍ତି । କାରଣ ସେମାନେ ଅଧିକାଂଶ କ୍ଷେତ୍ରରେ ପିତାମାତାଙ୍କ-ଦ୍ୱାରା ସଂରକ୍ଷିତ ହୋଇଥାନ୍ତି । କିନ୍ତୁ ଦରିଦ୍ର ପରିବାରର ପିଲାକୁ ନିଜର ଆର୍ଥିକ ଅନାଟନ ଦୂରକରିବାପାଇଁ ଅନେକ ଦୁଃସାହସିକ କାମ କରିବାକୁ ପଡ଼ିଥାଏ ।

### ପରିବେଷ୍ଟନୀଗତ ପ୍ରଶିକ୍ଷଣ

ଯେହେତୁ ଭୟ ଅନୁଚିନ୍ତା, ପ୍ରଶିକ୍ଷଣ ଓ ବ୍ୟକ୍ତିଗତ ଅଭିଜ୍ଞତା ଉପରେ ନିର୍ଭର କରେ ଭୟାଳୁ ବ୍ୟକ୍ତିମାନଙ୍କ ସହିତ ଚଳପ୍ରଚଳ କଲେ ପିଲା ଭୟ ପ୍ରତି ଅଧିକ ସମ୍ବେଦନ-ଶୀଳ ହୁଏ । ପିତା, ମାତା, ଆତ୍ମୀୟସ୍ୱଜନ ବା ଶିକ୍ଷକ ଯଦି ଭୟାଳୁ ହୋଇଥାନ୍ତି ପିଲା ମଧ୍ୟ ଅହେତୁକ ଭୟ ପ୍ରଦର୍ଶନ କରେ ।

ଅଭ୍ୟନୁକୂଳନ ପଦ୍ଧତି ମାଧ୍ୟମରେ ପିଲା ମନରେ ବିଭିନ୍ନ ପ୍ରାଣୀ ବା ବସ୍ତୁ ପ୍ରତି ଭୟ ଉଦ୍ରେକ କରାଯାଇପାରେ । ଏହି ପଦ୍ଧତି ସାହାଯ୍ୟରେ ଓ୍ୟାଟ୍‌ସନ ୧୧ ମାସର ଶିଶୁ ଆଲବର୍ଟ ମନରେ ଠେକୁଆ ପ୍ରତି ଭୟ ଜାତ କରାଇପାରିଥିଲେ ।

ଅପର ପକ୍ଷରେ ନିର୍ଭୀକ ଓ ସାହସୀ ବ୍ୟକ୍ତିମାନଙ୍କ ସହିତ ପାରସ୍ପରିକ ପ୍ରକ୍ରିୟାରେ ଆବଦ୍ଧ ହେଲେ ଶିଶୁ ସାହସୀ ହୁଏ । ପିତାମାତା ପିଲାକୁ ଭୟାବହ ଘଟଣା ସମ୍ବଳିତ ବାସ୍ତବ ଘଟଣା ବା କାଳ୍ପନିକ କାହାଣୀମାନ କହିଲେ ପିଲା ଭୟ ପାଇଥାଏ । ବିଶେଷ କରି ଭୂତ, ଡାହାଣୀ, ଚୋର, ରାକ୍ଷସ, ମୃତ ବ୍ୟକ୍ତିର କଙ୍କାଳ ଓ ଅସୁରୁଣୀ ଇତ୍ୟାଦି କାଳ୍ପନିକ ଉଦ୍ଦୀପକମାନଙ୍କ ପ୍ରତି ସେ ଭୟ ପ୍ରଦର୍ଶନ କରିବାକୁ ଆରମ୍ଭ କରେ । ଶିଶୁମାନଙ୍କଠାରେ ଏହି ପ୍ରକାରର କାଳ୍ପନିକ ଭୟ ଅଧିକ ଲକ୍ଷ୍ୟ କରାଯାଏ । ପ୍ରାକ୍ ବିଦ୍ୟାଳୟ ସ୍ତର ପରେ ଭୟର ପରିମାଣ ଯଥେଷ୍ଟ ହ୍ରାସ ପାଏ ।

## ଭୟର ନିରାକରଣ

ଯେଉଁସବୁ ଉଦ୍ଦୀପକମାନଙ୍କ ପ୍ରତି ଭୟ ପ୍ରଦର୍ଶନ କଲେ ନିଜପ୍ରତି ବିପଦ ଦେଖା-ଦେବ ସେଥିପ୍ରତି ଭୟ ପ୍ରଦର୍ଶନ କରିବାର ଆବଶ୍ୟକତା ରହିଛି । କିନ୍ତୁ ଅନ୍ୟାନ୍ୟ ପ୍ରକାର ଅନାବଶ୍ୟକ ଓ ଅଯୌକ୍ତିକ ଭୟ ପିଲାର ସୁସ୍ଥ ବ୍ୟକ୍ତିତ୍ୱ ଗଠନକୁ ବ୍ୟାହତ କରେ । ଅହେତୁକ ଭୟ ତାର ବ୍ୟକ୍ତିତ୍ୱକୁ ରୁଗ୍‌ଣ କରିଦିଏ । ଏଣୁ ପିଲା ଯେପରି ଭୀରୁ ଓ ଭୟାଳୁ ନ ହୁଏ ସେଥିପ୍ରତି ସଚେତନ ହେବା ଆବଶ୍ୟକ । ପିଲା ମନରୁ ଭୟ ଦୂର କରିବାପାଇଁ କେତେଗୁଡ଼ିଏ ପନ୍ଥା ଗ୍ରହଣ କରାଯାଇପାରେ ।

### ୧ । ଶିକ୍ଷଣବାଦ ନିୟମାବଳୀ

ହୋଲ୍‌ମସ୍ (୧୯୩୬) ପିଲାମାନଙ୍କ ମନରୁ ଭୟ ଦୂର କରିବାକୁ ଏହି ପଦ୍ଧତି ପ୍ରୟୋଗ କରିଥିଲେ । କୌଣସି ସୁଖକର ଉଦ୍ଦୀପକ ସହିତ ପିଲା ଭୟ କରୁଥିବା ଉଦ୍ଦୀପକକୁ ବାରମ୍ବାର ସଂଯୁକ୍ତ କରି ଉପସ୍ଥାପିତ କଲେ ପୂର୍ବରୁ ଭୟ କରୁଥିବା ଉଦ୍ଦୀପକ ପ୍ରତି କ୍ରମେ କ୍ରମେ ଭୟ ଦୂରକରାଯାଇପାରେ । ଅଭ୍ୟନୁକୂଳନ ପଦ୍ଧତିକୁ ଭୟ ଦୂର କରିବାର ସର୍ବଶ୍ରେଷ୍ଠ ପଦ୍ଧତି ହିସାବରେ ଗ୍ରହଣ କରାଯାଇପାରେ । ପିଲା ଯଦି କୌଣସି କାରଣରୁ ବିଘ୍ରିଡ଼ିକୁ ଡରୁଥାଏ, ବିଘ୍ରିଡ଼ି ଉପସ୍ଥିତ ହେଲାବେଳେ ପିଲାକୁ ଯଦି ମା' କୋଳକୁ ନେଇ ଗେଲ କରନ୍ତି ଅଥବା କୌଣସି ପ୍ରିୟ ଜିନିଷ ଦେଇ ତା ମନରେ କୌଣସି ସୁଖକର ଅନୁଭୂତି ଉଦ୍ରେକ କରନ୍ତି, ସେ ବିଘ୍ରିଡ଼ିକୁ ଡରେ ନାହିଁ । ମୋଟ ଉପରେ ଭୟ ଉଦ୍ରେକ-କାରୀ ଉଦ୍ଦୀପକ ସହିତ ବାରମ୍ବାର ପିଲା ପସନ୍ଦ କରୁଥିବା ଉଦ୍ଦୀପକକୁ ଉପସ୍ଥାପିତ କରାଇଲେ ପିଲାର ଭୟ ଦୂରୀଭୂତ ହୋଇପାରେ ।

## ସାମାଜିକ ଅନୁକରଣ

କୋନସ୍ଙ୍କ ମତରେ ଅନୁକରଣ ମାଧ୍ୟମରେ ପିଲ୍ଲମନରୁ ଭୟ ଦୂର କରାଯାଇ-ପାରେ । ଉଦାହରଣ ସ୍ୱରୂପ—ପିଲ୍ଲ ବେଙ୍ଗ ଓ ଅସରପା ଦେଖିଲେ ଖୁବ୍ ଭୟ ପାଉଛି । ଏପରି କ୍ଷେତ୍ରରେ ପିଲ୍ଲ ବିଶ୍ୱାସ କରୁଥିବା ଓ ଭଲ ପାଉଥିବା ପରିଚିତ ବା ଆତ୍ମୀୟ ବ୍ୟକ୍ତି ଯଦି ନିଜେ ବେଙ୍ଗ ବା ଅସରପାକୁ ହାତରେ ଧରି ଦେଖାଇଦିଅନ୍ତି ଯେ ତାଙ୍କର କିଛି କ୍ଷତି ହେଉନାହିଁ, ପିଲ୍ଲର ଏଥିପ୍ରତି ଭୟ ଦୂର ହୋଇପାରିବ । ସେହିପରି ଘରରେ ଅନ୍ଧାର ଘର ପ୍ରତି ପିଲ୍ଲମନରୁ ମଧ୍ୟ ଭୟ ଦୂର କରାଯାଇପାରିବ । ତେଣୁ ଯେଉଁସବୁ ଉଦ୍ଦୀପକମାନଙ୍କ ପ୍ରତି ପିଲ୍ଲ ଭୟ ପ୍ରଦର୍ଶନ କରୁଛି ସେ ସବୁକୁ ନିଜେ ନ ଡରିବାଦ୍ୱାରା ପିଲ୍ଲ ଅନୁକରଣ କରି ଭୟ ତ୍ୟାଗ କରେ । ବିଭିନ୍ନ ଗୃହପାଳିତ ପଶୁ, ଜୀବଜନ୍ତୁ, କାଳ୍ପନିକ ଓ ଅହେତୁକ ଭୟ, ଅନ୍ଧାର ଘର ଓ ଏକୁଟିଆ ରହିବା ଇତ୍ୟାଦି ପ୍ରତି ଭୟ ପିଲ୍ଲମନରୁ ଏହି ପଦ୍ଧତି ସାହାଯ୍ୟରେ ଦୂର ହୋଇଯାଇପାରେ ।

ଏତଦ୍ ବ୍ୟତୀତ ପିଲ୍ଲ କୌଣସି ଉଦ୍ଦୀପକ ପ୍ରତି ଭୟ ଅନୁକ୍ରିୟା ପ୍ରଦର୍ଶନ କରୁଥିବା ବେଳେ ଅନ୍ୟ ଉଦ୍ଦୀପକ ପ୍ରତି ତାର ଧ୍ୟାନ ଆକର୍ଷଣ କରାଇଲେ କିଛିକ୍ଷଣ ପାଇଁ ତାର ଭୟ ହ୍ରାସ ପାଇପାରେ । ଉଦାହରଣ ସ୍ୱରୂପ—ପିଲ୍ଲ କୁକୁର ଦେଖି କାନ୍ଦିଲାବେଳେ ଯଦି ମା ଭୟ ଉଦ୍ରେକକାରୀ ଉଦ୍ଦୀପକଠାରୁ ପିଲ୍ଲର ଧ୍ୟାନ ବିଚଳିତ କରିବାପାଇଁ ତାକୁ କୋଳକୁ ନେଇ ଗୋଟିଏ ସୁନ୍ଦର ଖେଳଣା ଦିଅନ୍ତି, ପିଲ୍ଲ ହୁଏତ କିଛି ସମୟ ଭୟ ଦେଖାଏ ନାହିଁ, କିନ୍ତୁ ଭବିଷ୍ୟତରେ କୁକୁରକୁ ଦେଖିଲେ ସେ ପୁଣି ଭୟ ପାଇପାରେ ।

ପିଲ୍ଲର ଯଥେଷ୍ଟ ପରିମାଣରେ ପ୍ରତ୍ୟକ୍ଷ ପ୍ରକ୍ରିୟା, ଜ୍ଞାନାତ୍ମକ ଓ ବୌଦ୍ଧିକ ବିକାଶ ହୋଇଗଲେ ଅଧିକାଂଶ ଉଦ୍ଦୀପକ ପ୍ରତି ଭୟ ଦେଖାଇବାର ଯେ କୌଣସି କାରଣ ନାହିଁ, ତାହା ସେ ଉପଲବ୍ଧି କରିପାରେ । ତେଣୁ ବୁଝିବାର ବୟସ ହୋଇଗଲେ ପିଲ୍ଲକୁ ବୁଝାଇବା ଉଚିତ୍ ଯେ ଭୟ ଉଦ୍ଦୀପକ ତାର ନିରାପତ୍ତା ପ୍ରତି ବିପଦ ସୃଷ୍ଟି କରିବ ନାହିଁ ।

ଦ୍ୱିତୀୟତଃ, ବିଭିନ୍ନ ଭୟ ଉଦ୍ରେକକାରୀ ଉଦ୍ଦୀପକ ପିଲ୍ଲକୁ ହଠାତ୍ ସମ୍ମୁଖୀନ ନ କରାଇ ଆସ୍ତେ ଆସ୍ତେ ଉପସ୍ଥାପିତ କଲେ ପିଲ୍ଲ ଏଥି ସହିତ ନିଜକୁ ଉପଯୋଜନ କରିବାକୁ ସକ୍ଷମ ହୁଏ । କେବଳ ପିଲ୍ଲକୁ ଅହେତୁକ ଉଦ୍ଦୀପକମାନଙ୍କ ପ୍ରତି ଭୟ ପ୍ରଦର୍ଶନ କରିବାକୁ ବୁଝାଇଲେ ହେବ ନାହିଁ, ଭୟ ଉଦ୍ଦୀପକର ସମ୍ମୁଖୀନ ହେବାପାଇଁ ପିତା-ମାତାଙ୍କର ଉତ୍ସାହ ଓ ଉପସ୍ଥିତି ଆବଶ୍ୟକ ।

ଭୟ ତ୍ୟାଗ କରିବା ଯୋଗୁ ପିଲ୍ଲକୁ ପୁରସ୍କାର ଦିଆଗଲେ ବା ପୁରସ୍କାର ଦିଆଯିବାର ପ୍ରତିଶ୍ରୁତି ଦିଆଗଲେ ପିଲ୍ଲର ଭୟ ଅନୁକ୍ରିୟା ହ୍ରାସ ପାଏ । ପୂର୍ବର ଭୟକୁ ପରିତ୍ୟାଗ କରି ପିଲ୍ଲ ପୁରୁଣା ଉଦ୍ଦୀପକ ପ୍ରତି ନୂତନ ଓ ପରିପକ୍ୱ ଅନୁକ୍ରିୟା ପ୍ରଦର୍ଶନ କରିବାକୁ ଶିଖିପାରେ ।

ଶିଶୁର ଅଯୌକ୍ତିକ ଭୟକୁ ଦୂର କରିବା ପାଇଁ ମନସ୍ତତ୍ତ୍ୱବିତ୍‌ମାନଙ୍କ ଦ୍ୱାରା ମନୋବିଶ୍ଳେଷଣବାଦ ଓ ଅନ୍ୟାନ୍ୟ ଚିକିତ୍ସା କୌଶଳମାନ ପ୍ରୟୋଗ କରାଯାଇପାରେ ।

ପିଲାର ମନରେ ଯେପରି ଅଯୌକ୍ତିକ ଓ ଅନାବଶ୍ୟକ ଭୟ ଜାତ ନ ହୁଏ ସେଥିପ୍ରତି ଆରମ୍ଭରୁ ସତର୍କ ହେବା ଆବଶ୍ୟକ ।

ଜିଜ୍ଞାସା

ଜନ୍ମ ସମୟଠାରୁ ଦୁଇ ସପ୍ତାହ ପର୍ଯ୍ୟନ୍ତ ଚକ୍ଷୁ ଦୁଇଟି ମଧ୍ୟରେ ସମନ୍ୱୟ ସମ୍ପୂର୍ଣ୍ଣ ଭାବରେ ବିକଶିତ ହୋଇନଥାଏ । କେବଳ କେତେକ ତୀବ୍ର ଉଦ୍ଦୀପନା ଏହି ଅବସ୍ଥାରେ ଶିଶୁର ଧ୍ୟାନ ଆକର୍ଷଣ କରିଥାଏ । କାଳକ୍ରମେ ଯେତେବେଳେ ବିଭିନ୍ନ ଉଦ୍ଦୀପକମାନଙ୍କୁ ପରିଷ୍କାର ଓ ସ୍ୱତନ୍ତ୍ର ଭାବରେ ଦେଖିବାର ଯୋଗ୍ୟତା ଆସିଯାଏ ଶିଶୁ ନୂତନ ଓ ଅସାଧାରଣ ଉଦ୍ଦୀପକମାନଙ୍କୁ ପର୍ଯ୍ୟବେକ୍ଷଣ କରି ସେ ସମ୍ବନ୍ଧରେ ନାନାପ୍ରକାର ପ୍ରଶ୍ନ ପଚାରି ପିତାମାତା ତଥା ଆତ୍ମୀୟମାନଙ୍କୁ ବ୍ୟତିବ୍ୟସ୍ତ କରିପକାଏ । ବିଶେଷତଃ ତାର ଜ୍ଞାନାତ୍ମକ ବିକାଶ ସହିତ ବିଭିନ୍ନ ବସ୍ତୁ, ପ୍ରାଣୀ ଓ ବ୍ୟକ୍ତିମାନଙ୍କ ସମ୍ବନ୍ଧରେ ଜାଣିବାପାଇଁ ପ୍ରେରଣା ଓ ଉତ୍ସାହ ମିଳେ । କିନ୍ତୁ ଏଠାରେ ଗୋଟିଏ କଥା ସ୍ପଷ୍ଟ ମନେରଖିବାକୁ ହେବ ଯେ, ପିଲା ମନରେ ଜିଜ୍ଞାସା ଓ କୌତୂହଳ ଜାତ କରାଇବା ପାଇଁ ନୂତନ ଉଦ୍ଦୀପକର ଉପସ୍ଥିତି ଆବଶ୍ୟକ ହେଲେ ମଧ୍ୟ ବସ୍ତୁଟି ସମ୍ପୂର୍ଣ୍ଣ ଭାବରେ ନୂତନ ହେବା ଅନାବଶ୍ୟକ, ଯାହାକି ପିଲାମନରେ ଭୟ ସୃଷ୍ଟି କରିବ । ଯେଉଁ ଉଦ୍ଦୀପକ ପିଲାମନରେ ଭୟ ସୃଷ୍ଟି କରାଇବ, ତାହା କେବେହେଲେ ଜିଜ୍ଞାସା ବା କୌତୂହଳ ଜାତ କରାଇ ନପାରେ । ଭୟ ଯେତେ କମ୍ ହେବ ଜିଜ୍ଞାସା ସେତେ ଅଧିକ ଜାଗ୍ରତ ହେବ ।

ଶିଶୁର ଜିଜ୍ଞାସାର ଅଭିବ୍ୟକ୍ତି ମୁଖମଣ୍ଡଳରେ, ଶାରୀରିକ ଲକ୍ଷଣମାନଙ୍କରେ ପ୍ରକାଶ ପାଏ । ଜିଜ୍ଞାସା ଜାତ ହେଲେ କପାଳରେ କୁଞ୍ଚନ ଦେଖାଯାଏ ।

ପ୍ରଥମ ବର୍ଷରେ ଜିଜ୍ଞାସା ଜାତ କରୁଥିବା ଉଦ୍ଦୀପକକୁ ଶିଶୁ ଦେଖିବାକୁ ବା ଧରିବାକୁ ଚେଷ୍ଟାକରେ । ଯେତେବେଳେ ନାନା ଉଦ୍ୟମ ପରେ ସେ ବସ୍ତୁ ନିକଟରେ ପହଞ୍ଚିଯାଏ, ତାକୁ ଧରି ଟାଣେ, ହଲାଏ ବା ବଜାଏ, ତାର କୌତୂହଳ ମେଣ୍ଟାଇବା ପାଇଁ ସେ ଉଦ୍ଦୀପକମାନଙ୍କୁ ତନ୍ନ ତନ୍ନ କରି ପରୀକ୍ଷା କରିବାକୁ ଚେଷ୍ଟାକରେ । ଅନେକ ସମୟରେ ଜ୍ଞାନେନ୍ଦ୍ରିୟ ଓ ପେଶୀମାନଙ୍କୁ ଟଣାଓଟରା କରିବାଦ୍ୱାରା ଜନ୍ତପନ୍ତ ଭାଙ୍ଗିଯାଏ ଏବଂ ପିଲା ଆଘାତ ପାଏ ।

ହର୍ଷ ଓ ଆନନ୍ଦ

ହର୍ଷ ଓ ଆନନ୍ଦ ମନରେ ସନ୍ତୋଷ ଜାତ କରାଏ । ଏହା ଏକ ସକାରାତ୍ମ ପ୍ରକ୍ଷୋଭ ଅଟେ । କ୍ଷୁଦ୍ର ଶିଶୁର ହର୍ଷ ଓ ଆନନ୍ଦ, କୁଁ କାଁ ଶବ୍ଦ, ଅସ୍ପଷ୍ଟ ଭାଷା, ହସିବା, ଗୁରୁଣ୍ଡିବା,

ଚାଲିବା, ଦୌଡ଼ିବା ଇତ୍ୟାଦି କ୍ରିୟାକଳାପରେ ପ୍ରକଟିତ ହୁଏ । ବୟସର ବୃଦ୍ଧି ସହିତ ପିଲା ନିୟନ୍ତ୍ରିତ ଓ ମାର୍ଜିତ ଉପାୟରେ ନିଜର ଆନନ୍ଦ ପ୍ରକାଶ କରେ । ଶିଶୁ ଆନନ୍ଦ ଲାଭ କରିବାପାଇଁ ପରିବେଷ୍ଟନୀ ଯଥେଷ୍ଟ ସୁବିଧା ଯୋଗାଇଥିଲେ ମଧ୍ୟ ଏହା ଶିଶୁର ପ୍ରବୃତ୍ତିକମାନଙ୍କର ସନ୍ତୋଷଦାୟକ ଅଭିବ୍ୟକ୍ତିରୁ ଉତ୍ପନ୍ନ ହୋଇଥାଏ । ପିଲାଟିଏ ମାଟିରେ ଗୋଟିଏ ଶିବମୂର୍ତ୍ତି ଗଠନ କରି ତାକୁ ରଙ୍ଗ ଓ ତୁଳୀ ସାହାଯ୍ୟରେ ଯେତେବେଳେ ଜୀବନ୍ତ କରେ ଏବଂ ସମସ୍ତେ ତାର ଏହି ସୃଷ୍ଟିକୁ ଦେଖି ତାକୁ ପ୍ରଶଂସା କରନ୍ତି, ପିଲା ଅପାର ଆନନ୍ଦ ଲାଭକରେ । ତାର ମୁଖମଣ୍ଡଳରେ ହର୍ଷ ପ୍ରକଟିତ ହୁଏ । ଛୋଟପିଲାମାନେ ଆନନ୍ଦିତ ହେଲାବେଳେ ସେମାନଙ୍କର ସମସ୍ତ ଶରୀର ଉଲ୍ଲସିତ ହୋଇଥାଏ ।

ହର୍ଷ ବା ପ୍ରସନ୍ନତା ଆରମ୍ଭରୁ ଶାରୀରିକ ସ୍ୱାସ୍ଥ୍ୟସହ ସମ୍ବନ୍ଧିତ । ୮ ମାସ ବୟସରେ ଅଧିକାଂଶ କ୍ଷେତ୍ରରେ ଶିଶୁ ନିଜ ଚେଷ୍ଟାରେ ମୁରୁକେଇ ହସେ । ୧ରୁ ୧୧ ବର୍ଷ ବୟସରେ ଶିଶୁ ସହିତ ଖେଳିଲେ ଏବଂ ଶିଶୁ ନିଜର ଖେଳନା ଓ ଅନ୍ୟ ପିଲାଙ୍କ ସହିତ ଖେଳିଲେ ଆନନ୍ଦ ପାଏ ।

ନିଜ ଚେଷ୍ଟାରେ ହସିବା ୨ ବର୍ଷ ପରେ ହୁଏ । ଅନ୍ୟ ପିଲାମାନଙ୍କୁ ଖେଳିବାର ଦେଖିଲେ, ସଙ୍ଗୀତ ବା ଗୀତ ଶୁଣିଲେ ମଧ୍ୟ ପିଲା ଆନନ୍ଦ ଅନୁଭବ କରେ ଏବଂ ହର୍ଷ ଓ ଉଲ୍ଲାସ ତାର ମୁଖମଣ୍ଡଳରେ ପ୍ରକଟିତ ହୁଏ ।

ଯେତେବେଳେ ପିଲା ଯେ କୌଣସି କାର୍ଯ୍ୟକୁ ସଫଳତାର ସହିତ କରିପାରେ ତାର ହର୍ଷ ବୃଦ୍ଧି ପାଏ । ଏହି ବୟସରେ ହସିବା ସହିତ ଗୋଡ଼ ଏବଂ ବାହୁ ମଧ୍ୟ ଗତିଶୀଳ ହୁଏ । ଯେତେବେଳେ ଆନନ୍ଦ ତୀବ୍ର ହୁଏ, ଶିଶୁ ଜୋର୍‌ରେ ହସେ ଏବଂ ଆନନ୍ଦରେ ଚିତ୍କାର କରେ । ଏଥିସହିତ ଶାରୀରିକ ଗତି ଅଧିକ ତୀବ୍ର ହୋଇଯାଏ ।

ହର୍ଷ ଓ ଆନନ୍ଦ ଗୃହର ବାତାବରଣ, ପିତାମାତାଙ୍କର ବ୍ୟବହାର, ପାରିପାର୍ଶ୍ୱିକ ଅବସ୍ଥା ଇତ୍ୟାଦି ଉପରେ ନିର୍ଭର କରେ । ଯଦି ଶିଶୁର ଗୃହ ଓ ଅନ୍ୟାନ୍ୟ ପରିବେଷ୍ଟନୀରେ ବାତାବରଣ ଆନନ୍ଦଦାୟକ ଓ ସୁଖକର ହୋଇଥାଏ ଦୁଃଖଦାୟକ ଓ ଅସୁଖକର ପରି-ବେଷ୍ଟନୀରେ ବାସ କରୁଥିବା ଶିଶୁ ଅପେକ୍ଷା ସେ ଅଧିକ ହର୍ଷ, ଆନନ୍ଦ ଓ ଉଲ୍ଲାସ ଅନୁଭବ କରେ । କିନ୍ତୁ ଶିଶୁ ଯଦି ରୁଗ୍ଣ ବା ଦୁର୍ବଳ ହୋଇଥାଏ ଏବଂ ସର୍ବଦା କ୍ଳାନ୍ତ ଅନୁଭବ କରୁଥାଏ, ଆନନ୍ଦଦାୟକ ପରିବେଷ୍ଟନୀରେ ମଧ୍ୟ ସେ ଆନନ୍ଦ ଅନୁଭବ କରିପାରେ ନାହିଁ । ସ୍ୱାସ୍ଥ୍ୟ ଉତ୍ତମ ହୋଇଥିଲେ, ବାଧାବିଘ୍ନ ଅତିକ୍ରମ କରି କଷ୍ଟକର କାର୍ଯ୍ୟରେ ସଫଳତା ହାସଲ କଲେ, ବୟସ୍କ ବ୍ୟକ୍ତି ପିଲାଙ୍କ ସହିତ ଖେଳିଲେ କିମ୍ବା ପିଲାଙ୍କୁ ଚାହିଁ ହସିଲେ ପିଲା ଆନନ୍ଦ ପାଏ ।

ବଡ଼ ପିଲାମାନେ ଅନ୍ୟ ପିଲାମାନଙ୍କୁ ଥଟ୍ଟା ବା ବ୍ୟଙ୍ଗକରି ବିଭିନ୍ନ କୀଟପତଙ୍ଗ ଓ ଗୃହପାଳିତ ପଶୁମାନଙ୍କୁ ଓ ସାଙ୍ଗସାଥୀମାନଙ୍କୁ ହଇରାଣ କରି ଆନନ୍ଦ ଅନୁଭବ କରନ୍ତି । କାରଣ ଏପରି କ୍ଷେତ୍ରରେ ବିପଦରେ ପଡ଼ିଥିବା ଜୀବମାନଙ୍କ ଅପେକ୍ଷା ସେ ନିଜକୁ ଉଚ୍ଚସ୍ତରରେ ଥିବା ଭାବି ଆନନ୍ଦ ଲାଭକରେ ।

ବୟସ ବୃଦ୍ଧି ହେଲେ ଯୌନସମ୍ବନ୍ଧୀୟ ଆଲୋଚନାରେ ରତ ହୋଇ ବାଳକ-ବାଳିକାମାନେ ଆନନ୍ଦ ଅନୁଭବ କରନ୍ତି ।

ପିଲାର ସମସ୍ୟାବହୁଳ ଜୀବନକାଳରେ ଅନେକ ଦୁଃଖ ଓ ହତାଶା ଜାତ ହୁଏ । ସଂସାରରେ ବଞ୍ଚିରହିବା ପାଇଁ ସୁଖ ଓ ଶାନ୍ତି ନିମନ୍ତେ ହର୍ଷ, ଉଲ୍ଲାସ ଏବଂ ଆନନ୍ଦ ଏକାନ୍ତ ବାଞ୍ଛନୀୟ । ସୁଖଶାନ୍ତିରେ ବଞ୍ଚିରହିବାକୁ ଏବଂ ଜୀବନର ପ୍ରତି ମୁହୂର୍ତ୍ତକୁ ଉପଭୋଗ କରିବା ପାଇଁ ଏହା ମନୁଷ୍ୟର ତତ୍ପରତା କରୁଥିବାରୁ ଏହାର ଉତ୍ତମ ବିକାଶ ଅପରିହାର୍ଯ୍ୟ ।

ଈର୍ଷା—ସ୍ନେହ ଅଭାବରୁ ବା କୌଣସି ଭଗ୍ନାଶାର ପ୍ରତିକ୍ରିୟା ସ୍ୱରୂପ ଶିଶୁ ମନରେ ଯେଉଁ କ୍ରୋଧ ଉଦ୍ରେକ ହୁଏ ଈର୍ଷା ତାହାର ଏକ ସାଧାରଣ ପରିପ୍ରକାଶ । ଈର୍ଷା ସର୍ବଦା ସାମାଜିକ ପରିସ୍ଥିତିରେ ଜାତ ହୁଏ ଏବଂ ଅନ୍ୟମାନଙ୍କ ପ୍ରତି ନିର୍ଦ୍ଦେଶିତ ହୋଇଥାଏ । ଶିଶୁମାନଙ୍କର ଈର୍ଷା ଉପରେ କେତେକ ଅଧ୍ୟୟନ କରି ଜଣାଯାଇଛି ଯେ କ୍ଷୁଦ୍ର ସହୋଦର ବଡ଼ ହେବା ପରେ ସାଧାରଣତଃ ଈର୍ଷାର ସୂତ୍ରପାତ ହୁଏ ।

ଯେତେବେଳେ ପିଲାର ବୟସ ୨ ଠାରୁ ୫ ବର୍ଷ ବୟସ ମଧ୍ୟରେ ହୋଇଥାଏ ଏବଂ ତାର ଏକ କ୍ଷୁଦ୍ର ସହୋଦର ଜାତ ହୁଏ, ପିତାମାତାଙ୍କର ଧ୍ୟାନ ବିଭକ୍ତ ହୋଇଯାଏ ଓ ନବାଗତ ଶିଶୁଠାରେ ଧ୍ୟାନ ଅଧିକ କେନ୍ଦ୍ରୀଭୂତ ହୁଏ । ଏହା ଫଳରେ ଶିଶୁ ମନରେ ଈର୍ଷା ଜାତ ହୁଏ । ଏହା ବ୍ୟତୀତ ପ୍ରସିଦ୍ଧ ମନସ୍ତତ୍ତ୍ୱବିତ୍ ଫ୍ରଏଡ଼ଙ୍କ ମତରେ ପିତାଙ୍କର ମାତାଙ୍କ ପ୍ରତି ସ୍ନେହଭାବ ଶିଶୁ ପର୍ଯ୍ୟବେକ୍ଷଣ କଲେ, ତାହା ପ୍ରକାଶ ନକରି ପିତାଙ୍କ ପ୍ରତି ଈର୍ଷାନ୍ୱିତ ହୁଏ । କାରଣ ମା'ଙ୍କୁ ସ୍ନେହ କରିବାର ଅଧିକାର କେବଳ ତାର ରହିଛି ବୋଲି ସେ ଧରିନିଏ । ୨।୩ ବର୍ଷ ବେଳକୁ ଈର୍ଷା ସର୍ବାଧିକ ହୋଇଥାଏ । କାଳକ୍ରମେ ବାଳକର ବୃଦ୍ଧି ସହିତ ଜ୍ଞାନାତ୍ମକ ଓ ବୌଦ୍ଧିକ ବିକାଶ ଘଟେ । ପରିବେଷ୍ଟନୀ ସହିତ ଚଳପ୍ରଚଳ ମଧ୍ୟ ବୃଦ୍ଧି ପାଏ । ବିଭିନ୍ନ ଘଟଣାକୁ ବୁଝିବା ଓ ପର୍ଯ୍ୟବେକ୍ଷଣ କରିବାର ଶକ୍ତି ବୃଦ୍ଧି ପାଇବା ସହିତ ତାର ଈର୍ଷାର ପରିମାଣ ହ୍ରାସପାଏ ।

## ଈର୍ଷାର କାରଣ

ଶିଶୁମାନେ ପରିବାରରେ ଏକ ନୂତନ ସହୋଦର ଜାତହେଲେ ସାଧାରଣତଃ ଈର୍ଷାନ୍ୱିତ ହୋଇଥାନ୍ତି । ପରିବାରର ଅନ୍ୟ ଏକ ଶିଶୁ ଜାତ ହେବା ପୂର୍ବରୁ ପ୍ରଥମ ଶିଶୁ ପିତାମାତା ଏବଂ ଅନ୍ୟମାନଙ୍କଠାରୁ ଯଥେଷ୍ଟ ଲାଳନପାଳନ ଏବଂ ସ୍ନେହ ଆଦର ପାଇବାରୁ ବଞ୍ଚିତ ହୁଏ । ନବଜାତଶିଶୁ ଅନ୍ୟ ଶିଶୁ ଅପେକ୍ଷା ଅଧିକ ନିର୍ଭରଶୀଳ ହୋଇଥିବାରୁ ପିତା-ମାତା ତାର ଅଧିକ ଯତ୍ନ ନେଇଥାନ୍ତି । ଏହି କାରଣରୁ ପିଲା ନବଜାତ ଶିଶୁ ପ୍ରତି ଈର୍ଷାଳୁ ହୁଏ । ପୂର୍ବରୁ ସେ ସର୍ବଦା ମା'ଙ୍କ ପାଖରେ ଶୋଉଥିଲେ ମଧ୍ୟ ବର୍ତ୍ତମାନ ସେଥିରୁ ବଞ୍ଚିତ ହୁଏ । ନବଜାତ ଶିଶୁ ତାର ସ୍ଥାନ ଅଧିକାର କରେ । ହଠାତ୍ ଏପରି ପରିବର୍ତ୍ତନ ସହିତ ନିଜକୁ ଉପଯୋଜନ କରିନପାରି ସେ ମନେକରେ ଯେ ତା ପ୍ରତି ଚରମ ଅବହେଳା କରାଯାଉଛି ।

ସେଓ୍ୱାଲଙ୍କ ମତରେ ପିତାମାତାଙ୍କର ପ୍ରଶିକ୍ଷଣ ଓ ଗୃହର ବାତାବରଣ ତଥା ଶିଶୁ ପ୍ରତି ସେମାନଙ୍କର ବ୍ୟବହାର ଉପରେ ଈର୍ଷାର ଉଦ୍ରେକ ଅନେକାଂଶରେ ନିର୍ଭର କରେ ।

ଦୁଇଟି ପିଲାଙ୍କ ମଧ୍ୟରେ ଅସୁଖକର ତୁଳନାକରି ଜଣେ ପିଲାକୁ ପ୍ରଶଂସାକରି ଅନ୍ୟପିଲାକୁ ନିନ୍ଦାକଲେ ନିନ୍ଦିତ ହେଉଥିବା ପିଲା ପ୍ରଶଂସିତ ପିଲାକୁ ଈର୍ଷାକରେ । ତେଣୁ ପରିସ୍ଥିତି ଯାହା ହେଉ ନା କାହିଁକି ଦୁଇଟି ପିଲାଙ୍କ ମଧ୍ୟରେ ଅସୁଖକର ତୁଳନା କରିବା ପିତାମାତା ବା ଶିକ୍ଷକଙ୍କର ଆଦୌ ଉଚିତ ନୁହେଁ । ଏହା ପିଲାର କ୍ରିୟାକଲାପକୁ ଉନ୍ନତ ଓ ମାର୍ଜିତ କରିବା ପରିବର୍ତ୍ତେ ତାକୁ ଅଧିକ ଈର୍ଷାନ୍ୱିତ କରିଥାଏ । ଏହାର କାରଣ ହେଲା, ପ୍ରକୃତ କାରଣ ବୁଝିବାକୁ ଚେଷ୍ଟା କରିବା ପରିବର୍ତ୍ତେ ସେ ଭାବେ ଯେ, ପିତାମାତ, ତା ଅପେକ୍ଷା ତାର ସହୋଦରକୁ ଅଧିକ ସ୍ନେହ କରୁଛନ୍ତି ଓ ତା'ପ୍ରତି ପକ୍ଷପାତ ବ୍ୟବହାର କରୁଛନ୍ତି । ଜରସିଲ୍ଡଙ୍କ ମତରେ ପ୍ରତିଯୋଗିତାମୂଳକ ମନୋଭାବ ପିଲାକୁ ସ୍ନେହୀ, ସହାନୁଭୂତିଶୀଳ, ସକ୍ରିୟ ଓ ଅଭିପ୍ରେରିତ କରିବା ପରିବର୍ତ୍ତେ ତାର ଈର୍ଷାକୁ ତ୍ୱରାନ୍ୱିତ କରିବାରେ ସାହାଯ୍ୟ କରିଥାଏ । ଏହିପରି ଭାବରେ ପିତାମାତା ପିଲାକୁ ଈର୍ଷାଳୁ କରିବାରେ ଯଥେଷ୍ଟ ଉପାଦାନ ଯୋଗାଇଥାନ୍ତି । ଲେଭିଙ୍କ ମତରେ ମା'ଙ୍କ ପ୍ରତି ଅଧିକ ଅନୁରକ୍ତ ହେଲେ ପିଲାର ଈର୍ଷା ବୃଦ୍ଧିପାଏ । କାରଣ ସେ ଚାହେଁ ଯେ ତା ବ୍ୟତୀତ ମା ଆଉ କାହାପ୍ରତି ସ୍ନେହ ଆଦର ଓ ଅନୁରାଗ ପ୍ରଦର୍ଶନ ନ କରନ୍ତୁ । ଯଦି ପ୍ରକୃତ ଜୀବନରେ ତାହା ସମ୍ଭବ ନହୁଏ ପିଲା ଈର୍ଷାନ୍ୱିତ ହୁଏ ।

ପରିବାରରେ ଦୁଇଟି ପିଲାଙ୍କର ବୟସ ୨।୪ ବର୍ଷ ତାରତମ୍ୟ ରହିଲେ ଉଭୟଙ୍କ ମଧ୍ୟରେ ଈର୍ଷାଭାବ ପ୍ରକାଶ ପାଏ । କାରଣ ଉଭୟେ ମାନ ଓ କାହାର ବୁଝିବାର ଶକ୍ତି ହୋଇନଥାଏ । ସେଥିପାଇଁ କଥାରେ ଅଛି, ତଳଉପର ପିଲା, କେହି କାହାର ଛିଙ୍କ ଦେଖିପାରନ୍ତି ନାହିଁ ।

ଏହା ସୁସ୍ପଷ୍ଟ ଯେ ମୁଖ୍ୟତଃ ପିତାମାତାଙ୍କର ଓ ଶିକ୍ଷକଙ୍କର ଶିଶୁ ପ୍ରଶିକ୍ଷଣ ପଦ୍ଧତି, ଅନ୍ୟ ଶିଶୁଙ୍କ ସହିତ ତୁଳନା ତଥା ପକ୍ଷପାତ ବ୍ୟବହାରରୁ ଈର୍ଷା ଜାତ ହୋଇଥାଏ । ତେଣୁ ଏଥିପ୍ରତି ପିତାମାତା ତଥା ଶିକ୍ଷକଙ୍କର ଯଥେଷ୍ଟ ସତର୍କତା ଅବଲମ୍ବନ କରିବା ଆବଶ୍ୟକ । ପରିବାରର ସନ୍ତାନସନ୍ତତିଙ୍କ ପ୍ରତି ମଧ୍ୟ ପକ୍ଷପାତ ବ୍ୟବହାର କରିବା ଉଚିତ୍ ନୁହେଁ । ପିଲାଟି ଯେତେ କୁତ୍ସିତ ଓ କୁଗୁଣର ଅଧିକାରୀ ହୋଇଥାଉ ନା କାହିଁକି ତାକୁ ଏପରି ଭାବରେ ପାଳନ କରିବା ଆବଶ୍ୟକ ଯେପରିକି ତା ମନ ମଧ୍ୟରେ ଧାରଣା ନ ହୁଏ ଯେ ପିତାମାତା ତାକୁ ନ୍ୟୂନ ଦୃଷ୍ଟିରେ ଦେଖୁଛନ୍ତି । ଦ୍ୱିତୀୟତଃ, ପିତାମାତା ଓ ଶିକ୍ଷକଙ୍କର ତୀବ୍ର ସମାଲୋଚନା ଓ ଅସୁଖକର ତୁଳନା ଯୋଗୁ ସେ ନିଜକୁ ହେୟ, ମୂଲ୍ୟହୀନ ଓ ନ୍ୟୂନ କରି ଦେଖିବାକୁ ଆରମ୍ଭକରେ । ଅଧିକନ୍ତୁ; ଏହାଦ୍ୱାରା ଉଭୟଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ଜାତ ହୁଏ ଏବଂ ତିରସ୍କୃତ ବା ସମାଲୋଚିତ ହେଉଥିବା ଶିଶୁ ପ୍ରତିଦ୍ୱନ୍ଦ୍ୱୀ ପ୍ରତି ଈର୍ଷାନ୍ୱିତ ହୋଇ ତାର କ୍ଷତି କରିବାକୁ ସର୍ବଦା ଚେଷ୍ଟା କରେ ।

ଅବଶ୍ୟ ଏହା ଅସ୍ୱୀକାର କରିହେବ ନାହିଁ ଯେ, ଈର୍ଷା ଏକ ନ କାରୀ ପ୍ରକ୍ଷୋଭ ହେଲେ ମଧ୍ୟ ଏହା ବ୍ୟକ୍ତିକୁ ପ୍ରତିଯୋଗିତା କରିବାକୁ ପ୍ରେରଣା ଯୋଗାଏ । ତେବେ ଈର୍ଷାର ବିକାଶ ଏପରି ହେବା ଉଚିତ୍ ଯାହାଦ୍ୱାରା କି ଏହା ପିଲା ମନରେ ପ୍ରତିଦ୍ୱନ୍ଦ୍ୱିତା ଜାତକରିବା ପରିବର୍ତ୍ତେ ପ୍ରତିଯୋଗିତା ଭାବ ଜାତ କରାଇପାରିବ ।

# ଦ୍ୱାଦଶ ଅଧ୍ୟାୟ

# ଭାଷା ବିକାଶ

ଭାଷା ହିଁ ମାନବର ସର୍ବଶ୍ରେଷ୍ଠ ଅଭିବ୍ୟକ୍ତି, ଭାଷା ସାହାଯ୍ୟରେ ସେ ନିଜର ଇଚ୍ଛା, ଆକାଂକ୍ଷା, ଅଭିବ୍ୟକ୍ତି, ଭାବନା, ଅନୁଭବ ଓ ଚିନ୍ତାଧାରାକୁ ଅନ୍ୟ ନିକଟରେ ସୁରୁଖୁରୁରେ ପହଞ୍ଚାଇବାକୁ ସକ୍ଷମ ହୋଇଥାଏ । ନିଜର ଅଭିବ୍ୟକ୍ତିକୁ ପ୍ରକାଶ କରିବା ବ୍ୟତୀତ ଜ୍ଞାନଲାଭ କରିବା, ଅନ୍ୟ ସହ ସମ୍ବନ୍ଧ ସ୍ଥାପନ କରିବା ଓ ମାନବ ସମାଜର ବିଭିନ୍ନ ଆବଶ୍ୟକତା ପୂରଣ କରିବା ମଧ୍ୟ ଭାଷାର ଅନ୍ୟ ଉଦ୍ଦେଶ୍ୟ ଅଟେ । ଭାଷା ମାନବକୁ ସାମାଜିକ କରେ । ମାର୍ଜିତ କରେ । ମନୁଷ୍ୟ ଭାଷା କହିବାକୁ ସକ୍ଷମ ହୋଇନଥିଲେ ପଶୁ ସହ କେତେକାଂଶରେ ସମାନ ହୋଇଥାନ୍ତା ।

ଜନ୍ମ ପରେ ପରେ ଶିଶୁ ନିଜର ବିଭିନ୍ନ ଆବଶ୍ୟକତାଗୁଡ଼ିକୁ ପୂରଣ କରିବା ନିମନ୍ତେ ଭାଷା ଶିକ୍ଷା କରିବାକୁ ଆଗ୍ରହ ପ୍ରକାଶ କରିଥାଏ । ଭାଷା ଶିକ୍ଷା କରିବା ପୂର୍ବରୁ ଶିଶୁ କ୍ରନ୍ଦନ, ଠାର ଓ ଅଙ୍ଗଭଙ୍ଗୀ ମାଧ୍ୟମରେ ତାର ଆବଶ୍ୟକତାଗୁଡ଼ିକୁ ପୂରଣ କରିବାକୁ ଚେଷ୍ଟା କରିଥାଏ । ଜନ୍ମ ପରେ ପରେ ଶିଶୁର ଭାଷା କ୍ରନ୍ଦନ ରୂପରେ ପ୍ରକାଶ ପାଏ । ଶାରୀରିକ, ମାନସିକ ଓ ବ୍ୟକ୍ତିଗତ ଅଭାବ ଅସୁବିଧାକୁ ଦୂର କରିବା ପାଇଁ ଶିଶୁ କ୍ରନ୍ଦନର ଆଶ୍ରୟ ନେଇଥାଏ । ଏହି କ୍ରନ୍ଦନରୁ ଆସ୍ତେ ଆସ୍ତେ ଶବ୍ଦ ବିକଶିତ ହୁଏ । ଏ ଦୃଷ୍ଟିରୁ କ୍ରନ୍ଦନକୁ ଭାଷା ବିକାଶର ପ୍ରଥମ ସ୍ତର ବୋଲି କୁହାଯାଇପାରେ । ପ୍ରାୟ ୭/୮ ମାସ ପର୍ଯ୍ୟନ୍ତ କ୍ରନ୍ଦନ ମାଧ୍ୟମରେ ଶିଶୁ ତାର ଭାବ ଓ ଭାଷାକୁ ପ୍ରକାଶ କରେ । ଶିଶୁର କ୍ରନ୍ଦନକୁ ବିଶ୍ଳେଷଣ କଲେ ଜଣାଯାଏ ଯେ ଏହି କ୍ରନ୍ଦନରୁ ଅଧିକାଂଶ ଶବ୍ଦ ସ୍ୱରବର୍ଣ୍ଣ ରୂପେ ବିକଶିତ ହୁଏ । ବ୍ୟଞ୍ଜନ ବର୍ଣ୍ଣ ପରେ ଜାତ ହୁଏ ।

### ଅସ୍ଫୁଟ ଭାଷା

ଜନ୍ମ ହେବାର ୭/୮ମାସ ମଧ୍ୟରେ ଶିଶୁର ସ୍ୱରଯନ୍ତ୍ର ବିକଶିତ ହୁଏ । କ୍ରନ୍ଦନ କୁଁ କାଁ ହୁଁ ହାଁ, ବା ବା, ମା ମା ଶବ୍ଦରୁ ଭାଷା ବିକଶିତ ହୁଏ । ଏହିସବୁ ଅସ୍ଫୁଟ ଭାଷାକୁ ଭାଷା ବିକାଶର ପ୍ରାରମ୍ଭିକ ସ୍ତର ବୋଲି କୁହାଯାଇପାରେ । ୭/୮ ମାସ ବେଳକୁ କିଛି ସ୍ୱର ଓ କିଛି ବ୍ୟଞ୍ଜନ ବର୍ଣ୍ଣ ସଂଯୁକ୍ତ କରି ଶିଶୁ କିଛି କଥା କହିବାକୁ ଶିଖେ । ଏହି ଅସ୍ଫୁଟ ଭାଷା ଅନ୍ୟମାନେ କହୁଥିବା ଶବ୍ଦର ଅନୁକରଣ କରିବାରେ ସାହାଯ୍ୟ ଓ ସ୍ୱରତନ୍ତ୍ରର ବ୍ୟାୟାମ କରାଉଥିବାରୁ ଭାଷା ବିକାଶ ପାଇଁ ଯଥେଷ୍ଟ ମହତ୍ତ୍ୱପୂର୍ଣ୍ଣ ଅଟେ । ନିଜେ କହୁଥିବା ବା ବା ମା ମା, ଦା ଦା ପ୍ରଭୃତି ଶୁଣିବା ଦ୍ୱାରା ଶିଶୁ ମନରେ ଏକ ଉତ୍ତେଜକ ପ୍ରତିକ୍ରିୟା ଜାତ ହୁଏ । ଯାହା ସେ ନିଜେ କହେ, ତାକୁ ଶୁଣେ ଓ ଶୁଣିସାରିଲା ପରେ ପୁଣି ତାକୁ କହେ ।

ଏହିପରି ବୃତ୍ତାକାର ପଦ୍ଧତିରେ କହିବା ଓ ଶୁଣିବା କାର୍ଯ୍ୟ ଚାଲିଥାଏ ଏବଂ ଏହି ପ୍ରକ୍ରିୟାରୁ ଭାଷାର ବିକାଶ ଘଟିଥାଏ । ସଙ୍କେତ ବା ଠାର ଭାଷା ବିକାଶର ଅନ୍ୟ ଏକ ସ୍ତର । ପ୍ରତ୍ୟେକ ଶିଶୁ ପ୍ରାରମ୍ଭିକ ସ୍ତରରେ ଭାଷାର ଅଭାବ ପୂରଣ କରିବା ପାଇଁ ସଙ୍କେତକୁ ବହୁଳ ଭାବରେ ପ୍ରୟୋଗ କରନ୍ତି । କିନ୍ତୁ ଏହି ସ୍ତର ଶୀଘ୍ର ସମାପ୍ତ ହୋଇଯାଏ ଓ ଭାଷାରେ ଶବ୍ଦର ପ୍ରୟୋଗ ଆରମ୍ଭ ହୋଇଯାଏ ।

ଭାଷା ବିକାଶ, ପରିପକ୍ୱତା ଓ ଶିକ୍ଷଣ ଉପରେ ନିର୍ଭର କରିଥାଏ । ଓଠ, ଜିଭ ଓ ମାଂସପେଶୀମାନଙ୍କର ସାମୂହିକ କ୍ରିୟା ଯୋଗୁଁ କଥା କହିବା ସମ୍ଭବ ହୋଇଥାଏ । ଏଣୁ ଭାଷା ଶକ୍ତି ପରିପକ୍ୱ ନହେଲେ କଥା କହି ଶିଖିବା ସମ୍ଭବପର ହୁଏନାହିଁ । ୧୨ରୁ ୧୬ ମାସ ଭିତରେ ଶିଶୁର ଭାଷା ବିକାଶ ତ୍ୱରାନ୍ୱିତ ହୋଇଥାଏ । ଏହି ସମୟ ମଧ୍ୟରେ ସେ କଥା କହିବାକୁ ପ୍ରୋତ୍ସାହନ, ପ୍ରେରଣା ଓ ସୁଯୋଗ ପାଇଲେ ତାର ଭାଷାର ଦ୍ରୁତ ବିକାଶ ଘଟିଥାଏ । କିନ୍ତୁ ଏସବୁ ସୁବିଧା ନମିଳିଲେ ତାର ଭାଷା ବିକାଶ ବ୍ୟାହତ ହୁଏ ଓ ତାର ଭାବାତ୍ମକ ଜୀବନ ଉପରେ ମଧ୍ୟ ଏହାର ମନ୍ଦ ପ୍ରଭାବ ପଡ଼ିଥାଏ । ଠିକ୍ ଭାବରେ କଥା କହି ନ ଶିଖିବା ଯୋଗୁଁ ତାର ଭାବନା, ବିଚାର ଓ ଚିନ୍ତାଧାରା ଅବରୁଦ୍ଧ ହୋଇଯାଏ । ତାର ଭାବାତ୍ମକ ଜୀବନ ଉପରେ ମଧ୍ୟ ମନ୍ଦ ପ୍ରଭାବ ପଡ଼ିଥାଏ । ସଂକ୍ଷେପରେ କହିବାକୁ ଗଲେ, ତାର ଭାବନା, ବିଚାର ଓ ଚିନ୍ତାଧାରା ଅବରୁଦ୍ଧ ହୋଇ ରହିଯାଏ ଏବଂ ଅନ୍ୟ-ମାନଙ୍କ ନିକଟରେ ପହଞ୍ଚିପାରେ ନାହିଁ । ପରିଣାମରେ ଶିଶୁର ବ୍ୟକ୍ତିତ୍ୱର ସୁସ୍ଥ ବିକାଶ ବ୍ୟାହତ ହୁଏ ।

ଭାଷା ବିକାଶ ଚାରୋଟି ମୁଖ୍ୟ କ୍ରିୟା ଉପରେ ନିର୍ଭର କରେ ।

(୧) ଅନ୍ୟମାନଙ୍କର ଭାଷାକୁ ବୁଝିବା

(୨) ଶବ୍ଦ ଶିଖିବା ଓ ଶବ୍ଦାବଳୀକୁ ଉନ୍ନତ କରିବା

(୩) ଶବ୍ଦକୁ ଯୋଡ଼ି ବାକ୍ୟ ତିଆରି କରିବା

(୪) ଠିକ୍ ଠିକ୍ ବା ଶୁଦ୍ଧ ଉଚ୍ଚାରଣ କରିବା

ଶିଶୁ ଯେତୋଟି ଶବ୍ଦର ଅର୍ଥ ବୁଝେ, ତାଠାରୁ ଯଥେଷ୍ଟ କମ୍ ଶବ୍ଦ ପ୍ରୟୋଗ କରେ । ୧୮ ମାସ ବୟସ ପର୍ଯ୍ୟନ୍ତ ଅଧିକାଂଶ ଶବ୍ଦାବଳୀ ସହିତ ସଙ୍କେତର ପ୍ରୟୋଗ ମଧ୍ୟ ଆବଶ୍ୟକ ହୁଏ ଏବଂ ସେ ଶବ୍ଦମାନଙ୍କର ଉଚିତ ଅର୍ଥ ବୁଝିପାରେ । ବୟସର ବୃଦ୍ଧି ସହିତ ଅର୍ଥ ଗ୍ରହଣର ଶକ୍ତି ମଧ୍ୟ ବୃଦ୍ଧି ପାଇଥାଏ ।

ଶବ୍ଦାବଳୀର ବିକାଶକୁ ବିଶ୍ଳେଷଣ କଲେ ଜଣାଯାଏ ଯେ ଶିଶୁ ପ୍ରଥମେ ସାଧାରଣ ଶବ୍ଦ ଶିଖେ ଓ ପରେ ବିଶିଷ୍ଟ ଶବ୍ଦାବଳୀ ଶିଖିଥାଏ; ଯାହାକୁ କେବଳ ବିଶେଷ ଅବସ୍ଥାରେ

ପ୍ରସ୍ତୋର କରାଯାଏ । ଭିନ୍ନ ଭିନ୍ନ ସ୍ତରରେ ଶିଶୁର ସାଧାରଣ ଶବ୍ଦାବଳୀ ବିଶିଷ୍ଟ ଶବ୍ଦାବଳୀ ଅପେକ୍ଷା ଅଧିକ ହୁଏ । ପ୍ରଥମ ଦୁଇବର୍ଷରେ ଶବ୍ଦାବଳୀର ବୃଦ୍ଧି ମନ୍ଥର ଗତିରେ ଘଟିଥାଏ । ୫ ବର୍ଷ ବୟସ ବେଳକୁ ଏହା କିଛି ପରିମାଣରେ ବୃଦ୍ଧିପାଏ ଏବଂ ବିଦ୍ୟାଳୟରେ ପ୍ରବେଶ କଲାବେଳକୁ ଏହି ବୃଦ୍ଧିର ଗତି କ୍ଷିପ୍ରତର ହୋଇଥାଏ । ୫ମ ୬ଷ୍ଠ ଶ୍ରେଣୀରେ ପଢୁଥିଲା ବେଳକୁ ଏକ ସାଧାରଣ ପିଲା ୫୦ରୁ ୮୦ ହଜାର ଯାଏ ଶବ୍ଦ ଜାଣିଥାଏ । କିନ୍ତୁ ଯେଉଁମାନଙ୍କର ଭାଷା ବିକାଶ ପାଇଁ ଉପଯୁକ୍ତ ପରିବେଶ ଓ ପ୍ରୋତ୍ସାହନ ଯୋଗାଇ ଦିଆନଯାଏ, ସେମାନଙ୍କ ଶବ୍ଦ ଭଣ୍ଡାରରୁ ଶବ୍ଦାବଳୀର ସଂଖ୍ୟା ହ୍ରାସ ପାଇବାକୁ ଲାଗେ ।

ଭାଷା ଅଧିକାଂଶତଃ ଅନୁକରଣରୁ ଶିକ୍ଷା କରାଯାଇଥାଏ । ଅନୁକରଣ କରୁଥିବା ଭାଷା ଓ କଥାରେ ଭୁଲ ତଥା ଦୋଷ ରହିଲେ ଏବଂ ଭାଷା ଶିକ୍ଷା କରିବାରେ ଅବସର ଓ ସୁଯୋଗର ଅଭାବ ରହିଲେ ପିଲାର ଭାଷା ବିକାଶ ବ୍ୟାହତ ହେବା ସଙ୍ଗେ ସଙ୍ଗେ ତାହା ତ୍ରୁଟିପୂର୍ଣ୍ଣ ହୋଇଥାଏ । ଏଣୁ ପରିବାରର ଲୋକେ ପିଲା ସହିତ ଯଥେଷ୍ଟ କଥାବାର୍ତ୍ତା କଲେ ବା କଥାବାର୍ତ୍ତା କରିବାପାଇଁ ତାକୁ ଉତ୍ସାହିତ କଲେ ଏବଂ ତା ଆଗରେ ନମୁନା ସ୍ୱରୂପ ଉଚିତ ଓ ଆଦର୍ଶ ଭାଷା ବ୍ୟବହାର କଲେ ପିଲାର ଉତ୍ତମ ଭାଷା ବିକାଶ ହୋଇଥାଏ । ମୋଟ ଉପରେ ଶିଶୁ ଆଗରେ ଭଲ ଉଚ୍ଚାରଣର ଆଦର୍ଶ ଦେଖାଇଲେ ଏବଂ ଭଲ ଭାଷା ବ୍ୟବହାର କଲେ, ଧୀରେ ଧୀରେ ଓ ପରିଷ୍କାର ଭାବରେ କଥା କହିଲେ ; ଶିଶୁ ପ୍ରତ୍ୟେକ ଧ୍ୱନି ପରିଷ୍କାର ଶୁଣିପାରେ ଏବଂ ସଠିକ ଭାବରେ ଶବ୍ଦର ଉଚ୍ଚାରଣ କରିପାରେ । ଯେ ପର୍ଯ୍ୟନ୍ତ ଠିକ୍ ଭାବରେ ଶିଶୁ ଶବ୍ଦର ଉଚ୍ଚାରଣ କରିନପାରିଛି, ଶବ୍ଦକୁ ଆବୃତ୍ତି କରି ବାରମ୍ବାର କହିବାପାଇଁ ଶିଶୁର ଉତ୍ସାହ ବଢ଼ାଇବା ଆବଶ୍ୟକ ।

ବିଭିନ୍ନ ଗବେଷଣାର ଫଳାଫଳରୁ ଜଣାଯାଇଛି ଯେ ମଧ୍ୟବିତ୍ତ ପରିବାରର ପିତାମାତା ତାଙ୍କର ପିଲାଙ୍କ ସହିତ ଅଧିକ କଥାବାର୍ତ୍ତା କରୁଥିବାରୁ ସେମାନଙ୍କର ଶିଶୁମାନେ ପ୍ରଥମ ବର୍ଷର ଦ୍ୱିତୀୟାର୍ଦ୍ଧରେ ନିମ୍ନ ସାମାଜିକ ଆର୍ଥିକ ସ୍ତରର ଶିଶୁଙ୍କ ଅପେକ୍ଷା ଅଧିକ ମାତ୍ରାରେ ଶବ୍ଦ ଉଚ୍ଚାରଣ କରନ୍ତି । ଏହା ମଧ୍ୟ ପ୍ରମାଣିତ ହୋଇଛି ଯେ ସାମାଜିକ ଉଦ୍ଦୀପନା ଓ ଉଚିତ ପ୍ରୋତ୍ସାହନର ଅଭାବ ଘଟିଲେ ପିଲାର ସ୍ୱର ଓ ଭାଷା ବିକାଶ ବ୍ୟାହତ ହୁଏ । ବିଭିନ୍ନ ସଂସ୍ଥା, ଅନାଥ ଆଶ୍ରମ ଓ ଅନୁଷ୍ଠାନମାନଙ୍କରେ ଅବହେଳିତ ଅବସ୍ଥାରେ ବାଲ୍ୟକାଳରୁ ଲାଳିତ ପାଳିତ ହେଉଥିବା ଶିଶୁମାନଙ୍କୁ ଲକ୍ଷ୍ୟ କଲେ ଏହି ତଥ୍ୟର ସତ୍ୟତା ଉପଲବ୍ଧି କରିହୁଏ ।

## ଭାଷା ବିକାଶକୁ ପ୍ରଭାବିତ କରୁଥିବା ଉପାଦାନ ସମୂହ

ପାରିବାରିକ, ସାମାଜିକ ଓ ଆର୍ଥିକ ଅବସ୍ଥାରେ ଭିନ୍ନତା ଯୋଗୁଁ ଶିଶୁମାନଙ୍କର ଭାଷା ବିକାଶରେ ଭିନ୍ନତା ଲକ୍ଷ୍ୟ କରାଯାଏ । ସେମାନଙ୍କର ଶବ୍ଦାବଳୀର ବିସ୍ତାର, ଶୁଦ୍ଧତା ଓ

ଉଚ୍ଚାରଣ ଇତ୍ୟାଦିରେ ପ୍ରତ୍ୟେକ ସ୍ତରରେ କିଛି ନା କିଛି ଭିନ୍ନତା ରହିବାର ଲକ୍ଷ୍ୟ କରାଯାଏ । ଭାଷା ବିକାଶକୁ ପ୍ରଭାବିତ କରୁଥିବା କେତେକ ସାଧାରଣ ଉପାଦାନ ନିମ୍ନରେ ପ୍ରଦତ୍ତ ହେଲା ।

## ପରିବେଶ

ଉନ୍ନତ ପରିବେଶ ପ୍ରାରମ୍ଭରୁ ଆଦର୍ଶ ଭାଷା ଶିକ୍ଷା କରିବାରେ ଯଥେଷ୍ଟ ଖାଦ୍ୟ ଯୋଗାଇଥାଏ । ଏଥି ସହିତ ନୂତନତ୍ୱ, ପ୍ରୋତ୍ସାହନ ଓ ଉପଯୁକ୍ତ ଉଦ୍ଦୀପକ ଭାଷା ବିକାଶକୁ ତ୍ୱରାନ୍ୱିତ କରିଥାଏ । ସଂସ୍ଥାମାନଙ୍କରେ ପାଳିତ ଶିଶୁମାନଙ୍କୁ ଲକ୍ଷ୍ୟ କରି ଦେଖାଯାଇଛି ଯେ ଧାଈ ଓ ପାଳନକର୍ତ୍ତ୍ରୀମାନେ ଏହି ପିଲାମାନଙ୍କ ସହ ଅଳ୍ପ କଥା କହୁଥିବାରୁ ସେମାନେ କଥା କହିବାକୁ ଓ ଶିଖିବାକୁ ଯଥେଷ୍ଟ ଉତ୍ସାହ ଓ ଉଦ୍ଦୀପନା ପା'ନ୍ତି ନାହିଁ । ସେମାନଙ୍କର ଭାଷା ବିକାଶରେ କେବଳ ଶିଥିଳତା ଦୃଷ୍ଟିଗୋଚର ହୁଏ । ବିଭିନ୍ନ ସଂସ୍ଥାମାନଙ୍କରେ ଲାଳିତପାଳିତ ହେଉଥିବା ପ୍ରାକ୍ ବିଦ୍ୟାଳୟ ଗୃହମାନଙ୍କ କ୍ଷେତ୍ରରେ କଥାବାର୍ତ୍ତା କରିବାକୁ ଉତ୍ସାହର ଅଭାବ, ଅଭିପ୍ରେରଣା ଓ ଖେଳସାଥୀର ଅଭାବ ତଥା କଥା କହିଲେ ବାଚନିକ ବା ଅନ୍ୟ କୌଣସି ପୁରସ୍କାର ନ ମିଳୁଥିବାରୁ ସେମାନଙ୍କ ଭାଷା ବିକାଶରେ ଶିଥିଳତା ଦୃଷ୍ଟିଗୋଚର ହୁଏ ।

ଏତଦ୍‌ବ୍ୟତୀତ ଭାଷାର ସଙ୍ଗଠନରେ ଏବଂ ବୌଦ୍ଧିକ ବିକାଶରେ ମଧ୍ୟ ବିଳମ୍ବ ଘଟେ । ବଡ଼ମାନଙ୍କ ସହିତ କଥାବାର୍ତ୍ତା କରିବାକୁ ଅଧିକ ସୁଯୋଗ ଓ ସୁବିଧା ମିଳିଲେ ପିଲାର ଭାଷା ବିକାଶ ତ୍ୱରାନ୍ୱିତ ହୁଏ । କଠୋର ଶୃଙ୍ଖଳା ମଧ୍ୟରେ ଲାଳିତ ପାଳିତ ହେଉଥିବା ଶିଶୁମାନଙ୍କର ଭାଷା ବିକାଶ ଗଣତାନ୍ତ୍ରିକ ପରିବେଶରେ ବାସ କରୁଥିବା ଶିଶୁଙ୍କ ଅପେକ୍ଷା ଅଧିକ ବିଳମ୍ବିତ ହୋଇଥାଏ ।

## ପରିବାରରେ ଶିଶୁର ସ୍ଥାନ

ପରିବାରର ପ୍ରଥମ ଶିଶୁ ଏବଂ ଏକକ ଶିଶୁମାନଙ୍କର ଭାଷା ବିକାଶ ଅନ୍ୟମାନଙ୍କ ଅପେକ୍ଷା ଅଧିକ ଶୀଘ୍ର ହୋଇଥିବାର କେତେକ ଅଧ୍ୟୟନରୁ ଜଣାଯାଇଛି । ଏମାନେ ଭାଷା ବିକାଶର ବିଭିନ୍ନ ଦିଗରେ ଯଥେଷ୍ଟ ଅଗ୍ରଣୀ । ବଡ଼ମାନଙ୍କ ସହିତ କଥାବାର୍ତ୍ତା କରିବାପାଇଁ ଅଧିକ ସୁଯୋଗ ଏହାର ଏକ କାରଣ ହୋଇପାରେ ।

## ପରିବାରର ସାମାଜିକ ଆର୍ଥିକ ଅବସ୍ଥା

ବାଲ୍ୟାବସ୍ଥାରୁ ଶିଶୁର ସାମାଜିକ ଅବସ୍ଥା ଯେ ଭାଷା ବିକାଶକୁ ଯଥେଷ୍ଟ ପ୍ରଭାବିତ କରିଥାଏ, ତାହା ବିଭିନ୍ନ ଅଧ୍ୟୟନର ଫଳାଫଳରୁ ନିଶ୍ଚିତ ଭାବେ ଜଣାଯାଇଛି । ନିମ୍ନ

ସାମାଜିକ ଅବସ୍ଥା-ସମ୍ପନ୍ନ ପରିବାରରେ ପ୍ରତିପାଳିତ ଶିଶୁମାନଙ୍କର ବାପା ମା' ସର୍ବଦା କାର୍ଯ୍ୟ ବ୍ୟସ୍ତ ରହୁଥିବାରୁ ପିଲା ସହିତ କଥାବାର୍ତ୍ତା କରିବାକୁ ସମୟ ପାଆନ୍ତି ନାହିଁ । ଶ୍ରମିକ ଓ କୃଷକ ପରିବାରର ପିଲାମାନଙ୍କର ଶବ୍ଦ ଭଣ୍ଡାରର ପରିସର ଏହି କାରଣରୁ ମଧ୍ୟବିତ୍ତ ଓ ଉଚ୍ଚ ସାମାଜିକ ଶ୍ରେଣୀର ଶିଶୁମାନଙ୍କଠାରୁ ଯଥେଷ୍ଟ ସୀମିତ । ଅଧ୍ୟୟନର ଫଳାଫଳରୁ ଅନୁମିତ ହୁଏ ଯେ ୧ବର୍ଷ ଠାରୁ ୫ ବର୍ଷ ବୟସ ମଧ୍ୟରେ ମଧ୍ୟବିତ୍ତ ଓ ଉଚ୍ଚ ଶ୍ରେଣୀର ଶିଶୁମାନେ ନିମ୍ନ ଶ୍ରେଣୀର ଶିଶୁମାନଙ୍କ ଠାରୁ ଶବ୍ଦ ଭଣ୍ଡାର, ବାକ୍ୟ ଗଠନ, ଶବ୍ଦରେ ପାର୍ଥକ୍ୟ ବାରିବା ଅସ୍ପଷ୍ଟ କଥା କହିବା ଇତ୍ୟାଦିରେ ଯଥେଷ୍ଟ ଉନ୍ନତ । ଉଚ୍ଚ ଓ ନିମ୍ନ ପରିବାର ମଧ୍ୟରେ ଆଚରଣଗତ ଉଦ୍ଦୀପନାର ବିରାଟ ପାର୍ଥକ୍ୟ ହେତୁ ଏହି ଭିନ୍ନତା ଲକ୍ଷ୍ୟ କରାଯାଇଥାଏ । ତା' ଛଡ଼ା ନିମ୍ନ ସାମାଜିକ ଆର୍ଥିକ ପରିବାରର ପିଲାମାନେ ଉତ୍ତମ ଭାଷା ବିକାଶ ପାଇଁ ପୁସ୍ତକ, ପତ୍ରପତ୍ରିକା ଓ ଗପବହି ଇତ୍ୟାଦି ପଢ଼ିବାକୁ ସମସ୍ତ ସୁଯୋଗ ପାଆନ୍ତି ନାହିଁ କି ରେଡ଼ିଓ, ଶିଶୁ ଚଳଚ୍ଚିତ୍ର ପ୍ରଭୃତି ଦେଖିବାର ବିଶେଷ ସୁବିଧା ସେମାନଙ୍କର ନଥାଏ, ତା' ଛଡ଼ା ଏହି ପିଲାଙ୍କର ବାପା, ମା ଓ ପରିବେଶରେ ବାସ କରୁଥିବା ଲୋକ-ମାନଙ୍କର ଭାଷା ବିକାଶ ଉନ୍ନତ ହୋଇନଥିଲେ, ସେମାନଙ୍କର ଭାଷା ବିକାଶ ମଧ୍ୟ ବିଳମ୍ବିତ ହୁଏ ।

ଭାଷା ପ୍ରଶିକ୍ଷଣରେ ସାମାଜିକ ଶ୍ରେଣୀର ପ୍ରଭାବ ଲକ୍ଷ୍ୟ କରିବାକୁ ଯାଇ ବ୍ରେନ୍‌ଷ୍ଟିନ (୧୯୬୭) ଯେଉଁ ଗବେଷଣା କରିଛନ୍ତି ସେଥିରୁ ଜଣାଯାଏ ଯେ, ନିମ୍ନ ଆର୍ଥିକ ବର୍ଗ ପରିବାରର ଭାଷା ସୀମିତ ହୋଇଥିବା ସ୍ଥଳେ ମଧ୍ୟବିତ୍ତ ପରିବାରର ଭାଷା ଯଥେଷ୍ଟ ବିସ୍ତୃତ ଅପେକ୍ଷାକୃତ ସୁସ୍ପଷ୍ଟ ଓ ସଂକ୍ଷିପ୍ତ ଅଟେ । ନିମ୍ନ ଶ୍ରେଣୀର ପିତା ମାତା ବିଭିନ୍ନ ପଦାର୍ଥ ଓ କ୍ରିୟା କଳାପ ଦର୍ଶାଇବାକୁ ଯାଇ ପିଲା ସହିତ ଯେତିକି କଥା କହିବା ଆବଶ୍ୟକ, କେବଳ ସେତିକି କହନ୍ତି । ସେମାନେ ବ୍ୟବହାର କରୁଥିବା ବାକ୍ୟଗୁଡ଼ିକ କ୍ଷୁଦ୍ର ଓ ସରଳ । ସେଥିରେ ବ୍ୟାକରଣର ବିଶେଷ ବ୍ୟବହାର ନଥାଏ । ଅତି ନିମ୍ନ ଧରଣର ପ୍ରତ୍ୟୟମାନ ବ୍ୟବହାର କରାଯିବା ସଙ୍ଗେ ସଙ୍ଗେ ଭାଷା ଅଧିକାଂଶତଃ ବର୍ଣ୍ଣନାତ୍ମକ ହୋଇଥାଏ । ଓଡ଼ିଶାରେ ହୋଇଥିବା ଅନ୍ୟ କେତେକ ଗବେଷଣାରୁ ଜଣାଯାଇଛି ଯେ, ସାମାଜିକ ଓ ସାଂସ୍କୃତିକ ପରିବେଶରେ ତାରତମ୍ୟ ଯୋଗୁଁ ଉଚ୍ଚଜାତିର ପ୍ରାଥମିକ ଶ୍ରେଣୀରେ ପାଠ ପଢ଼ୁଥିବା ପିଲାଙ୍କର ପ୍ରତ୍ୟୟଗତ ଶବ୍ଦାବଳୀ ଜ୍ଞାନ ସେହି ଶ୍ରେଣୀର ଆଦିବାସୀ ହରିଜନ ପିଲାଙ୍କ ଠାରୁ ଯଥେଷ୍ଟ ଉନ୍ନତ ଓ ବିସ୍ତୃତ ।

## ପରିବାରର ସଭ୍ୟ ସଂଖ୍ୟା

ଭାଷା ବିକାଶ ସହିତ ପରିବାରର ସଭ୍ୟ ସଂଖ୍ୟାର ସମ୍ପର୍କ ଉପରେ ଭିନ୍ନ ଭିନ୍ନ ମତ ପ୍ରକାଶ ପାଇଥାଏ । କେତେକଙ୍କ ମତରେ ବହୁ ସନ୍ତାନ ପରିବାରର ପିଲାଙ୍କର ଭାଷା ଅପେକ୍ଷା ଏକକ ସନ୍ତାନ ପରିବାରର ପିଲାଙ୍କ ଭାଷା ଯଥେଷ୍ଟ ଉନ୍ନତ, ମାର୍ଜ୍ଜିତ ଓ ବିସ୍ତୃତ । ଗୋଟିଏ

ମାତ୍ର ପିଲା ହୋଇଥିବାରୁ ଏହି ଶିଶୁର ସମସ୍ତ ପ୍ରକାରର ବିକାଶ ଉପରେ ପିତା ମାତା ଅଧିକ ଧ୍ୟାନ ଦିଅନ୍ତି । ଏମାନେ ଯୁକ୍ତି କରନ୍ତି ଯେ ବେଶୀ ପିଲା ହେଲେ ଅଧିକ ପ୍ରତିଦ୍ୱନ୍ଦ୍ୱିତା ହୁଏ । ନାନା ପ୍ରକାରର କଳହ, ଝଗଡ଼ା ହୋଇପାରେ ଏବଂ ଭାଷାରେ ଦୋଷ ପରିଲକ୍ଷିତ ହୁଏ । ଅନ୍ୟ କେତେକଙ୍କ ମତରେ ପରିବାରରେ ଅନେକଗୁଡ଼ିଏ ପିଲା ଥିଲେ ସେମାନେ ପରସ୍ପର ମଧ୍ୟରେ କଥା କହିବାକୁ ସୁବିଧା ପାଆନ୍ତି । ବାପା ମା'ଙ୍କ ଉପରେ ତାଙ୍କୁ ନିର୍ଭର କରିବାକୁ ପଡ଼େନାହିଁ । ଏଣୁ ସେମାନଙ୍କର ଭାଷା ବିକାଶ ଏକକ ସନ୍ତାନର ଭାଷାଠାରୁ ଅଧିକ ତ୍ୱରାନ୍ୱିତ ହୋଇଥାଏ ।

## ଶିଶୁ ସହିତ ପରିବାରର ସମ୍ପର୍କ

ବାପା, ମା ଓ ଭାଇ ଭଉଣୀ ଇତ୍ୟାଦିଙ୍କ ସହିତ ଶିଶୁର ଉତ୍ତମ ସମ୍ପର୍କ ରହିଥିଲେ ଭାଷା ବିକାଶ ଉନ୍ନତ, ରୁଚିପୂର୍ଣ୍ଣ ଓ ମାର୍ଜିତ ହୁଏ, ଅନ୍ୟଥା ଏହା ବ୍ୟାହତ ହୁଏ । ବିଶେଷ କରି ମା' ସହିତ ପିଲାର ସମ୍ପର୍କ ତା'ର ଭାଷାକୁ ବହୁଳାଂଶରେ ପ୍ରଭାବିତ କରିଥାଏ ।

ଏ କ୍ଷେତ୍ରରେ ମା'ଙ୍କ ବ୍ୟକ୍ତିତ୍ୱ ମଧ୍ୟ ବିଚାରକୁ ନିଆଯାଇପାରେ । ଅତି ସଂରକ୍ଷିତ, ଉଦ୍‌ଗ୍ରୀବ, କମ୍ କଥା କହୁଥିବା ମା'ମାନେ ସେମାନଙ୍କର ପିଲାକୁ କମ୍ କଥା କହିବାକୁ ସୁଯୋଗ ଦିଅନ୍ତି । ପିଲା ବେଶୀ କଥା କହିଲେ ସେମାନେ ତା ଉପରେ ବିରକ୍ତ ହୁଅନ୍ତି । ଅନ୍ୟପକ୍ଷରେ ଯେଉଁ ମା'ମାନେ ଶିଶୁ ପ୍ରତି ଯଥେଷ୍ଟ ପରିବର୍ତ୍ତିନୀୟ ଓ ସହଜ ମନୋଭାବ ପୋଷଣ କରନ୍ତି ସେମାନେ ପିଲାକୁ ଅଧିକ କଥା କହିବାକୁ ଉତ୍ସାହିତ କରନ୍ତି ।

## ଧୀ ଶକ୍ତି

ଶବ୍ଦାବଳୀର ବିସ୍ତାର ଓ ଭାଷାର ବିକାଶ ଅଧିକାଂଶତଃ ଧୀଶକ୍ତି ଉପରେ ନିର୍ଭର କରେ ବୋଲି ବହୁ ମନୋବୈଜ୍ଞାନିକମାନଙ୍କର ମତ । ମନ୍ଦିତ ଓ ସ୍ୱଳ୍ପ ଧୀଶକ୍ତି ସମ୍ପନ୍ନ ଶିଶୁମାନଙ୍କର ଭାଷାରେ ସଂହତିର ଅଭାବ ଲକ୍ଷ୍ୟ କରାଯାଏ ।

## ଲିଙ୍ଗ

ଜନ୍ମର ଦ୍ୱିତୀୟ ବର୍ଷ ବେଳକୁ ଭାଷା ବିକାଶ ଉପରେ ଲିଙ୍ଗର ପ୍ରଭାବ ଲକ୍ଷ୍ୟ କରାଯାଇଥାଏ । ବାଳିକାମାନେ ବାଳକମାନଙ୍କ ଅପେକ୍ଷା ଶୀଘ୍ର କଥାକହି ଶିଖନ୍ତି । ଅପେକ୍ଷାକୃତ ବଡ଼ ବାକ୍ୟ ବ୍ୟବହାର କରନ୍ତି । ସେମାନଙ୍କ ଭାଷାରେ କମ୍ ବ୍ୟାକରଣ ଦୋଷ ଦେଖାଯାଏ ଏବଂ ସେମାନଙ୍କର ଶବ୍ଦ ଭଣ୍ଡାର ବାଳକମାନଙ୍କ ଅପେକ୍ଷା ଅଧିକ ବିସ୍ତୃତ । ମା' ଓ ଝିଅଙ୍କର ସମ୍ପର୍କ ମା' ପୁଅଙ୍କଠାରୁ ଅଧିକ ନିକଟତମ ହୋଇଥିବାରୁ ଓ

ଝିଅମାନେ ମା ସହିତ ଅଧିକ ସମୟ ରହୁଥିବାରୁ ସେମାନଙ୍କର ଭାଷା ବିକାଶ ଚଞ୍ଚଳ ହୋଇଥାଏ ବୋଲି ଯୁକ୍ତି କରାଯାଇଛି । କିନ୍ତୁ ଏ ସମ୍ପର୍କରେ ଅଧିକ ଗବେଷଣାର ଆବଶ୍ୟକତା ରହିଛି ।

## ସାଧାରଣ ସ୍ୱାସ୍ଥ୍ୟ

ଜୀବନର ପ୍ରଥମ ୨।୩ ବର୍ଷରେ ଅନେକ କାଳ ଧରି ପୀଡ଼ିତ ରହିଲେ ଶିଶୁର ଭାଷା ବିକାଶ ବ୍ୟାହତ ହୁଏ । ଅସୁସ୍ଥ ଅବସ୍ଥାରେ ଯଥେଷ୍ଟ କଥାବାର୍ତ୍ତା କରିବାପାଇଁ ପିଲାର ଶକ୍ତି ବା ସ୍ପୃହା ନଥାଏ । ଅନ୍ୟ ପିଲାଙ୍କ ସହିତ ମିଳାମିଶା କରିପାରୁ ନଥିବାରୁ କଥାବାର୍ତ୍ତା କରିବା ପାଇଁ ସୁଯୋଗ, ଉତ୍ସାହ ଓ ଉଦ୍ଦୀପନା ମିଳେନାହିଁ ।

କିନ୍ତୁ ସ୍ୱାସ୍ଥ୍ୟବାନ ଶିଶୁ ଯଥେଷ୍ଟ ସକ୍ରିୟ ହୋଇଥିବାରୁ ଏବଂ ତାର ଏସବୁ ଅସୁବିଧା ନଥିବାରୁ ସେ ଭାଷା ବିକାଶରେ ଦୁର୍ବଳ ଓ ରୁଗ୍ଣ ଶିଶୁ ଅପେକ୍ଷା ଯଥେଷ୍ଟ ଆଗୁଆ ଥାଏ ।

## ଏକରୁ ଅଧିକ ଭାଷା ଶିଖିବା

ପ୍ରାରମ୍ଭିକ ଅବସ୍ଥାରେ ଏକରୁ ଅଧିକ ଭାଷା ଶିକ୍ଷା କଲେ ଶିଶୁ confused ହୋଇଯାଏ । ତା'ର ଚିନ୍ତା ଓ ବିଚାରଶକ୍ତି ଉପରେ ଏହାର କୁପ୍ରଭାବ ପଡ଼ିଥାଏ । ଏକାଥରକେ ଦୁଇଟି ଭାଷା ଶିକ୍ଷା କରୁଥିବାରୁ ଗୋଟିଏ ଉଦ୍ଦୀପକ ବା ବସ୍ତୁ ପାଇଁ ଦୁଇଟି ଅଲଗା ଅଲଗା ଶବ୍ଦ ଶିଖିବାକୁ ପଡ଼ିଥାଏ । ଯାହାକି ଶିଶୁ ପାଇଁ ଯଥେଷ୍ଟ କଷ୍ଟକର ବ୍ୟାପାର ହୋଇପଡ଼େ । ଏହା ମଧ୍ୟ ଶିଶୁର ଶବ୍ଦାବଳୀ, ଭାଷା ଓ କଥିତ ଭାଷା ଉପରେ ଅନୁଚିତ ପ୍ରଭାବ ପକାଇଥାଏ । ତା'ର ବାକ୍ୟରଚନା ଗୋଳମାଳିଆ ହୋଇଯାଏ ଏବଂ ସମୟ ସମୟରେ ଧୀଶକ୍ତିର ବିକାଶ ଉପରେ ଏହାର ଅନୁଚିତ ପ୍ରଭାବ ପଡ଼ିଥାଏ । ଏଣୁ ୫।୬ ବର୍ଷ ପୂର୍ବରୁ ସାଧାରଣତଃ ଦୁଇଟି ଭାଷାରେ ପିଲାକୁ ଶିକ୍ଷା ଦେବା ଅନୁଚିତ । ଏହାଦ୍ୱାରା ବିଦ୍ୟାଳୟରେ ଶିଶୁକୁ ଉପଯୋଜନ କରିବାକୁ ଅସୁବିଧା ହୁଏ । ତାର ଭାବାତ୍ମକ, ସାମାଜିକ ଓ ଆବେଗିକ ଉପଯୋଜନ ବ୍ୟାହତ ହେବାର ସମ୍ଭାବନା ଥାଏ । ଏଥିଯୋଗୁଁ ଭାଷାରେ ମଧ୍ୟ ତ୍ରୁଟି ଲକ୍ଷ୍ୟ କରାଯାଇପାରେ ।

ଉନ୍ନତ ଭାଷା ଉତ୍ତମ ବ୍ୟକ୍ତିତ୍ୱର ଏକ ପ୍ରଧାନ ଆବଶ୍ୟକତା ହୋଇଥିବାରୁ ଶିଶୁର ଭାଷା ଯେପରି ଉନ୍ନତ, ମାର୍ଜିତ ଓ ରୁଚିକର ହୁଏ ଏବଂ ଏଥିପାଇଁ ଯେପରି ତାକୁ ସବୁ ପ୍ରକାରର ସୁବିଧା ସୁଯୋଗ ମିଳେ ତାହାର ବ୍ୟବସ୍ଥା କରିବା ଆବଶ୍ୟକ ।

## ଭାଷାରେ ତ୍ରୁଟି

ଭାଷାରେ ତ୍ରୁଟି ମୁଖ୍ୟତଃ ତ୍ରୁଟିପୂର୍ଣ୍ଣ ଅନୁକରଣ ଶିକ୍ଷଣରେ ଦୋଷ ଏବଂ ଶୀଘ୍ର ଶୀଘ୍ର କଥା କହିବା ଯୋଗୁଁ ଦେଖାଦିଏ । ଅଧିକାଂଶ କ୍ଷେତ୍ରରେ ଦେଖାଯାଇଛି ଯେ, ଶବ୍ଦର

ଅଶୁଦ୍ଧ ଉଚ୍ଚାରଣ ସ୍ପଷ୍ଟ ଉଚ୍ଚାରଣ କରିବାର ଅସମର୍ଥତା ଯୋଗୁଁ ଯେତେଟା ନୁହେଁ, ଅସ୍ପଷ୍ଟ ଧ୍ୱନି ବାରମ୍ବାର ଶ୍ରବଣ କରିବା ଯୋଗୁଁ ହୋଇଥାଏ ।

ନୂଆକରି ଭାଷା ଶିଖିଲା ବେଳେ ଶିଶୁ ପ୍ରତ୍ୟେକ ଅକ୍ଷରକୁ ଶୀଘ୍ର ଶୀଘ୍ର କହିବା ବେଳେ ବହୁ ଅକ୍ଷରକୁ ଛାଡ଼ିଦିଏ । ଏହି ଅବସ୍ଥାରେ ଶିଶୁର ଭାଷା ବିକାଶ ପ୍ରତି ଉଚିତ ଦୃଷ୍ଟି ଦେଇ ଏବଂ ତାକୁ ବାଲ୍ୟାଳାପ କରିବାକୁ ସୁଯୋଗ ନ ଦେଇ ତାର ତ୍ରୁଟିଗୁଡ଼ିକ ତାକୁ ଜଣାଇ ଦିଆଗଲେ ତା'ର ଭାଷାରେ ଦେଖାଦେଇଥିବା ବହୁ ତ୍ରୁଟି ଦୂରୀଭୂତ ହୁଏ । ଭଲମ୍ବିତ ଭାଷା ଅପେକ୍ଷା ତ୍ରୁଟିପୂର୍ଣ୍ଣ ଭାଷାକୁ ନିୟନ୍ତ୍ରଣ କରିବା କଷ୍ଟକର ହୁଏ । ଅନେକ କ୍ଷେତ୍ରରେ ବାପା, ମା ବା ପିଲାର ନିକଟତମ ସଂସ୍ପର୍ଶରେ ଆସୁଥିବା ବ୍ୟକ୍ତିମାନେ ତ୍ରୁଟିପୂର୍ଣ୍ଣ ଭାଷା ବ୍ୟବହାର କଲେ ପିଲା ସେମାନଙ୍କୁ ଅନୁକରଣ କରି ତ୍ରୁଟିପୂର୍ଣ୍ଣ ଭାଷା କହିଥାଏ । ଆଉ କେତେକ କ୍ଷେତ୍ରରେ ଗଳଗ୍ରନ୍ଥିରେ ଦୋଷ ଆବେଗିକ ତ୍ରାସ ବା ପୀଡ଼ା ଯୋଗୁଁ ମଧ୍ୟ ଭାଷାରେ ତ୍ରୁଟି ଲକ୍ଷ୍ୟ କରାଯାଏ ।

ପ୍ରଥମ କେତେ ବର୍ଷରେ ପ୍ରତ୍ୟେକ ଶିଶୁ ପକ୍ଷରେ ନିଜ ଭାଷାକୁ ନିୟନ୍ତ୍ରଣ କରିବାକୁ କଷ୍ଟକର ହୁଏ । ଏହା ଫଳରେ ସମବୟସ୍କ ସମସ୍ତ ଶିଶୁଙ୍କଠାରେ ପ୍ରାୟ କେତେକ ତ୍ରୁଟି ଲକ୍ଷ୍ୟ କରାଯାଏ । ଭାଷାରେ ତ୍ରୁଟିକୁ ତିନୋଟି ମୁଖ୍ୟ ଭାଗରେ ବିଭକ୍ତ କରାଯାଇପାରେ ।

(୧) ଅଶୁଦ୍ଧ ଉଚ୍ଚାରଣ, (୨) ଶବ୍ଦାର୍ଥରେ ତ୍ରୁଟି ଓ (୩) ବାକ୍ୟ ଗଠନରେ ତ୍ରୁଟି ।

**ଅଶୁଦ୍ଧ ଉଚ୍ଚାରଣ**—ଉଚ୍ଚାରଣ ଅଶୁଦ୍ଧତାକୁ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରାଯାଇପାରେ—(୧) ଉଚ୍ଚାରଣରେ ତ୍ରୁଟି, (୨) ଉଚ୍ଚାରଣରେ ଅବ୍ୟବସ୍ଥା ।

(୧) **ଉଚ୍ଚାରଣରେ ତ୍ରୁଟି**—ଉଚ୍ଚାରଣରେ ତ୍ରୁଟିକୁ ସାଧାରଣତଃ ବାଲ୍ୟାଳାପ (baby talk) କୁହାଯାଏ । ଯଥା—ଶବ୍ଦ ମଝିରେ ଏକ ବା ଅଧିକ ଅଂଶକୁ ଛାଡ଼ିଦେବା, ଯେପରିକି ପବନକୁ ପନ, ଅକ୍ଷର ଶବ୍ଦାଂଶକୁ ବା ପୂରା ଶବ୍ଦକୁ ପରିବର୍ତ୍ତନ କରିଦେବା, ଯେପରିକି ବନ୍ଧୁକକୁ 'ଦମ୍ବୁକ', smallକୁ slam ଏବଂ askକୁ aks ଇତ୍ୟାଦି । ଏସବୁର ପ୍ରଧାନ କାରଣ ହେଲା ଅନିଶ୍ଚିତ ଶିକ୍ଷଣ ଓ ଶିଶୁ ପ୍ରତି ଧ୍ୟାନର ଅଭାବ ।

ଅନେକ ବାପା ମା ଓ ଆତ୍ମୀୟ ସ୍ୱଜନଙ୍କୁ ପିଲା ସହିତ ବାଲ୍ୟାଳାପ କରିବାକୁ ଓ ତାର ବାଲ୍ୟାଳାପ ଶୁଣିବାକୁ ଭଲ ଲାଗେ । ଏଣୁ ଏମାନେ ପ୍ରକାରାନ୍ତରେ ଶିଶୁକୁ ବାଲ୍ୟାଳାପ କରିବାକୁ ଉତ୍ସାହିତ କରନ୍ତି । ଯାହାକି ତା'ର ଭାଷା ବିକାଶକୁ ବ୍ୟାହତ କରେ । କୌଣସି ଶବ୍ଦକୁ ବାରମ୍ବାର ଅଶୁଦ୍ଧ ଉଚ୍ଚାରଣ କରିବା ଫଳରେ ଅଶୁଦ୍ଧ ଉଚ୍ଚାରଣର ଅଭ୍ୟାସ

ରହିଯାଏ । ଏପରି କ୍ଷେତ୍ରରେ ପିଲା ଅଶୁଦ୍ଧ ଉଚ୍ଚାରଣ କଲାବେଳେ ତାକୁ ତତ୍‌କ୍ଷଣାତ୍ ଠିକ୍ ଉଚ୍ଚାରଣ ବତେଇ ଦେବା ଉଚିତ ।

କେତେକ କ୍ଷେତ୍ରରେ ଶବ୍ଦ ଉଚ୍ଚାରଣ କରିବାରେ ତ୍ରୁଟି ଦାନ୍ତ, ଜିଭ, ଓଠ ଓ ମାଢ଼ିର ତ୍ରୁଟିପୂର୍ଣ୍ଣ ଗଠନ ଯୋଗୁଁ ହୋଇଥାଏ । କିନ୍ତୁ ଅଧିକାଂଶ ଅଶୁଦ୍ଧ ଉଚ୍ଚାରଣ, ତ୍ରୁଟିପୂର୍ଣ୍ଣ ଶିକ୍ଷଣ ଓ ଅନୁକରଣ ଯୋଗୁଁ ହୋଇଥାଏ ।

ଶବ୍ଦାର୍ଥରେ ତ୍ରୁଟି—୪।୫ ବର୍ଷ ପର୍ଯ୍ୟନ୍ତ ପିଲାମାନେ ଏହି ପ୍ରକାରର ତ୍ରୁଟି ପ୍ରଦର୍ଶନ କରନ୍ତି । ଶବ୍ଦଗୁଡ଼ିକର ଅର୍ଥ ଠିକ୍ ଭାବରେ ନବୁଝି ପାରିବା ଫଳରେ ତା ସହିତ ଠିକ୍ ଅର୍ଥକୁ ସଂଯୁକ୍ତ କରିପାରେ ନାହିଁ । ଏହି କାରଣରୁ ଶବ୍ଦଗୁଡ଼ିକୁ ଏକାଠି କରି ଠିକ୍ ବାକ୍ୟ ଗଠନ କରିବାରେ ତାକୁ ଅସୁବିଧା ହୁଏ । ପ୍ରମାଦପୂର୍ଣ୍ଣ ଅନୁସଙ୍ଗ ଯୋଗୁଁ ଶବ୍ଦାର୍ଥରେ ମଧ୍ୟ ଅନେକ ତ୍ରୁଟି ଲକ୍ଷ୍ୟ କରାଯାଏ । ଏପରି ଭୁଲ ସଂହତି ଓ ପ୍ରମାଦପୂର୍ଣ୍ଣ ଅନୁସଙ୍ଗକୁ ବାପା ମା ମାନେ ସଙ୍ଗେ ସଙ୍ଗେ ଠିକ୍ କରିଦିଅନ୍ତି । ପିତାମାତା ବା ଶିକ୍ଷକଙ୍କ ହସ୍ତକ୍ଷେପ ଫଳରେ ଏହି 'ତ୍ରୁଟି'ଗୁଡ଼ିକ ଦୂର ହୋଇଯାଏ ।

ବାକ୍ୟ ଗଠନରେ ତ୍ରୁଟି --ଶିଶୁ ତା'ର ପରିବେଷ୍ଟନୀରେ ଯଥେଷ୍ଟ ମାର୍ଜିତ ଓ ଶୁଦ୍ଧ ଭାଷା ଶୁଣୁଥିଲେ ମଧ୍ୟ ୩।୪ ବର୍ଷ ପର୍ଯ୍ୟନ୍ତ ସାଧାରଣତଃ ପିଲାଙ୍କ ଭାଷାରେ ଯଥେଷ୍ଟ ବ୍ୟାକରଣଗତ ତ୍ରୁଟି ପରିଲକ୍ଷିତ ହୁଏ । ବିଶେଷତଃ କ୍ରିୟାର କାଳ ବା ସର୍ବନାମ ବ୍ୟବହାରବେଳେ ବାକ୍ୟ ତ୍ରୁଟିପୂର୍ଣ୍ଣ ହୋଇଥାଏ ।

ନିମ୍ନ ସାମାଜିକ ଆର୍ଥିକ ପରିବାରର ଶିଶୁମାନେ ଅଧିକ ଅଶୁଦ୍ଧ ଭାଷା ଶୁଣୁଥିବାରୁ ଉଚ୍ଚ ସାମାଜିକ ଶ୍ରେଣୀର ପିଲାମାନଙ୍କ ତୁଳନାରେ ସେମାନଙ୍କ ବାକ୍ୟ ଗଠନରେ ତ୍ରୁଟି ଯୋଗୁ ପିଲା ଗୋଟିଏ କଥା କହିବାକୁ ଚାହୁଁଥିଲା ବେଳେ ଆଉ ଗୋଟିଏ କଥା ପ୍ରକାଶ କରିଦିଏ । ଏହାଫଳରେ ତାକୁ ତା'ର ପରିବେଶରେ ନାନା ଅସୁବିଧାର ସମ୍ମୁଖୀନ ହେବାକୁ ହୁଏ । ଏହା ତା'ର ସାମାଜିକ ଉପଯୋଜନ ଓ ପରେ ବ୍ୟବସାୟିକ ସଫଳତାକୁ ବ୍ୟାହତ କରେ ।

ସମ୍ପ୍ରତି ରେଡ଼ିଓ, ଟେଲିଭିଜନ, ବିଭିନ୍ନ ସମ୍ବାଦପତ୍ର ଓ ପତ୍ରପତ୍ରିକା ମାଧ୍ୟମରେ ପିଲା ଆଦର୍ଶ ଓ ମାର୍ଜିତ ଭାଷା ଶୁଣିବାକୁ ସକ୍ଷମ ହୋଇପାରୁଛି । ଏଣୁ ପିଲାମାନଙ୍କ ବାକ୍ୟରେ ଆଜିକାଲି କମ୍ ବ୍ୟାକରଣଗତ 'ତ୍ରୁଟି' ପରିଲକ୍ଷିତ ହେଉଛି ।

**ଭାଷାରେ ଦୋଷ**

କଥାବାର୍ତ୍ତାରେ ତ୍ରୁଟି ଅପେକ୍ଷା ଭାଷାଗତ ଦୋଷ ଅଧିକ ଗୁରୁତର ଅଟେ । କାରଣ ଏହା ବ୍ୟକ୍ତିର ସାମାଜିକ ଉପଯୋଜନ ଉପରେ ମନ୍ଦ ପ୍ରଭାବ ପକାଇଥାଏ । ଭାଷାରେ

ଅଧିକାଂଶ ଦୋଷତ୍ରୁଟି ଅସମୁଚିତ ଆବେଗିକ ବିକାଶ ଯୋଗୁଁ ସମ୍ଭବ ହୋଇଥାଏ । ପିଲାକୁ ବାଧ୍ୟକରି ସତ୍କାମ କରିବାକୁ ଦେଲେ ଓ କଠୋର ଶୃଙ୍ଖଳା ମଧ୍ୟରେ ତା'ର ଦୈନନ୍ଦିନ କାର୍ଯ୍ୟକଳାପକୁ ନିୟନ୍ତ୍ରଣ କଲେ, ତା'ର ଆବେଗିକ ବିକାଶ ଅସ୍ୱାଭାବିକ ହୁଏ ଏବଂ ଏହା ତ୍ରୁଟିପୂର୍ଣ୍ଣ ଭାଷା ବିକାଶକୁ ଉତ୍ସାହିତ କରେ । ପିଲାର ମୋଟେ ଯତ୍ନ ନନେଇ ତା'ର ଅବହେଳା କଲେ ଏହାର ପ୍ରଭାବ ମଧ୍ୟ ତା'ର ବ୍ୟକ୍ତିତ୍ୱ ଓ ଭାଷା ବିକାଶ ଉପରେ ପଡ଼ିଥାଏ । ପିଲାର ଯୋଗ୍ୟତା ଓ ସାମର୍ଥ୍ୟଠାରୁ ତା ନିକଟରୁ ଅଧିକ ଆଶା କଲେ ତା'ର ଭାଷା ବିକାଶ ଗଣ୍ଡଗୋଳିଆ ହୁଏ ।

ଭାଷାରେ ଦୋଷଗୁଡ଼ିକୁ ନିମ୍ନମତେ ବିଭକ୍ତ କରାଯାଇପାରେ—ପାଟି ଲାଗିବା ଦୋଷ (Lipsing)---ଉପର ଦାନ୍ତ ଓ ମାଢ଼ି ଉପରେ ଜିଭ ଲଗାଇ କଥା କହିବା—ଯେପରିକି 'ସ' ସ୍ଥାନରେ 'ଥ', ର ସ୍ଥାନରେ 'ଅ' କିମ୍ବା ଘରକୁ 'ଘଲ', ମୋର କୁ 'ମୋଲ' ଇତ୍ୟାଦି ।

ଦାନ୍ତ, ମାଢ଼ି ଓ ଓଠର ଅସ୍ୱାଭାବିକ ଗଠନ ଶୈଶବାବସ୍ଥାର ପିଲାଳିଆ ଭାଷାକୁ ପରିତ୍ୟାଗ ନ କରିବାର ମନୋଭାବ ପାଟି ଲାଗିବାର ଅନ୍ୟାନ୍ୟ କାରଣ ଅଟେ । ନୂଆଦାନ୍ତ ଉଠିଲାବେଳକୁ ପିଲାକୁ ଠିକ୍ ଭାବରେ ଭାଷା କହିବାକୁ ଶିକ୍ଷା ଦିଆନଗଲେ ତାର ଏହି ତ୍ରୁଟି ଅଭ୍ୟାସର ପରିଣତ ହୋଇଯାଏ ।

### ଭାଷାରେ ସ୍ପଷ୍ଟତାର ଅଭାବ

ପ୍ରାକ୍ ବିଦ୍ୟାଳୟ ଅବସ୍ଥାରେ ଅଧିକାଂଶ ଶିଶୁ କଥା କହିବାକୁ ଅଭ୍ୟସ୍ତ ହୋଇ ନଥିବାରୁ ଅସ୍ପଷ୍ଟ ଭାଷା କହିଥାନ୍ତି । ତା' ଛଡ଼ା ଅତିରିକ୍ତ ଭାବାତ୍ମକ କାରଣ ଯଥା—ଭୟ ପାଇଲେ, ଧମକ ଚମକ କରାଗଲେ, ଡର ଡର କଥା କହିଲେ, ରାଗିଗଲେ ଓ ଅନ୍ୟ କୌଣସି କାରଣରୁ ପ୍ରଶ୍ନର ଉତ୍ତର ଦେବାକୁ ସମର୍ଥ ନ ହେଲେ ଭାଷାରେ ଏହି ପ୍ରକାରର ଦୋଷ ଲକ୍ଷ୍ୟ କରାଯାଏ । ଏହିପରି ଶିଶୁ ଏକ ସମୟରେ ଶୀଘ୍ର ଓ ପରିଷ୍କାର ଭାବରେ କଥା କହିବାକୁ ସକ୍ଷମ ହୁଅନ୍ତି ନାହିଁ ।

ଧୀରେ ଧୀରେ ଓ ପ୍ରତ୍ୟେକ ଶବ୍ଦକୁ ପୂର୍ଣ୍ଣ ଉଚ୍ଚାରଣ କରି ସ୍ପଷ୍ଟ ଭାବରେ କଥା କହିବାକୁ ପିଲାକୁ ବରାବର ସତର୍କ କରିବା ଉଚିତ । କଥା କହିଲା ବେଳେ ଓଠକୁ ମେଲାକରି କଥା କହିଲେ ଶବ୍ଦ ସ୍ପଷ୍ଟ ଭାବରେ ଉଚ୍ଚାରିତ ହୋଇପାରିବ । କଥା କହିବାର ଅଭ୍ୟାସ ହୋଇଗଲେ କାଳକ୍ରମେ ଭାଷାରୁ ଅସ୍ପଷ୍ଟତା ଦୂର ହୋଇଯାଏ । କିନ୍ତୁ ଶିକ୍ଷଣ ପ୍ରମାଦପୂର୍ଣ୍ଣ ହେଲେ ଅଥବା ଶାରୀରିକ, ଆବେଗିକ ଦୋଷତ୍ରୁଟି ରହିଲେ ଅସ୍ପଷ୍ଟ କଥା କହିବାର ଅଭ୍ୟାସ

ରହିଯାଏ । ପରିଣାମରେ ପିଲାକୁ ଭବିଷ୍ୟତ ଜୀବନରେ ବହୁତ ଅସୁବିଧା ଓ ସମା-
ଲୋଚନାର ସମ୍ମୁଖୀନ ହେବାକୁ ପଡ଼ିଥାଏ ।

### ଖନେଇବା ଦୋଷ (Stuttering and stammery)

କଥାବାର୍ତ୍ତା କରିବା ସମୟରେ ଓଠ, ଜିଭ ସାଧାରଣ ଭାବେ କ୍ରିୟାଶୀଳ ନହେଲେ ଏହି ଦୋଷ ଲକ୍ଷ୍ୟ କରାଯାଏ । ଶିଶୁକୁ ଅତ୍ୟଧିକ ଉତ୍ସାହିତ କରାଇଲେ, ମାଡ଼ପିଟ୍ କଲେ, ଧମକ ଦିଆଗଲେ ମଧ୍ୟ ସେ କଥା କହିବାବେଳେ ଖନେଇଥାଏ ।

ଏହି ଦୋଷ ଯୋଗୁଁ ପିଲା କୌଣସି ଏକ ଅକ୍ଷରର ଉଚ୍ଚାରଣ ବାରମ୍ବାର କରେ । ଧ୍ୱନି ଓ ବର୍ଣ୍ଣମାନଙ୍କର ପୁନରାବୃତ୍ତି ଯୋଗୁଁ ଏହି ଦୋଷ ଉତ୍ପନ୍ନ ହୁଏ । ଅନେକ ସମୟ ଧରି ପାଟିରୁ କଥା ନ ବାହାରି ପୁଣି ହଠାତ୍ ଏକେ ଜୋରରେ ବାହାରେ ଯେ ତାର ସମସ୍ତ ଅଭିବ୍ୟକ୍ତି ଓ ବକ୍ତବ୍ୟ ଗୋଳମାଳିଆ ହୋଇଯାଏ । ଖନେଇବା ସମୟରେ 'ଅତ୍ୟଧିକ ମାତ୍ରାରେ ଗଳାର ମାଂସପେଶୀମାନଙ୍କର ଅନୈଚ୍ଛିକ ସଙ୍କୋଚନ ହୁଏ; ତେଣୁ କିଛିକ୍ଷଣ ପାଇଁ ପିଲା କିଛି ଶବ୍ଦ ଉଚ୍ଚାରଣ କରିବାକୁ ସକ୍ଷମ ହୋଇପାରେ ନାହିଁ । ଏହି ଦୋଷ ନିଃଶ୍ୱାସ ପ୍ରଶ୍ୱାସ ନେବାରେ କଷ୍ଟ ବା ଅସୁବିଧା କିମ୍ବା ବାକ୍‌ପେଶୀମାନଙ୍କର କୌଣସି ଦୋଷ ଯୋଗୁଁ ହୋଇପାରେ । ଖନେଇବାର ମନସ୍ତାତ୍ତ୍ୱିକ କାରଣମାନଙ୍କ ମଧ୍ୟରେ ପିଲାର ଅତ୍ୟଧିକ ଯତ୍ନ ନେଇ ତାକୁ ଅତି ସଂରକ୍ଷଣ କରିବା, ସମାଲୋଚନା କରିବା ଓ ପିଲାପାଇଁ ଶକ୍ତିଠାରୁ ଯଥେଷ୍ଟ ଅଧିକ ମାନ ନିର୍ଦ୍ଧାରଣ କରି ତାର ମନରେ ନ୍ୟୂନ ଭାବ ଜାତ କରାଇବା ଇତ୍ୟାଦି ପ୍ରଧାନ । କଥା କହିବାବେଳେ ନିଜର ଭାଷା ପ୍ରତି ଅଧିକ ସଚେତନ ହେଲେ ମଧ୍ୟ ଖନେଇବା ଦୋଷ ଦେଖାଦେଇପାରେ । ତେଣୁ ଉପରୋକ୍ତ ସମସ୍ୟାଗୁଡ଼ିକ ପ୍ରତି ସମୁଚିତ ଧ୍ୟାନ ଦେଲେ ପିଲାଠାରେ ଖନେଇବା ଦୋଷ ଦେଖାଯିବ ନାହିଁ ।

ଭାଷା ମାଧ୍ୟମରେ ପିଲା ଯେପରି ତା'ର ବ୍ୟକ୍ତିତ୍ୱ, ଅଭିବ୍ୟକ୍ତି, ଆବେଗ ଓ ଜ୍ଞାନର ଉପଯୁକ୍ତ ପରିପ୍ରକାଶ କରି ନିଜକୁ ଅନ୍ୟମାନଙ୍କ ସମକ୍ଷରେ ଉପସ୍ଥାପିତ କରିପାରିବ, ତାହା ତା'ର ଭାଷା ବିକାଶର ଉତ୍ତମତା ଉପରେ ନିର୍ଭର କରେ । ଭାଷା ଅନୁକରଣ ଓ ଶିକ୍ଷଣ ମାଧ୍ୟମରେ ବିକଶିତ ହେଉଥିବାରୁ ଏ କ୍ଷେତ୍ରରେ ପିତାମାତା ଓ ଶିକ୍ଷକମାନଙ୍କର ଗୁରୁଦାୟିତ୍ୱ ରହିଛି । ପିଲା ଯେପରି ତାର ଭାଷା ମାଧ୍ୟମରେ ଲୋକପ୍ରିୟ ହୋଇପାରିବ ସେଥିପାଇଁ ତାର ଶବ୍ଦାବଳୀକୁ ମାର୍ଜ୍ଜିତ, ରୁଚିକର ଓ ଉନ୍ନତ କରିବା ଉଚିତ୍ ।

# ତ୍ରୟୋଦଶ ଅଧ୍ୟାୟ

# ବ୍ୟକ୍ତିତ୍ୱର ବିକାଶ

ମନୁଷ୍ୟର ବ୍ୟକ୍ତିତ୍ୱ ତାର ଶାରୀରିକ ଓ ମାନସିକ ଲକ୍ଷଣମାନଙ୍କର ପାରସ୍ପରିକ ପ୍ରତିକ୍ରିୟାର ପରିଣାମ କହିଲେ ଅତ୍ୟୁକ୍ତି ହେବନାହିଁ । ଶାରୀରିକ ଲକ୍ଷଣଗୁଡ଼ିକ ମୁଖ୍ୟତଃ ଅନୁବଂଶଜନିତ ହୋଇଥିବା ବେଳେ ମାନସିକ ଲକ୍ଷଣଗୁଡ଼ିକ ପରିବେଶ ଦ୍ୱାରା ବିକଶିତ ହୋଇଥାଏ । ଏହି ଶାରୀରିକ ଓ ମାନସିକ ଲକ୍ଷଣଗୁଡ଼ିକର ଗୁଣିତକ ତଥା ପାରସ୍ପରିକ ପ୍ରତିକ୍ରିୟା ମାଧ୍ୟମରେ ଶିଶୁର ବ୍ୟକ୍ତିତ୍ୱ ବିକଶିତ ହୁଏ । ଶାରୀରିକ ଲକ୍ଷଣମାନଙ୍କ ମଧ୍ୟରେ ଶରୀରର ଗଠନ, ଉଚ୍ଚତା, ଚର୍ମ, କେଶ ଓ ଚକ୍ଷୁର ବର୍ଣ୍ଣ, ନାକର ଆକାର ଓ ଧୀଶକ୍ତି ପ୍ରଭୃତି ପ୍ରଧାନ । ଏହି ଲକ୍ଷଣଗୁଡ଼ିକ ବ୍ୟତୀତ ବ୍ୟକ୍ତିତ୍ୱର ଅନ୍ୟ ସମସ୍ତ ଲକ୍ଷଣ ପାରିପାର୍ଶ୍ୱିକ ଅବସ୍ଥା ପ୍ରଭାବରେ ବିକଶିତ ହୁଏ । ଆଧୁନିକ ମନୋବିଜ୍ଞାନୀଗଣ ଧୀଶକ୍ତି ଓ ବ୍ୟକ୍ତିତ୍ୱର ସର୍ବୋତ୍ତମ ବିକାଶ ପାଇଁ ପରିବେଷ୍ଟନୀ ଉପରେ ଯଥେଷ୍ଟ ଗୁରୁତ୍ୱ ଆରୋପ କରିଛନ୍ତି । ତେବେ ବ୍ୟକ୍ତିତ୍ୱର ବିକାଶରେ ଅନୁବଂଶର ଗୁରୁତ୍ୱକୁ ମଧ୍ୟ ଅସ୍ୱୀକାର କରାଯାଇନପାରେ ।

ଶିଶୁର ପାରିପାର୍ଶ୍ୱିକ ଅବସ୍ଥା କହିଲେ ତାର ପିତାମାତା, ପରିବାରର ଅନ୍ୟାନ୍ୟ ସଦସ୍ୟଗଣ, ଶିକ୍ଷକ ଓ ସଙ୍ଗୀ, ସହପାଠୀ ଇତ୍ୟାଦିଙ୍କୁ ବୁଝାଏ । ଏମାନଙ୍କ ଦ୍ୱାରା ପ୍ରଭାବିତ ହୋଇ ଶିଶୁ ସାମାଜିକ ଜୀବରୂପେ ଗଢ଼ିଉଠେ । ଜୀବନର ପ୍ରାରମ୍ଭିକ ଅବସ୍ଥାରେ ଶାରୀରିକ ଅକ୍ଷମତା ଯୋଗୁଁ ନବଜାତ ଶିଶୁକୁ ତାର ନିର୍ଭରଶୀଳ ହେବାକୁ ପଡ଼ିଥାଏ ଏବଂ ସମାଜ ଉପରେ ସମ୍ପୂର୍ଣ୍ଣ ଭାବରେ ନିର୍ଭର କରିବାକୁ ସେ ବାଧ୍ୟ ହୋଇଥାଏ । ଶିଶୁ ତାର ନିକଟତମ ସମ୍ପର୍କରେ ଆସୁଥିବା ବ୍ୟକ୍ତିମାନଙ୍କ ସଂସ୍ପର୍ଶରେ ଆସି ବିଭିନ୍ନ ସ୍ୱଭାବର ଅଧିକାରୀ ହୁଏ । ତାର ବ୍ୟକ୍ତିତ୍ୱର ବିକାଶ ଏହାର ଉପରେ ନିର୍ଭର କରିଥାଏ । ବୟସର ବୃଦ୍ଧି ସହିତ ବ୍ୟକ୍ତିତ୍ୱର ବିଭିନ୍ନ ଲକ୍ଷଣ ଅଧିକରୁ ଅଧିକ ବିକଶିତ ହୁଏ । ଶିଶୁର ଧୀଶକ୍ତି, ବିଚାର ଓ ଚିନ୍ତା ଶକ୍ତି, ଆବେଗିକ ବିକାଶ, ସାମାଜିକ ଓ ନୈତିକ ବିକାଶ, ସତ୍ୟବାଦିତା, ସାଧୁତା, ଶୃଙ୍ଖଳା ଓ ମୂଲ୍ୟବୋଧର ବିକାଶ, ଧୈର୍ଯ୍ୟ, ସହନଶୀଳତା, ପ୍ରତ୍ୟକ୍ଷଣ, ଶିକ୍ଷଣ, ଆତ୍ମପ୍ରତିଷ୍ଠା, ବିଚାରଶକ୍ତି ଓ ଆତ୍ମବିଶ୍ୱାସ, ପ୍ରତିଯୋଗୀ ଓ ସହଯୋଗୀ ମନୋଭାବ ଇତ୍ୟାଦି ନାନାବିଧ ଲକ୍ଷଣର ବିକାଶ ତାର ପାରିପାର୍ଶ୍ୱିକ ଅବସ୍ଥା ଉପରେ ନିର୍ଭର କରିଥାଏ । ଜନ୍ମ ସମୟରେ ଶିଶୁର ବ୍ୟକ୍ତିତ୍ୱକୁ ଖଣ୍ଡିଏ ଅଲେଖା କାଗଜ ସହିତ ତୁଳନା କରାଯାଇପାରେ । କେବଳ ସେତିକି ନୁହେଁ, ଏହି ଅବସ୍ଥାରେ ଏହା ଏତେ ନମନୀୟ ଓ ନରମଥାଏ ଯେ କଞ୍ଚା-ମାଟିରେ କୁମ୍ଭାର ବିଭିନ୍ନ ପାତ୍ର ଗଢ଼ିଲାପରି ପାରିପାର୍ଶ୍ୱିକ ଅବସ୍ଥାକୁ ପରିବର୍ତ୍ତନ କରି ପିଲାର ବ୍ୟକ୍ତିତ୍ୱକୁ ଅନେକାଂଶରେ ପରିବର୍ତ୍ତନ କରାଯାଇପାରେ । ମୋଟ ଉପରେ ଶିଶୁର ବ୍ୟକ୍ତିତ୍ୱ ଗଠନରେ ପରିବେଷ୍ଟନୀ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ ।

## ଶିଶୁର ବ୍ୟକ୍ତିତ୍ୱକୁ ପ୍ରଭାବିତ କରୁଥିବା ଉପାଦାନ ସମୂହ

### ପରିବାର

ପରିବାରର ବ୍ୟକ୍ତି ବିଶେଷତଃ ମା ହିଁ ଶିଶୁର ସର୍ବପ୍ରଥମ ପାରିପାର୍ଶ୍ୱିକ ଅବସ୍ଥା । ଜନ୍ମହେବା କ୍ଷଣି ମା ପିଲାକୁ କୋଳକୁ ନେଇ ଦୁଗ୍ଧ ପାନ କରାଇ କେବଳ ତାର ଶାରୀରିକ ଆବଶ୍ୟକତା ପୂରଣ କରେ ନାହିଁ; ମାତୃଗର୍ଭରେ ଉଷ୍ଣତା ଛାଡ଼ି ନୂଆ ବାତାବରଣ ସହିତ ନିଜକୁ ଉପଯୋଜନ କରିବାକୁ ଶିଶୁ ଅସୁବିଧାର ସମ୍ମୁଖୀନ ହେଉଥିବା ବେଳେ ମା କୋଳର ଉଷ୍ଣତା, ମାତୃସ୍ନେହର ଗଭୀରତା ଓ ସମ୍ବେଦନଶୀଳତା ଶିଶୁକୁ ମନସ୍ତାତ୍ତ୍ୱିକ ସନ୍ତୋଷ ପ୍ରଦାନ କରିଥାଏ । ଜୀବନର ପ୍ରଥମ ୫ ବର୍ଷ ଭିତରେ ମା ବ୍ୟତୀତ ବାପା, ଭାଇ, ଭଉଣୀ ଓ ପରିବାରର ଅନ୍ୟାନ୍ୟ ଆତ୍ମୀୟଗଣ ପିଲାର ବ୍ୟକ୍ତିତ୍ୱର ବିକାଶରେ ମହତ୍ତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାନ୍ତି । ଏମାନଙ୍କ ବ୍ୟକ୍ତିତ୍ୱର ବିଭିନ୍ନ ଲକ୍ଷଣର ବିକାଶ ପରିବାରର ପରିବେଷ୍ଟନୀ ଉପରେ ନିର୍ଭର କରେ । ଉପଯୁକ୍ତ ଓ ଆବଶ୍ୟକୀୟ ସ୍ନେହ, ଶ୍ରଦ୍ଧା ଓ ଲାଳନପାଳନ ନ ପାଇଲେ ଶିଶୁ ସନ୍ତୁଳିତ ବ୍ୟକ୍ତିତ୍ୱର ଅଧିକାରୀ ହୋଇପାରେ ନାହିଁ । କିନ୍ତୁ ଅତ୍ୟଧିକ ସ୍ନେହ, ଶ୍ରଦ୍ଧା ପାଇ ଅତି ଗେଲବସର ହୋଇ ବଢ଼ିଲେ ଅଥବା ଆବଶ୍ୟକୀୟ ସ୍ନେହ, ଶ୍ରଦ୍ଧା, ଯତ୍ନ ଓ ଲାଳନପାଳନର ଅଭାବ ଘଟିଲେ ବ୍ୟକ୍ତିତ୍ୱର ସୁସ୍ଥ ବିକାଶ ବ୍ୟାହତ ହୁଏ । ସେହିପରି, ଅର୍ଥର ପ୍ରାଚୁର୍ଯ୍ୟ ମଧ୍ୟରେ ବୃଦ୍ଧିଲାଭ କଲେ ମଧ୍ୟ ପିଲାର ପ୍ରତ୍ୟକ୍ଷ ଯତ୍ନ ନେବା ପାଇଁ ବାପା ମା'ଙ୍କର ସମୟ ବା ଇଚ୍ଛା ବା ଉଭୟ ନ ଥିଲେ ପିଲାର ବ୍ୟକ୍ତିତ୍ୱର ସନ୍ତୁଳିତ ବିକାଶ ହୋଇପାରେ ନାହିଁ ।

ପରିବାରର ବିଭିନ୍ନ ସଦସ୍ୟ ବିଶେଷତଃ ପିତାମାତାଙ୍କ ମଧ୍ୟରେ ଉତ୍ତମ ସମ୍ପର୍କ ନଥିଲେ ପିଲା ଉପରେ ନିଶ୍ଚିତ ଭାବରେ ତାର ପ୍ରତିକୂଳ ପ୍ରଭାବ ପଡ଼ିଥାଏ । ବିଶେଷକରି ତାର ଆବେଗିକ, ଭାବାତ୍ମକ ଓ ସାମାଜିକ ବିକାଶ ଉପରେ ଏହାର ମନ୍ଦ ପ୍ରଭାବ ଲକ୍ଷ୍ୟ କରାଯାଇଥାଏ । ଏପରି ପିଲାଙ୍କୁ ସମାଜର ଅନ୍ୟ ପିଲାଙ୍କ ସହିତ ଓ ବିଭିନ୍ନ ପରିସ୍ଥିତି ସହିତ ନିଜକୁ ଖାପ ଖୁଆଇ ଚଳାଇବାକୁ ଅସୁବିଧା ହୋଇଥାଏ । କଥାରେ ଅଛି "Problem children are the result of problem parents." ଏହି ଉକ୍ତିଟି ବହୁ କ୍ଷେତ୍ରରେ ସତ ହୋଇଥିବାର ପ୍ରମାଣ ମିଳିଅଛି । ବହୁ ବାଳଅପରାଧୀ ଏବଂ ମାନସିକ ରୋଗୀ ତଥା ଅସ୍ୱାଭାବିକ ବ୍ୟକ୍ତିତ୍ୱ ସମ୍ପୂର୍ଣ୍ଣ ସାମାଜିକ ଅସମଂଜସ ବ୍ୟକ୍ତିମାନଙ୍କୁ ବିଶ୍ଳେଷଣ କରି ଦେଖାଯାଇଛି ଯେ ସାଧାରଣତଃ ସେମାନେ ସମସ୍ୟାବହୁଳ ପରିବାରରେ ଜନ୍ମ ନେଇଥାନ୍ତି । ଏହି ଧରଣର ପିଲାମାନେ ପରିବାରର ପରିବେଷ୍ଟନୀ ମଧ୍ୟରେ ଶାନ୍ତି, ବିଶ୍ୱାସ, ଆଶା ଓ ଆଶ୍ୱାସନା ନ ପାଇ ଅଧିକାଂଶ ସମୟ ବାହାରେ ପ୍ରତିକୂଳ ପରିବେଷ୍ଟନୀରେ କଟାଇଥାନ୍ତି । ଯାହା ଫଳରେ ସେମାନଙ୍କର ବ୍ୟକ୍ତିତ୍ୱ ଅଧିକ ବିକଳାଙ୍ଗ ହୋଇଯାଏ ।

ମୋଟ ଉପରେ ପରିବାରର ଅସ୍ୱାସ୍ଥ୍ୟକର ମନସ୍ତାତ୍ତ୍ୱିକ ଜଳବାୟୁ ପିଲାକୁ ଉଚିତ ବ୍ୟକ୍ତିତ୍ୱ ବିକଶିତ କରାଇବାରେ ବଞ୍ଚିତ କରେ । ଯେଉଁ ପରିବାରରେ ପିତାମାତାଙ୍କର ସ୍ନେହ ଆଦର ପାଇବା ପରିବର୍ତ୍ତେ ପିଲା କେବଳ ଲାଞ୍ଛନା ଓ ତାଡ଼ନା ପାଏ, ଯାହାର ଜୀବନଧାରଣର ନିମ୍ନତମ ଆବଶ୍ୟକତାଗୁଡ଼ିକ ପୂରଣ ହୋଇନପାରେ, ତାର ଜୀବନ ହତାଶା ଓ ଭଗ୍ନାଶାର ଭଣ୍ଡାର ହୋଇଯାଏ । ବହୁ ସନ୍ତାନବିଶିଷ୍ଟ ଦରିଦ୍ର ପରିବାରର ପିତାମାତା ଆର୍ଥିକ ଅନାଟନ, ବିକଟ ଦାରିଦ୍ର୍ୟ ଓ ଅତ୍ୟଧିକ ପରିଶ୍ରମ ଯୋଗୁ ପିଲା ସହିତ କିଛି ସମୟ ଅତିବାହିତ କରିବାକୁ ଅଥବା ତାର ବିଭିନ୍ନ ଆବଶ୍ୟକତା ପୂରଣ କରିବାକୁ ଅକ୍ଷମ ହୁଅନ୍ତି । ଏହି କାରଣରୁ ସେମାନଙ୍କର ପିଲାମାନଙ୍କର ବ୍ୟକ୍ତିତ୍ୱର ବିଭିନ୍ନ ଅନ୍ତର୍ନିହିତ ଶକ୍ତି ତଥା ବିଶେଷ ଯୋଗ୍ୟତାର ଉପଯୁକ୍ତ ପରିପ୍ରକାଶ ହୋଇପାରେ ନାହିଁ । ପିତାମାତାଙ୍କର ସ୍ନେହ ଶ୍ରଦ୍ଧା ଓ ଯତ୍ନ ଅଭାବରୁ ସେମାନଙ୍କର ଉଚିତ ଆବେଗିକ ବିକାଶ ମଧ୍ୟ ହୋଇପାରେ ନାହିଁ ।

ଅତି ପିଲାଦିନରୁ ବାପା ମାଙ୍କଠାରୁ ଦୂରରେ ରହି ବଡ଼ ବଡ଼ ସହର ଓ ଛାତ୍ରାବାସମାନଙ୍କରେ ବାସ କରୁଥିବା ପିଲା ପରିବାରର ସ୍ନେହ ଆଦରରୁ ବଞ୍ଚିତ ହୁଅନ୍ତି । ଏକଥା ସତ ଯେ ପିତାମାତାଙ୍କର ସ୍ନେହର ଉଷ୍ମତା ଓ ଗଭୀରତା ଯିଏ ଅନୁଭବ କରିନାହିଁ ତା ପକ୍ଷରେ ଅନ୍ୟକୁ ସ୍ନେହ କରିବା ଓ ଅନ୍ୟର ସ୍ନେହକୁ ବିନା ଦ୍ୱିଧାରେ ଗ୍ରହଣ କରିବା କଷ୍ଟକର ହୋଇପଡ଼େ । ଅନ୍ୟ କେହି ତାକୁ ସ୍ନେହ କଲେ ସେ ହୁଏତ ସନ୍ଦେହ ଓ ଅବିଶ୍ୱାସ ମନୋଭାବ ନେଇ ଏହି ସ୍ନେହକୁ ପ୍ରତ୍ୟାଖ୍ୟାନ କରେ । ମୋଟ ଉପରେ ଶୈଶବାବସ୍ଥାରେ ସ୍ନେହ ଶ୍ରଦ୍ଧାର ଅଭାବ, ହତାଶା, ଅବିଶ୍ୱାସ ମନୋଭାବ, ଜୀବନ ପ୍ରତି ବିତୃଷ୍ଣା ଇତ୍ୟାଦି ପିଲାର ସୁସ୍ଥ ଓ ସନ୍ତୁଳିତ ବିକାଶକୁ ପ୍ରତିହତ କରିଥାଏ ।

ହତାଶା ଓ ବ୍ୟର୍ଥତା ମଧ୍ୟରେ ପିଲା ତାର ପ୍ରାରମ୍ଭିକ ଜୀବନ ଅତିବାହିତ କଲେ ଏବଂ ପିଲାର ପ୍ରତ୍ୟେକ ଯତ୍ନ ନେବାକୁ ପିତାମାତାଙ୍କର ସମୟ ନଥିଲେ, ଯେତେ ଅର୍ଥନୈତିକ ସୁବିଧା ଦେଲେ ମଧ୍ୟ ପିଲାର ଆବେଗର ଉପଯୁକ୍ତ ବିକାଶ ହୋଇପାରେନା । ପରିବାର ଶିଶୁର ସର୍ବପ୍ରଥମ ଓ ଘନିଷ୍ଠ ପାରିପାର୍ଶ୍ୱିକ ଅବସ୍ଥା ହୋଇଥିବାରୁ ପରିବାରର ଶିକ୍ଷା ଓ ଆଦର୍ଶ ଅନୁସାରେ ପିଲାର ବ୍ୟବହାର ଓ ଅନ୍ୟମାନଙ୍କ ପ୍ରତି ମନୋଭାବର ବିକାଶ ଘଟେ । ବିଶେଷତଃ ଜନ୍ମଠାରୁ ପ୍ରଥମ ୫ ବର୍ଷ ବୟସ ମଧ୍ୟରେ ପରିବାରର ପ୍ରଭାବ ଓ ପରିବାର ସହିତ ପିଲାର ସମ୍ପର୍କ ପିଲା ଉପରେ ଗଭୀର ପ୍ରଭାବ ବିସ୍ତାର କରିଥାଏ ।

ଯେଉଁ ପରିବାରରେ ପିତାମାତା ପିଲା ସମ୍ପର୍କରେ ଅଯଥା ଉଦ୍‌ବେଗ ତଥା ବ୍ୟଗ୍ରତା ପ୍ରକାଶ କରନ୍ତି ବା ଅତ୍ୟଧିକ ସତର୍କ ରହନ୍ତି, ଯେଉଁ ପିତାମାତା ସର୍ବଦା ଉଦ୍‌ବିଗ୍ନ ଓ ଚିନ୍ତିତ ସ୍ୱାସ୍ଥ୍ୟହୀନ ଓ ବିରସ, ତାଙ୍କର ସନ୍ତାନମାନଙ୍କଠାରେ ଆବେଗିକ ଅସ୍ୱାଭାବିକତା ଲକ୍ଷ୍ୟ କରାଯାଏ । ପିଲାକୁ ଅତ୍ୟଧିକ ଭୟଭୀତ କଲେ ବା ଶାସନ କଲେ ତାର ସ୍ୱଭାବର ଉପଯୁକ୍ତ ବିକାଶ ହୁଏ ନାହିଁ । ଫଳରେ ବିଦ୍ୟାଳୟରେ ତାର ପାଠପଢ଼ା ମଧ୍ୟ ବ୍ୟାହତ

ହୁଏ । ତାର ଆତ୍ମପ୍ରତ୍ୟୟ ନିମ୍ନଗାମୀ ହୁଏ । ଏହିସବୁ କାରଣରୁ ତାର ବ୍ୟକ୍ତିତ୍ୱର ସୁସ୍ଥ ଓ ସ୍ୱାଭାବିକ ବିକାଶ ବ୍ୟାହତ ହୁଏ ।

## ଗୃହ ବାହାରର ପରିବେଷ୍ଟନୀ

ଶିଶୁର ବ୍ୟକ୍ତିତ୍ୱର ବିକାଶ ପାଇଁ ପ୍ରଥମ ୫ ବର୍ଷର ପ୍ରଶିକ୍ଷଣ, ଅଭିଜ୍ଞତା ଓ ଲାଳନ-ପାଳନର ପ୍ରଭାବ କେତେ ଗୁରୁତ୍ୱପୂର୍ଣ୍ଣ ତାହା ପୂର୍ବରୁ ବର୍ଣ୍ଣନା କରାଯାଇଛି । ବୟସର ବୃଦ୍ଧି ସହିତ ଶିଶୁର ସାମାଜିକ ପରିବେଶର ପରିସର ବୃଦ୍ଧି ଲାଭ କରେ । ପରିବାର ବ୍ୟତୀତ ବିଦ୍ୟାଳୟ ଖେଳସାଥୀ ଓ ଅନ୍ୟାନ୍ୟ ସଙ୍ଗୀ ତଥା ସହକର୍ମୀବୃନ୍ଦ ଶିଶୁକୁ ମଧ୍ୟ ପ୍ରଭାବିତ କରନ୍ତି । ଜୀବନରେ ବିଭିନ୍ନ ଅଭିଜ୍ଞତା ଆହରଣ କରିବାପାଇଁ ସେ ନର୍ସରୀ ବିଦ୍ୟାଳୟରେ ପ୍ରଚୁର ସୁବିଧା ସୁଯୋଗ ଲାଭକରେ । ପରିବାରର ପରିବେଷ୍ଟନୀରେ ଅର୍ଜିତ ହୋଇଥିବା ଲକ୍ଷଣଗୁଡ଼ିକ ନୂତନ ପରିବେଶରେ ଦୃଢ଼ୀଭୂତ ହେବା ସଙ୍ଗେ ସଙ୍ଗେ କେତେକ ନୂତନ ଓ ସହାୟକ ଲକ୍ଷଣମାନଙ୍କର ବିକାଶ ଘଟେ । ପୁଣି ଗୃହ ପରିବେଶରେ ଶିକ୍ଷାଲାଭ କରିଥିବା କେତେକ ବ୍ୟବହାର ମଧ୍ୟ ଏଠାରେ ଶିଶୁକୁ ପରିବର୍ତ୍ତନ କିମ୍ବା ପରିତ୍ୟାଗ କରିବାକୁ ପଡ଼ିଥାଏ । ଏହି ଅବସ୍ଥାରେ ସାଙ୍ଗ ସାଥୀ, ସହପାଠୀ ଏବଂ ଶିକ୍ଷକମାନେ ଶିଶୁର ବ୍ୟକ୍ତିତ୍ୱ ଗଠନରେ ମୂଲ୍ୟବାନ ଭୂମିକା ଗ୍ରହଣ କରନ୍ତି । ନୂତନ ଭାଷା ଓ ନୂତନ ପ୍ରକାରର ବ୍ୟବହାର ସେ ସାଙ୍ଗସାଥୀମାନଙ୍କଠାରୁ ଅନୁକରଣକରି ନିଜର ବ୍ୟବହାରକୁ ବିକଶିତ କରିଏ ।

ଶିଶୁର ବ୍ୟକ୍ତିତ୍ୱ ଗଠନ କରିବାରେ ନର୍ସରୀ ବିଦ୍ୟାଳୟର ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କର ଦାୟିତ୍ୱ ଅତ୍ୟନ୍ତ ମହତ୍ୱପୂର୍ଣ୍ଣ ଅଟେ । ଶିଶୁର ବ୍ୟକ୍ତିତ୍ୱ ଗଠନର ପ୍ରାଣକେନ୍ଦ୍ର, ଶିକ୍ଷୟିତ୍ରୀ-ମାନଙ୍କୁ ସାଧାରଣତଃ ଏହି ଗୁରୁଭାର ବହନ କରିବାକୁ ପଡ଼ିଥାଏ । କିନ୍ତୁ ଏତେଗୁଡ଼ିଏ ପିଲାଙ୍କ ଦାୟିତ୍ୱ ଜଣେ ଦୁଇଜଣ ଶିକ୍ଷୟିତ୍ରୀଙ୍କ ଉପରେ ନ୍ୟସ୍ତ ଥିବାରୁ ସେ ମାତାର ସ୍ଥାନ ପୂରଣ କରିପାରନ୍ତି ନାହିଁ ବା ନିଜର ଦାୟିତ୍ୱ ସୁରୁରୁ ରୂପେ ତୁଲାଇ ପାରନ୍ତି ନାହିଁ । ବାଳବିଦ୍ୟାଳୟର ଶିକ୍ଷକ ଶିକ୍ଷୟିତ୍ରୀମାନେ ଶିଶୁକୁ ନିଜ କାମ ନିଜେ କରି ଯଥେଷ୍ଟ ଆତ୍ମ-ନିର୍ଭରଶୀଳ ହେବାକୁ ଶିକ୍ଷା ଦିଅନ୍ତି । ଶିଶୁର ବ୍ୟକ୍ତିଗତ ଉପଯୋଜନକୁ ବିସ୍ତୃତ କରିବା, ସମାଜରେ ଚଳପ୍ରଚଳ କରିବାପାଇଁ ବିଭିନ୍ନ କୁଶଳତା ଶିଖାଦେଇ ଶିଶୁର ବ୍ୟକ୍ତିତ୍ୱକୁ ଉନ୍ନତ ଓ ମାର୍ଜିତ କରିବା ଇତ୍ୟାଦି ଗୁରୁଦାୟିତ୍ୱ ସେମାନେ ବହନ କରିଥାନ୍ତି ।

ନର୍ସରୀ ବିଦ୍ୟାଳୟମାନଙ୍କରେ ନାମ ଲେଖାଇଥିବା ପିଲାମାନଙ୍କର ମା'ର ଯତ୍ନର ବିଶେଷ ଆବଶ୍ୟକତା ଥିବାରୁ ଏବଂ ଶିକ୍ଷୟିତ୍ରୀମାନଙ୍କୁ ମା'ର ସ୍ଥାନ ପୂରଣ କରିବାକୁ ପଡୁଥିବାରୁ ପ୍ରାକ୍ ପ୍ରାଥମିକ ଓ ପ୍ରାଥମିକ ବିଦ୍ୟାଳୟମାନଙ୍କରେ ଶିକ୍ଷକ ବଦଳରେ ଅଧିକରୁ ଅଧିକ ଶିକ୍ଷୟିତ୍ରୀଙ୍କୁ ନିଯୁକ୍ତ ଦେବା ଆବଶ୍ୟକ ।

ପିଲାର ବ୍ୟକ୍ତିତ୍ୱରେ ଆବଶ୍ୟକୀୟ ଲକ୍ଷଣଗୁଡ଼ିକର ବିକାଶକୁ ପ୍ରୋତ୍ସାହିତ ତଥା ପୁରସ୍କୃତ କରି ଏବଂ ଅନାବଶ୍ୟକ ଓ ଅସାମାଜିକ ଲକ୍ଷଣଗୁଡ଼ିକୁ ନିରୁତ୍ସାହିତ ତଥା ଦଣ୍ଡିତ

ଜର ବ୍ୟକ୍ତିତ୍ୱର ଉତ୍ତମ ଲକ୍ଷଣଗୁଡ଼ିକର ବିକାଶକୁ ତ୍ୱରାନ୍ୱିତ କରାଯାଇଥାଏ । ମୋଟ ଉପରେ ପ୍ରତିଷ୍ଠିତ ହୋଇଥିବା କେତେକ ଆଚରଣକୁ ସୁଦୃଢ଼ ଓ ଅନ୍ୟ କେତେକଙ୍କୁ ଦୁର୍ବଳ କରିବା ଫଳରେ ଶିଶୁର ଆଚରଣରେ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ ଲକ୍ଷ୍ୟ କରାଯାଏ ।

ପ୍ରାକ୍ ପ୍ରାଥମିକ ବିଦ୍ୟାଳୟମାନଙ୍କରେ ପ୍ରତ୍ୟେକ ଶିଶୁକୁ ବ୍ୟକ୍ତିଗତଭାବରେ ଶିକ୍ଷା ଦିଆଯାଉଥିବାରୁ ଯଥେଷ୍ଟ ସାମାଜିକ ବିକାଶ ହୋଇନଥିବା ଶିଶୁମାନଙ୍କର ଧୀଶକ୍ତିରେ ଉନ୍ନତି ଦେଖାଯାଏ, ବୌଦ୍ଧିକ ବିକାଶ ମଧ୍ୟ ତ୍ୱରାନ୍ୱିତ ହୁଏ । କେତେକ ମନସ୍ତତ୍ତ୍ୱବିତ୍‌ଙ୍କ ମତରେ ବାଳ-ବିଦ୍ୟାଳୟର ଅଭିଜ୍ଞତା ନିମ୍ନ ସାମାଜିକ ଓ ଆର୍ଥିକ ବର୍ଗର ଶିଶୁମାନଙ୍କ ନିମନ୍ତେ ଯଥେଷ୍ଟ ଲାଭଦାୟକ ହୋଇଥାଏ । ପ୍ରାକ୍ ପ୍ରାଥମିକ ବିଦ୍ୟାଳୟର ଅଭିଜ୍ଞତା ସାମାଜିକ ଉପଯୋଜନ ଓ ଉନ୍ନତ ଧରଣର ଶୃଙ୍ଖଳିତ ଅଭ୍ୟାସର ବିକାଶ ପଥରେ ଯଥେଷ୍ଟ ସହାୟକ ହୁଏ ବୋଲି ପ୍ରମାଣ ମିଳିଅଛି । ଏଥି ସହିତ ଏହି ଅଭିଜ୍ଞତା ସାମାଜିକ ସଂଯମନ (Social Intibition), ଦୁର୍ବଳ ମନୋଭାବ, ଅଚିହ୍ନା ବ୍ୟକ୍ତିମାନଙ୍କଠାରୁ ଦୂରେଇ ରହିବା, ଉଦ୍‌ବିଗ୍ନତା, ଅସନ୍ତୁଷ୍ଟ ମନୋଭାବ ଏବଂ ସର୍ବଦା ଅଭିଯୋଗ ଇତ୍ୟାଦି କରିବା ଅଭ୍ୟାସ ଦୂର କରିବାରେ ସାହାଯ୍ୟ କରେ ।

ପ୍ରାକ୍ ପ୍ରାଥମିକ ବିଦ୍ୟାଳୟ ଓ ପ୍ରାଥମିକ ବିଦ୍ୟାଳୟମାନଙ୍କରେ ସ୍ୱତନ୍ତ୍ର ଓ ବିଶେଷ ପ୍ରକାରର ପ୍ରଶିକ୍ଷଣ ଦେଇ ଶିଶୁମାନଙ୍କଠାରେ ନିର୍ଦ୍ଦିଷ୍ଟ ଧରଣର ବ୍ୟବହାର ଜାତ କରାଯାଇ ପାରିବ ।

ବିଭିନ୍ନ ଘଟଣାମାନଙ୍କ ମାଧ୍ୟମରେ ମଧ୍ୟ ଶିଶୁର ଅଗ୍ରଧର୍ଷୀ ବ୍ୟବହାରକୁ ନିୟନ୍ତ୍ରିତ କରାଯାଇପାରିବ । ଏକୁଟିଆ ବା ବୟସ୍କମାନଙ୍କ ସହିତ ଖେଳିବା ଅପେକ୍ଷା ଅନ୍ୟମାନଙ୍କ ସହିତ ମିଳିମିଶି ଖେଳିବାକୁ ଓ ବିଭିନ୍ନ କାର୍ଯ୍ୟରେ ସହଯୋଗ କରିବାକୁ ସେ ଶିକ୍ଷା କରେ । ସାଙ୍ଗସାଥୀ ଓ ସହପାଠୀଙ୍କ ସଂସ୍ପର୍ଶରେ ଆସିବାଦ୍ୱାରା ତାର ପ୍ରତିଯୋଗୀ ମନୋଭାବ ବୃଦ୍ଧି ପାଏ । ସେ କ୍ରମେ କ୍ରମେ ଉପଲବ୍ଧି କରେ ଯେ ଏହି ପ୍ରତିଯୋଗିତାମୂଳକ ସମାଜରେ ଅନ୍ୟମାନଙ୍କ ସହିତ ପ୍ରତିଯୋଗିତା କରି ବିଭିନ୍ନ କ୍ରିୟା କଳାପରେ ସେମାନଙ୍କୁ ଟପାଇ ପାରିଲେ ପିତାମାତା ଓ ସମାଜଦ୍ୱାରା ସେ ପ୍ରଶଂସିତ ତଥା ପୁରସ୍କୃତ ହୋଇପାରିବ । ଏହି ପ୍ରକାରର ଅଭିଜ୍ଞତା ମାଧ୍ୟମରେ ତାର ସାମାଜିକ ଅନୁକ୍ରିୟା ଅଧିକ ଦୃଢ଼ୀଭୂତ ହୁଏ ଏବଂ ସାମାଜିକ ପାରସ୍ପରିକ ପ୍ରତିକ୍ରିୟା ଅଧିକ ଜଟିଳ ହୁଏ ।

ବିଭିନ୍ନ ଅଧ୍ୟୟନ ମାନଙ୍କରୁ ଅନୁମିତ ହୁଏ ଯେ, ସାଧାରଣତଃ ୩।୪ ବର୍ଷ ବୟସ ମଧ୍ୟରେ ପ୍ରତିଯୋଗିତାମୂଳକ ଅନୁକ୍ରିୟା ଆରମ୍ଭ ହୁଏ ଏବଂ ୪ ରୁ ୬ବର୍ଷ ମଧ୍ୟରେ ଏହା ଅଧିକ ଶକ୍ତିଶାଳୀ ହୁଏ । ଗଣତାନ୍ତ୍ରିକ ଓ ସ୍ୱାଧୀନ ବାୟୁମଣ୍ଡଳରେ ପ୍ରତିପାଳିତ ହେଉଥିବା ଶିଶୁମାନେ ଅଧିକ ପ୍ରତିଯୋଗିତାମୂଳକ ବ୍ୟବହାର ପ୍ରଦର୍ଶନ କରନ୍ତି । ବାଳିକାମାନଙ୍କ

ଅପେକ୍ଷା ବାଳକମାନେ ଉଚ୍ଚ ମାଧ୍ୟମିକ ବର୍ଗ ଅପେକ୍ଷା ନିମ୍ନ ମାଧ୍ୟମିକ ବର୍ଗ ଏବଂ ଶ୍ରେଷ୍ଠ ଅପେକ୍ଷା ବଡ଼ ଶିଶୁମାନେ ଅଧିକ ପ୍ରତିଯୋଗିତା ପ୍ରଦର୍ଶନ କରନ୍ତି । ତେବେ ଏହି ପ୍ରତିଯୋଗିତାମୂଳକ ସମାଜରେ ସୁସ୍ଥ ପ୍ରତିଯୋଗିତା ମନୋଭାବର ଯଥେଷ୍ଟ ଗୁରୁତ୍ୱ ରହିଥିଲେ ମଧ୍ୟ ଅତ୍ୟଧିକ ପ୍ରତିଯୋଗିତା ମନୋଭାବର ବିକାଶ ଶିଶୁର ସୁସ୍ଥ ବ୍ୟକ୍ତିତ୍ୱର ବିକାଶ ପକ୍ଷରେ କ୍ଷତିକାରକ । ଅତ୍ୟଧିକ ପ୍ରତିଯୋଗିତା ମନୋଭାବ, ବ୍ୟର୍ଥତା ଓ ଭଗ୍ନାଶା ଜାତ କରାଇବାରେ ସହାୟକ ହୋଇଥାଏ ।

## ସଙ୍ଗୀ

ସଙ୍ଗୀମାନଙ୍କର ବ୍ୟବହାର ଓ କ୍ରିୟାକଳାପ ଶିଶୁର ମନୋଭାବ, ମୂଲ୍ୟବୋଧ, ଅଭିପ୍ରେରଣ ଇତ୍ୟାଦିକୁ ପ୍ରଭାବିତ କରେ କି ନାହିଁ, ତାହା ନିମ୍ନଲିଖିତ ଉପାଦାନ ଉପରେ ନିର୍ଭର କରେ । ଯଥା—ଶିଶୁର ଅନ୍ୟ ସଙ୍ଗୀମାନଙ୍କୁ ଆକର୍ଷଣ କରିବାର ଶକ୍ତି, ସ୍ନେହର ପରିମାଣ, ନିଜ ନିଜ ମଧ୍ୟରେ ଆନ୍ତରିକତାର ମାତ୍ରା, ଅନ୍ୟମାନଙ୍କ ଉପରେ ପ୍ରଭୁତ୍ୱ ବିସ୍ତାର କରିବା ବା ଅନ୍ୟମାନଙ୍କୁ ମାନି ଚାଲିବା ମନୋଭାବ ଇତ୍ୟାଦି ।

ଅସୁରକ୍ଷିତ ମନୋଭାବ, ଆତ୍ମବିଶ୍ୱାସର ଅଭାବ ଓ ନିଜର କ୍ରିୟାକଳାପ ଉପରେ ତାର ଯଥେଷ୍ଟ ବିଶ୍ୱାସ ନଥିଲେ ସାଧାରଣତଃ ଅନ୍ୟ ସଙ୍ଗୀ ତାକୁ ପ୍ରଭାବିତ କରିଥାନ୍ତି । ଅନ୍ୟଥା ଅନ୍ୟ ସଙ୍ଗୀମାନଙ୍କର ପ୍ରଭାବ ତା ଉପରେ ଏତେ ସହଜରେ ପଡ଼େନାହିଁ । କୌଣସି ଗଠନାତ୍ମକ ବା ଏକାଗ୍ରତା ଆବଶ୍ୟକ କରୁଥିବା କାର୍ଯ୍ୟ କରୁଥିଲେ ଶିଶୁ ଅନ୍ୟ ସଙ୍ଗୀମାନଙ୍କର ବ୍ୟବହାର ଦ୍ୱାରା ପ୍ରଭାବିତ ହୋଇନଥାଏ ।

## ମଧ୍ୟ-ବାଲ୍ୟକାଳରେ ବ୍ୟକ୍ତିତ୍ୱର ବିକାଶ

ଶିଶୁର ବ୍ୟକ୍ତିତ୍ୱ ପିତାମାତାଙ୍କର ବ୍ୟବହାରର କୌଣସି ଏକ ନିର୍ଦ୍ଦିଷ୍ଟ ଦିଗଦ୍ୱାରା ପ୍ରଭାବିତ ନ ହୋଇ ସେମାନଙ୍କର ବିଭିନ୍ନ ବ୍ୟବହାରର ମିଳିତ ପ୍ରକ୍ରିୟା ଦ୍ୱାରା ପ୍ରଭାବିତ ହୋଇଥାଏ । ପିତାମାତା ଯଦି ସହନଶୀଳ ଓ ସ୍ନେହୀ ନହୋଇ ପିଲାପ୍ରତି ଅଗ୍ରଧର୍ଷୀ ମନୋଭାବ ପ୍ରଦର୍ଶନ କରନ୍ତି, ପିଲାମନରେ ପିତାମାତାଙ୍କ ପ୍ରତି ବିତୃଷ୍ଣା ଓ ଘୃଣାଭାବ ଜାତ ହୁଏ । ସ୍ନେହୀ ଓ ପିଲାର ବିଭିନ୍ନ କ୍ରିୟାକଳାପକୁ ଅନୁମୋଦନ କରୁଥିବା ପିତାମାତାଙ୍କର ସନ୍ତାନସନ୍ତତିଗଣ ସାଧାରଣତଃ ସକ୍ରିୟ, ସୃଜନଶୀଳ, ସ୍ୱାଧୀନଚେତା, ସାମାଜିକ ଓ ବନ୍ଧୁତ୍ୱ ମନୋଭାବାପନ୍ନ ହୋଇଥାନ୍ତି । ଉଭୟ ସ୍ନେହ ଓ କଟକଣା ମଧ୍ୟରେ ପାଳିତ ହୋଇଥିବା ପିଲାମାନେ ସ୍ନେହ ଓ ଅନୁମୋଦନ ଲାଭ କରୁଥିବା ଶିଶୁଙ୍କ ଅପେକ୍ଷା ଅଧିକ ନିର୍ଭରଶୀଳ, କମ୍ ବନ୍ଧୁତ୍ୱଭାବାପନ୍ନ ଓ କମ୍ ସୃଜନଶୀଳ ହୋଇଥାନ୍ତି ।

ବିଭିନ୍ନ ବାଳ ଅପରାଧୀମାନଙ୍କର ବ୍ୟକ୍ତିତ୍ୱକୁ ବିଶ୍ଳେଷଣ କରି ଦେଖାଯାଇଛି ଯେ ସେମାନେ ଅବହେଳିତ ଅଯୋଗ୍ୟ ଓ ଅନିୟନ୍ତ୍ରିତ ପରିବେଶରେ ବୃଦ୍ଧିଲାଭ କରିଥାନ୍ତି ।

ଅତ୍ୟଧିକ ଅସଂଗତ ଓ ପରସ୍ପର ବିରୋଧୀ ଶୃଙ୍ଖଳା ପ୍ରୟୋଗ କରି ତାର ବ୍ୟକ୍ତିତ୍ୱରେ ବିଦ୍ରୋହ ମନୋଭାବ ଉଦ୍ରେକ କରାନ୍ତି । ତାର ଆଶା ଆକାଂକ୍ଷା ଅବଦମିତ ହୋଇ ତାର ବ୍ୟବହାର ଅଭ୍ୟନ୍ତରମୁଖୀ ହୋଇଯାଏ ।

ଯେଉଁ କ୍ଷେତ୍ରରେ ମାତାପିତା ଶିଶୁ ପାଳନରେ ପରିବର୍ତ୍ତନୀୟ ଶୃଙ୍ଖଳା ପ୍ରୟୋଗ କରନ୍ତି ସେ କ୍ଷେତ୍ରରେ ଶିଶୁ ସାଧାରଣତଃ ଆତ୍ମବିଶ୍ୱାସୀ ଓ ଦୃଢ଼ ମନୋଭାବାପନ୍ନ ହୋଇଥାଏ । ଏହି ପିଲାମାନେ ସଦା ସର୍ବଦା ନିଜର ଦାବୀକୁ ପ୍ରତିଷ୍ଠା କରିବାକୁ ଚେଷ୍ଟା କରନ୍ତି ।

ମଧ୍ୟ-ବାଲ୍ୟକାଳରେ ବିଦ୍ୟାଳୟ ଓ ସହପାଠୀମାନଙ୍କର ପ୍ରଭାବ ଶିଶୁର ବ୍ୟକ୍ତିତ୍ୱ ଗଠନରେ ଅନୁଭୂତ ହେଉଥିଲେ ମଧ୍ୟ ପରିବାରର ପରିବେଷ୍ଟନୀ ଓ ପିତାମାତାଙ୍କର ଶିଶୁ ପାଳନ ପଦ୍ଧତି ଶିଶୁର ବ୍ୟକ୍ତିତ୍ୱ ଗଠନରେ ମହତ୍ତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ ।

ଶିଶୁର ବ୍ୟକ୍ତିତ୍ୱ ଓ ସାମାଜିକତାର ଉତ୍ତମ ବିକାଶ ପାଇଁ ତାର ବ୍ୟବହାରକୁ ନିୟନ୍ତ୍ରଣ କରିବା ଆବଶ୍ୟକ । ନିୟନ୍ତ୍ରଣ ନ କଲେ ଏକ ଫଳପ୍ରଦ, ସାଧାରଣ ଓ ସୁସ୍ଥ ସାମାଜିକତାର ବିକାଶପାଇଁ ଯେଉଁ କୁଶଳତା ମନୋଭାବ ଓ ଆଚରଣ ପ୍ରଦର୍ଶନ ଆବଶ୍ୟକ ଓ ପରସ୍ପର ଉପରେ ନିର୍ଭର କରି ଚଳିବାର ଯେଉଁ ଆବଶ୍ୟକତା, ତାହା ଶିଖିବା ସମ୍ଭବ ହୁଏ ନାହିଁ । କିନ୍ତୁ ଅପର ପକ୍ଷରେ, ଅତ୍ୟଧିକ ନିୟନ୍ତ୍ରଣ ଓ ଶୃଙ୍ଖଳା ଶିଶୁର ଆତ୍ମବିଶ୍ୱାସକୁ ବ୍ୟାହତ କରେ । ମୋଟ ଉପରେ ଶୃଙ୍ଖଳା ନମନୀୟ ଅଥବା ଅପରିବର୍ତ୍ତନୀୟ, କିନ୍ତୁ ଦୃଢ଼ ଓ ସଙ୍ଗତ ହେଲେ ଶିଶୁର ସହଯୋଗୀ ମନୋଭାବ, ଦାୟିତ୍ୱବୋଧ ଓ ଶୃଙ୍ଖଳିତ ବ୍ୟବହାର ଇତ୍ୟାଦିର ଉପଯୁକ୍ତ ବିକାଶ ହୁଏ । ଶିଶୁ ଉପରେ କଠୋର ଶୃଙ୍ଖଳା ଜାରି ହେଲେ ଅଥବା ତା'ର ବ୍ୟବହାରକୁ ମୋଟେ ଶୃଙ୍ଖଳିତ ନ କଲେ ଶିଶୁର ଯେପରି କ୍ଷତି ହୋଇଥାଏ ଅସଙ୍ଗତ ଶୃଙ୍ଖଳା ଶିଶୁର ବ୍ୟକ୍ତିତ୍ୱ ପାଇଁ ସେହିପରି ହାନିକାରକ ହୋଇଥାଏ ।

## ଆତ୍ମ ପ୍ରତ୍ୟୟର ବିକାଶ

ନିଜର ଯୋଗ୍ୟତା ଓ ଶକ୍ତି ସମ୍ପର୍କରେ ଶିଶୁର ଧାରଣା ଏବଂ ନିଜ ପ୍ରତି ତାର ମନୋଭାବ, ତାର ଆତ୍ମପ୍ରତ୍ୟୟ ବିକାଶ କରିବାରେ ସାହାଯ୍ୟ କରିଥାଏ । ଅନୁକୂଳ ଆତ୍ମ-ପ୍ରତ୍ୟୟର ବିକାଶ ନହେଲେ ଶିଶୁ ନିଜକୁ ନିଃସ୍ୱ, ଅସହାୟ, ଅସୁରକ୍ଷିତ, ନ୍ୟୂନ ଓ ମୂଲ୍ୟହୀନ ମନେକରେ । ନ୍ୟୂନ ମନୋଭାବ ଯୋଗୁ ସେ କୌଣସି ପ୍ରତିଯୋଗିତାରେ ଆତ୍ମବିଶ୍ୱାସର ସହିତ ଭାଗ ନେବାକୁ ସାହସ କରେ ନାହିଁ । ''ପ୍ରତିଯୋଗିତାରେ ଭାଗ ନେଲେ ବିଜୟୀ ହୋଇପାରିବି ନାହିଁ'' ବା ''ନୂତନ କାର୍ଯ୍ୟ ହାତକୁ ନେଲେ ତାକୁ ଠିକ୍ ଭାବରେ ସମାପନ କରିପାରିବି ନାହିଁ''—ଏହି ଦୁର୍ବଳ ମନୋଭାବ ତାର ସମସ୍ତ କ୍ରିୟା କଳାପରେ ବାଧା ସୃଷ୍ଟି କରିଥାଏ । ଫଳରେ ତାର ନ୍ୟୂନ ମନୋଭାବ ଅଧିକରୁ ଅଧିକତର ହୁଏ । ଅନ୍ୟ-ମାନଙ୍କ ସହ ସହଜରେ ମିଳାମିଶା କରିବାପାଇଁ ଏମାନଙ୍କୁ ବହୁତ ଅସୁବିଧା ହୁଏ । ଏହିପରି

ପିଲାମାନେ ସର୍ବଦା ନିଜକୁ ଅନ୍ୟମାନଙ୍କଠାରୁ ବିଚ୍ଛିନ୍ନ ମନେକରନ୍ତି । କୌଣସି ନିର୍ଦ୍ଦିଷ୍ଟ କାରଣ ନଥାଇ ଏହି ପିଲାମାନେ ସର୍ବଦା ନିଜକୁ ଦୋଷୀ ମନେକରି ଲଜ୍ଜା ଓ ଅସୁଖକର ଅନୁଭବ ଦ୍ୱାରା ନିଜକୁ ଭାରାକ୍ରାନ୍ତ କରିଦିଅନ୍ତି । ନିଜର ଯୋଗ୍ୟତା ଓ ଅନ୍ତର୍ନିହିତ ଶକ୍ତିକୁ ସେମାନେ ସର୍ବଦା ନ୍ୟୂନ କଳନା କରନ୍ତି । ଏଥି ସହିତ ଅତିଶୟ ଉତ୍କଣ୍ଠା ଓ ନିଜ ବିଷୟରେ ମନ୍ଦ ଧାରଣା ବିକଶିତ ହୁଏ । ତାର ଏହି ପ୍ରକାରର ନକାରାତ୍ମକ ମନୋଭାବ ସାମାନ୍ୟକରଣ ହୋଇ ଅନ୍ୟ ସମସ୍ତ ପରିସ୍ଥିତିକୁ ବ୍ୟାପେ । ଏହା ଫଳରେ ତାର ବ୍ୟକ୍ତିତ୍ୱରେ ଅନ୍ୟମାନଙ୍କ ପ୍ରତି ପ୍ରତିରକ୍ଷାମୂଳକ ମନୋଭାବ ଲକ୍ଷ୍ୟ କରାଯାଏ । ଶିଶୁର ବ୍ୟକ୍ତିତ୍ୱରେ ଏହି ପ୍ରକାରର ନିଷେଧାତ୍ମକ ଆତ୍ମପ୍ରତ୍ୟୟ ବିକାଶ ହେବା ଯୋଗୁଁ ବିଦ୍ୟାଳୟରେ ଶିଶୁକୁ ପ୍ରାରମ୍ଭିକ ଉପଯୋଜନ କରିବାକୁ ଅସୁବିଧା ହୁଏ ଏବଂ ତାର ପାଠପଢ଼ା ବ୍ୟାହତ ହୁଏ । ସେ ଶ୍ରେଣୀର ଅନ୍ୟ ପିଲାଙ୍କ ସହିତ ତାଳ ମିଶାଇ ଆଗେଇ ପାରେନାହିଁ । ଶିକ୍ଷକ ଶିକ୍ଷୟିତ୍ରୀ ଓ ବାପା ମା'ଙ୍କ ଦ୍ୱାରା ତିରସ୍କୃତ ଓ ଦଣ୍ଡିତ ହୁଏ । ଏହା ତାର ମନରେ ଦୁଃଖ ଓ ହତାଶା ସୃଷ୍ଟି କରିବା ସଙ୍ଗେ ସଙ୍ଗେ ତାର ବ୍ୟକ୍ତିଗତ ଉପଯୋଜନରେ ବହୁ ଅସୁବିଧା ପରିଲକ୍ଷିତ ହୁଏ ଏବଂ ତାର ଆତ୍ମପ୍ରତ୍ୟୟର ବିକାଶ ଉପରେ ଏହାର ମନ୍ଦ ପ୍ରଭାବ ପଡ଼ିଥାଏ ।

ଏହାଛଡ଼ା ପିତାମାତାଙ୍କର ଶିଶୁ ପ୍ରତି ବ୍ୟବହାର ତାର ଆତ୍ମପ୍ରତ୍ୟୟର ବିକାଶ ଉପରେ ଗଭୀର ପ୍ରଭାବ ପକାଇଥାଏ । ସର୍ବଦା ବାପା ମା ଗୋଟିଏ ପିଲାକୁ ଭଲ, ଶାନ୍ତଶିଷ୍ଟ ବୁଦ୍ଧିଆ ବୋଲି କହିଲେ ପିଲା ନିଜକୁ ସେହିପରି ଭାବେ । ଅନ୍ୟପକ୍ଷରେ ସବୁବେଳେ ଗୋଟିଏ ପିଲାକୁ ବୋକା ବା ଦୁଷ୍ଟ ବୋଲି କହିଲେ ପିଲା ନିଜକୁ ସେହିପରି ଭାବରେ ପ୍ରତ୍ୟକ୍ଷଣ କରିବାକୁ ଶିଖେ ।

ସକାରାତ୍ମକ ଆତ୍ମପ୍ରତ୍ୟୟ ଆତ୍ମବିଶ୍ୱାସ ବୃଦ୍ଧି କରିବାରେ ସାହାଯ୍ୟ କରୁଥିବା ସ୍ଥଳେ ନକାରାତ୍ମକ ଆତ୍ମପ୍ରତ୍ୟୟ ଆତ୍ମବିଶ୍ୱାସକୁ ବ୍ୟାହତ କରାଇଥାଏ । ଏହି କାରଣରୁ ନିଜର ମନୋଭାବ ଅନ୍ୟ ନିକଟରେ ପ୍ରକାଶ କରିବାକୁ ଏମାନେ କୁଣ୍ଠାବୋଧ କରନ୍ତି । ପିତାମାତା-ଙ୍କର ଆତ୍ମପ୍ରତ୍ୟୟ ଉଚ୍ଚ ହୋଇଥିଲେ ପିଲାର ଆତ୍ମପ୍ରତ୍ୟୟ ମଧ୍ୟ ଉଚ୍ଚ ହୁଏ । ବିଭିନ୍ନ ଅଧ୍ୟୟନର ଫଳାଫଳରୁ ଜଣାଯାଇଛି ଯେ, ପିତାମାତାଙ୍କର ଉଚ୍ଚ ଆତ୍ମପ୍ରତ୍ୟୟ ଥିଲେ ଶିଶୁର ଆତ୍ମପ୍ରତ୍ୟୟ ମଧ୍ୟ ଉଚ୍ଚ ହୋଇଥାଏ । ଉଚ୍ଚ ଆତ୍ମପ୍ରତ୍ୟୟ ଥିବା ପିତାମାତାଙ୍କର ସେମାନଙ୍କର ପିଲା ସହିତ ଉଚ୍ଚ ବୁଝାମଣା ଥାଏ । ପିଲାକୁ ସେମାନେ ଉଚ୍ଚାଭିଳାଷୀ ହେବାକୁ ଉତ୍ସାହିତ କରନ୍ତି ଏବଂ ସେଥିପାଇଁ ଉପଯୁକ୍ତ ବାତାବରଣ ସୃଷ୍ଟି କରିଥାନ୍ତି । ଶିଶୁର ବ୍ୟବହାର ଓ ବ୍ୟକ୍ତିତ୍ୱ ଗଠନରେ ଦଣ୍ଡ ଅପେକ୍ଷା ପୁରସ୍କାରର ଅଧିକ ସାହାଯ୍ୟ ନିଅନ୍ତି । ଅନ୍ୟପକ୍ଷରେ ନିମ୍ନ ଆତ୍ମପ୍ରତ୍ୟୟ ଥିବା ପିତାମାତା ସେମାନଙ୍କ ଶିଶୁ ପ୍ରତି ସ୍ନେହ ଓ ଅନୁରାଗ ପ୍ରଦର୍ଶନ କରିବା ପରିବର୍ତ୍ତେ ସାଧାରଣତଃ ଆଗ୍ରହଶୂନ୍ୟତା ଓ ଉଦାସୀନତା ପ୍ରଦର୍ଶନ କରନ୍ତି । ତାର ପ୍ରତ୍ୟେକ କ୍ରିୟାକଳାପକୁ ବିଶେଷ କୌଣସି କାରଣ ନଥାଇ ବିରୋଧ କରନ୍ତି ।

ପିଲାର ଅନ୍ତର୍ନିହିତ ଶକ୍ତିଗୁଡ଼ିକର ଯଥାଯଥ ବିକାଶ କରିବାରେ ସହାୟତା ନକଲେ ତାକୁ ସର୍ବଦା ହେୟ ଓ ନ୍ୟୂନ କରି ଦେଖିଲେ ତାର ଆତ୍ମପ୍ରତ୍ୟୟର ଉଚିତ ବିକାଶ ହୁଏନାହିଁ ଏବଂ ଏହାର ମନ୍ଦ ପ୍ରଭାବ ତାର ବ୍ୟକ୍ତିତ୍ୱ ଉପରେ ପଡ଼ିଥାଏ । ଉଚିତ ଶାସନ, ଉପଦେଶନ ଓ ତତ୍ତ୍ୱାବଧାନର ଅଭାବ ଘଟିଲେ ମଧ୍ୟ ପିଲାର ବ୍ୟକ୍ତିତ୍ୱର ବହୁମୂଲ୍ୟ ଲକ୍ଷଣ-ଗୁଡ଼ିକ ଅବିକଶିତ ହୋଇ ରହିଯାଏ । ତାର ବ୍ୟକ୍ତିତ୍ୱ ପୂର୍ଣ୍ଣତା ଲାଭ କରିପାରେ ନାହିଁ ।

ଏସବୁ ବ୍ୟତୀତ ପିଲାର ବ୍ୟକ୍ତିତ୍ୱ ବିକାଶରେ ପିତା-ମାତା-ଶିଶୁ ସମ୍ପର୍କ, ସହୋଦର-ଙ୍କର ପ୍ରଭାବ, ସାମାଜିକ ଶ୍ରେଣୀର ଭୂମିକା, ଲିଙ୍ଗର ଭୂମିକା ଇତ୍ୟାଦିର ଗୁରୁତ୍ୱପୂର୍ଣ୍ଣ ପ୍ରଭାବ ରହିଛି ।

## ଶିଶୁର ବ୍ୟକ୍ତିତ୍ୱରେ ବିବେକ ଓ ନୈତିକ ମାନର ବିକାଶ

ବିବେକ ଓ ନୈତିକ ମାନର ମୂଳଦୁଆ ପିଲାର ବ୍ୟକ୍ତିତ୍ୱରେ ପ୍ରାକ୍ ବିଦ୍ୟାଳୟ ସ୍ତରରେ ସ୍ଥାପିତ ହୋଇଥିଲେ ମଧ୍ୟ, ମଧ୍ୟ ବାଲ୍ୟାବସ୍ଥାରେ ଏହା ଅତି ଦ୍ରୁତ ଗତିରେ ବିକଶିତ ହୋଇଥାଏ । ଏଥିପୂର୍ବରୁ ଶିଶୁ ଯେତେବେଳେ ଯାହା ଇଚ୍ଛାହୁଏ, ତାହା ପାଇବାକୁ ଚେଷ୍ଟା କରିଥାଏ । କେଉଁ କାମଟା ଭଲ, କେଉଁଟା ମନ୍ଦ, କେଉଁଟା କରିବା ଉଚିତ, କେଉଁଟା ଅନୁଚିତ ଏ ଧାରଣା ତାର ବିଶେଷ ବିକଶିତ ହୋଇନଥାଏ । ତାର ସମସ୍ତ କ୍ରିୟାକଳାପ ପ୍ରଧାନତଃ ତାର ନିଜର ଆବଶ୍ୟକତା, ସ୍ୱାର୍ଥ, ଆଗ୍ରହ ଓ ରୁଚିମାନଙ୍କୁ ନେଇ ଗଠିତ ହୋଇଥାଏ । ବୟସ ଓ ଅଭିଜ୍ଞତାର ବୃଦ୍ଧି ସହିତ କାଳକ୍ରମେ ତାର ସାମାଜିକତାର ବିକାଶ ଘଟେ ଓ ତାର ନୈତିକତା ତଥା ବିବେକର ମଧ୍ୟ ବିକାଶ ହୋଇଥାଏ । ବୟସ୍କମାନଙ୍କର କ୍ରିୟାକଳାପକୁ ପର୍ଯ୍ୟବେକ୍ଷଣ କରି ଏବଂ ସେମାନଙ୍କର ଉପଦେଶକୁ ଗ୍ରହଣ କରି ସାମାଜିକତା ମାଧ୍ୟମରେ ଶିଶୁର ଅହଂକେନ୍ଦ୍ରିତ ମନୋଭାବରେ ସଂଶୋଧନ ତଥା ପରିବର୍ତ୍ତନ ହୁଏ । ସମାଜର ନିୟମକାନୁନ ଓ ବିଧିବିଧାନ ସହିତ ସେ ନିଜର ଇଚ୍ଛା ଓ ଅଭିଳାଷକୁ ପରିଚାଳିତ କରି ନୈତିକ ମାନର ବିକାଶ କରିବାକୁ ଚେଷ୍ଟା କରେ । "ଯେତେବେଳେ ଯାହା ଚାହିଁବ ତାହା ପାଇବ ।" ଏହି ମନୋଭାବକୁ ଦମନ କରି ପିତାମାତା ସାଙ୍ଗସାଥୀ ଇତ୍ୟାଦିଙ୍କ ସହିତ ପାରସ୍ପରିକ ପ୍ରକ୍ରିୟାରେ ଆବଦ୍ଧ ରହି ଶିଶୁ ତାର ନୈତିକ ମାନର ବିକାଶ କରେ । ଗୃହ ପରିବେଷ୍ଟନୀ, ବିଦ୍ୟାଳୟ, ସାମାଜିକ ପରିବେଶ, ପୁସ୍ତକ, ରେଡ଼ିଓ, ଟେଲିଭିଜନ, ସମ୍ବାଦପତ୍ର ଓ ଚଳଚ୍ଚିତ୍ର ପ୍ରଭୃତି ପିଲାର ନୈତିକ ମାନ ତଥା ବିବେକର ବିକାଶରେ ସାହାଯ୍ୟ କରନ୍ତି । କାଳକ୍ରମେ ଯେତେବେଳେ ବାଳକ ବାଳିକାଙ୍କର ନୈତିକ ମାନର ସମ୍ପୂର୍ଣ୍ଣ ବିକାଶ ହୋଇଯାଏ, ସେମାନେ କେଉଁଟା ଭଲ, କେଉଁଟା ମନ୍ଦ, କେଉଁଟା ଗ୍ରହଣୀୟ, କେଉଁଟା ଅଗ୍ରହଣୀୟ ତା ମଧ୍ୟରେ ପାର୍ଥକ୍ୟ ବାରିପାରନ୍ତି ଏବଂ କ'ଣ କରିବା ଉଚିତ ବା ଅନୁଚିତ ତାହା ମଧ୍ୟ ଜାଣିପାରନ୍ତି । ବିଭିନ୍ନ ଅଧ୍ୟୟନ ଓ ପର୍ଯ୍ୟବେକ୍ଷଣରୁ ଜଣାଯାଇଛି ଯେ,

୧୨ ବର୍ଷ ପୂର୍ବରୁ ପିଲାର ନୈତିକତା ଓ ବିବେକ ଅତ୍ୟନ୍ତ କଠୋର ଓ ଅନମନୀୟ ହୋଇଥାଏ । ଯଥା—"ସତ କହିବ, ସତ କହି ପଛେ ମଲେ ମରିବ" । କିନ୍ତୁ ପିଆଜେଙ୍କ ମତରେ ପୂର୍ବରୁ ପିଲା ମନରେ ନ୍ୟାୟ, ଅନ୍ୟାୟ, ଠିକ୍ ଭୁଲ, ଭଲମନ୍ଦ ଇତ୍ୟାଦି ସମ୍ପର୍କରେ ଥିବା ଧାରଣା ୧୨ ବର୍ଷ ବେଳକୁ ପରିସ୍ଥିତିକୁ ଦୃଷ୍ଟି ପରିବର୍ତ୍ତିତ ହୋଇଥାଏ । ଯଥା—"ସତ କହିବ କିନ୍ତୁ ଅପ୍ରିୟ ସତ କହିବ ନାହିଁ ।" ଜଣେ ନିର୍ଦ୍ଦୋଷ ଲୋକକୁ ବଞ୍ଚାଇବା ପାଇଁ ମିଛ କହିବା ଅନ୍ୟାୟ ବା ପାପ ନୁହେଁ ପ୍ରଭୃତି ଏହିପରି ନମନୀୟ କଥା ପରିବର୍ତ୍ତିତ ମୂଲ୍ୟବୋଧର ଉଦାହରଣ । ଦେଖାଯାଇଛି ଯେ ପ୍ରାୟ ୧୨ବର୍ଷ ବୟସ ବେଳକୁ ସମାଜର ବିଭିନ୍ନ ସ୍ୱୀକୃତ ନିୟମ କାନୁନ ବିଷୟରେ ତାର ସାଧାରଣ ଜ୍ଞାନ ହୋଇଯାଏ । ବୟସ୍କମାନଙ୍କ ବ୍ୟବହାରରୁ ସେ ନିଜ ଚରିତ୍ର ଗଠନ ପାଇଁ ପ୍ରେରଣା ପାଏ । ବିଭିନ୍ନ ପରିସ୍ଥିତିରେ ସେ ଗ୍ରହଣୀୟ ଓ ଅଗ୍ରହଣୀୟ ବ୍ୟବହାରର ମୂଲ୍ୟ ଜାଣିବାକୁ ଚେଷ୍ଟା କରେ । ଏହି ବୟସରେ ସେ ଧର୍ମ, ସଚ୍ଚୋଟ ପଣିଆ ସତ୍ୟବାଦିତା, ସାଧୁତା, ନୀତି ନିୟମ ଉପରେ ଯଥେଷ୍ଟ ଗୁରୁତ୍ୱ ଦିଏ । ସାଧାରଣତଃ ସତ୍ ଓ ଅସତ୍ ପ୍ରତ୍ୟୟ ୯ରୁ ୧୨ ବର୍ଷ ବୟସ ମଧ୍ୟରେ ପିଲାଠାରେ ବିକଶିତ ହୋଇଥାଏ ।

ମଧ୍ୟ-ବାଲ୍ୟାବସ୍ଥାରେ ଆବଶ୍ୟକୀୟ ପରିମାଣରେ ବିବେକର ବିକାଶ ନହେଲେ ଯୌବନ ଓ ବୟସ୍କ ଅବସ୍ଥାରେ ସେ ଅସତ୍ ଓ ଅନୀତି କାର୍ଯ୍ୟ କରିବାକୁ କୁଣ୍ଠାବୋଧ କରେ ନାହିଁ । ଅପର ପକ୍ଷରେ ପିଲାର ବିବେକ ଓ ନୈତିକ ମାନ ତଥା ପରମ ଅହଂର ଉପଯୁକ୍ତ ବିକାଶ ହୋଇଥିଲେ ପିଲାର ସାମାଜିକତାର ବିକାଶ ବ୍ୟାହତ ହୁଏନାହିଁ ବରଂ ସେ ସମାଜରେ ଗ୍ରହଣୀୟ ଓ ଆଦୃତ ହୁଏ ।

ବ୍ୟକ୍ତିତ୍ୱରେ ବିବେକ, ନୈତିକ ମାନ ଓ ବିଭିନ୍ନ ମୂଲ୍ୟବୋଧର ପୂର୍ଣ୍ଣବିକାଶ ପାଇଁ ଶିକ୍ଷଣ ଗୁଣାତ୍ମକ ପରିପକ୍ୱତା ଓ କେତେକ ଜଟିଳ ମନସ୍ତାତ୍ତ୍ୱିକ ପ୍ରକ୍ରିୟାର ବିକାଶ ଆବଶ୍ୟକ । ସ୍ନେହ ଓ ଅନୁଗ୍ରହପୂର୍ଣ୍ଣ କୌଶଳ ପ୍ରୟୋଗ କରି ନୈତିକ ମାନର ବିକାଶ ପାଇଁ ପଦକ୍ଷେପ ନେବା ଉଚିତ ।

ପିଲାର ବ୍ୟକ୍ତିତ୍ୱକୁ ବିକାଶ କରିବାରେ ଅଧୁନା ଚଳଚ୍ଚିତ୍ର, ବିଶେଷକରି ଟେଲିଭିଜନର ଭୂମିକା ବିଶେଷ ଉଲ୍ଲେଖଯୋଗ୍ୟ । ଏସବୁ ଯେ ପିଲାର ସମବର୍ଦ୍ଧିଷ୍ଣୁ ବ୍ୟକ୍ତିତ୍ୱର ଅଭ୍ୟାସ, ଲକ୍ଷ୍ୟ, ଜୀବନର ମୂଲ୍ୟବୋଧ, ଶିକ୍ଷଣ ଓ ଆଦର୍ଶ ଇତ୍ୟାଦିକୁ ପ୍ରଭାବିତ କରେ, ତାହା ସମସ୍ତେ ଉପଲବ୍ଧି କଲେଣି । ଜଣାଯାଇଛି ଯେ ଟେଲିଭିଜନ ଓ ଚଳଚ୍ଚିତ୍ର ପିଲା ମଧ୍ୟରେ ପୂର୍ବରୁ ଥିବା ହିଂସ୍ର ସ୍ୱଭାବକୁ ଉତ୍ସାହିତ ଓ ତ୍ୱରାନ୍ୱିତ କରିଥାଏ । ଏହି କାରଣରୁ ଚଳଚ୍ଚିତ୍ର ଓ ଟେଲିଭିଜନରେ ଯେପରି ହିଂସାତ୍ମକ ଅସାଧାରଣ ଦୃଶ୍ୟ ପରିବେଷଣ କରା ନଯାଏ, ସେଥିପ୍ରତି ଦୃଷ୍ଟି ଦେବା ଆବଶ୍ୟକ । ପିଲାର ସୁସ୍ଥ ବ୍ୟକ୍ତିତ୍ୱ ଗଠନ ପାଇଁ ଚଳଚ୍ଚିତ୍ର ଓ ଟେଲିଭିଜନର ଦୃଶ୍ୟାବଳୀ ମନୋରଞ୍ଜକ ହେବା ସଙ୍ଗେ ସଙ୍ଗେ ଗଠନାତ୍ମକ ଓ ସୃଜନାତ୍ମକ ହେବା ଆବଶ୍ୟକ । ତାହାହେଲେ ଏହା ପିଲାର କୌତୁହଳ ଓ ଜିଜ୍ଞାସାକୁ ଅନେକ ପରିମାଣରେ ମେଣ୍ଟାଇ ପାରିବ ।

ଆଉ ଗୋଟିଏ କଥା ସ୍ପଷ୍ଟ ମନେରଖିବାକୁ ପଡ଼ିବ ଯେ, ଚଳଚ୍ଚିତ୍ର ଓ ଟେଲିଭିଜନ ମାଧ୍ୟମରେ ପ୍ରସ୍ତୁତ ହେଉଥିବା ଆଦର୍ଶ ମୂଲ୍ୟବୋଧ ଓ ପିତାମାତାଙ୍କ ଆଦର୍ଶ ମୂଲ୍ୟବୋଧ ଭିତରେ ପାର୍ଥକ୍ୟ ରହିଲେ, ଏହି ଦୁଇ ବିପରୀତମୁଖୀ ମୂଲ୍ୟବୋଧ ପିଲା ମନରେ ଦ୍ୱନ୍ଦ୍ୱ ଓ ସଂଘର୍ଷ ଜାତ କରାଇ ତା'ର ବ୍ୟକ୍ତିତ୍ୱର ସୁସ୍ଥ ବିକାଶରେ ପ୍ରଭୂତ କ୍ଷତି ଘଟାଇଥାନ୍ତି ।

**ଅସମଂଜିତ ବ୍ୟକ୍ତିତ୍ୱ**

ମୋଟାମୋଟି ଦେଖିବାକୁ ଗଲେ ଶିଶୁର ସୁସ୍ଥ ବ୍ୟକ୍ତିତ୍ୱ ବିକାଶ ଦିଗରେ ପିତାମାତା, ବିଦ୍ୟାଳୟ ତଥା ସଙ୍ଗୀ ସହପାଠୀମାନଙ୍କର ଭୂମିକା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଅଟେ । କିନ୍ତୁ ଦେଖାଯାଇଛି ଯେ ପ୍ରତ୍ୟେକ ବୟସରେ ବିଶେଷ କରି ଯୌବନାବସ୍ଥା ପୂର୍ବରୁ ପିଲାମାନଙ୍କଠାରେ ବିଭିନ୍ନ ମନସ୍ତାତ୍ତ୍ୱିକ ସମସ୍ୟା ଲକ୍ଷ୍ୟ କରାଯାଏ । ଏହି ମନସ୍ତାତ୍ତ୍ୱିକ ଓ ବ୍ୟାବହାରିକ ସମସ୍ୟାମାନଙ୍କ ମଧ୍ୟରେ ଭାଷା ବିକାଶ ବ୍ୟାହତ ହେବା, ବିଦ୍ୟାଳୟରେ ଅକୃତକାର୍ଯ୍ୟ ହେବା, କାର୍ଯ୍ୟରେ ମନ ନ ଲାଗିବା, ଅତିଶୀଘ୍ର ଧ୍ୟାନ ବିଚଳନ ଘଟିବା, ଆବେଗିକ ଅସ୍ୱାଭାବିକତା, ଉଦ୍‌ବିଗ୍ନତା, ଭୟାଳୁ ସ୍ୱଭାବ ଇତ୍ୟାଦି ପ୍ରଧାନ । କିନ୍ତୁ ଅଧିକାଂଶ ପିଲାଙ୍କ କ୍ଷେତ୍ରରେ ଏହି ମନସ୍ତାତ୍ତ୍ୱିକ ସମସ୍ୟାଗୁଡ଼ିକ ପ୍ରାୟ ଅସ୍ଥାୟୀ ହୋଇଥାଏ ।

କିନ୍ତୁ କେତେକ ପିଲାଙ୍କ କ୍ଷେତ୍ରରେ ବିଶେଷକରି ଯେଉଁମାନଙ୍କର ବାପା ମା ତଥା ସାମାଜିକ ପରିବେଶ ପିଲାର ସୁସ୍ଥ ମାନସିକ ଓ ଆବେଗିକ ବିକାଶ ପାଇଁ ଉତ୍ତମ ପରିସ୍ଥିତି ସୃଷ୍ଟି କରି ନ ଥାନ୍ତି, ଏହି ଅସମଞ୍ଜିତ ଲକ୍ଷଣଗୁଡ଼ିକ ସ୍ଥାୟୀ ହୋଇ ରହିଯାଏ । ଏପରି ପିଲା ଭବିଷ୍ୟତ ଜୀବନରେ ନିଜକୁ ପରିବେଷ୍ଟନୀ ସହିତ ଉପଯୋଜନ କରିପାରେ ନାହିଁ । ବାରମ୍ବାର ସମାଲୋଚନାର ସମ୍ମୁଖୀନ ହୋଇ ଭବିଷ୍ୟତରେ ନୂତନ ଅଥବା ସମସ୍ୟାବହୁଳ ପରିସ୍ଥିତିର ସମ୍ମୁଖୀନ ହୋଇନପାରି ଉଦ୍‌ବିଗ୍ନତା ଓ ଅନିଶ୍ଚିତତା ମଧ୍ୟରେ ସମୟ ଅତିବାହିତ କରେ ।

ବିଭିନ୍ନ ଅଧ୍ୟୟନରୁ ପରିଲକ୍ଷିତ ହୁଏ ଯେ ଅଧିକାଂଶ ଶିଶୁ ପ୍ରାକ୍ ବିଦ୍ୟାଳୟ ସ୍ତରରେ ନାନା ପ୍ରକାରର ଅସମଞ୍ଜିତ ବ୍ୟବହାର ପ୍ରଦର୍ଶନ କରନ୍ତି । ଏହି ବୟସରେ ଅଧିକାଂଶ ଶିଶୁ ୪ରୁ ୬ ପ୍ରକାରର ସମସ୍ୟାତ୍ମକ ବ୍ୟବହାର ପ୍ରଦର୍ଶନ କରନ୍ତି । ନଖ କାମୁଡ଼ା, ଆଙ୍ଗୁଠି ଚୁଚୁମା, ଭୂଇଁରେ ଗଡ଼ି ଘଣ୍ଟା ଘଣ୍ଟା ପାଇଁ ଜିଦ୍ଦି ଧରି କାନ୍ଦିବା, ବଦରାଗ, ଅତ୍ୟଧିକ ଭୟ ପ୍ରଭୃତି ପ୍ରଧାନ । କିନ୍ତୁ କାଳକ୍ରମେ ଆପେ ଆପେ ଏହି ସମସ୍ୟାତ୍ମକ ବ୍ୟବହାରଗୁଡ଼ିକ କମି କମି ଯାଏ । ଏଥିପାଇଁ ଚିନ୍ତିତ ହେବା ଅନୁଚିତ ।

କିନ୍ତୁ କେତେକ ପିଲାଙ୍କ କ୍ଷେତ୍ରରେ ଅତ୍ୟଧିକ ପରିମାଣରେ ଆବେଗିକ ଅସ୍ଥିରତା ଲକ୍ଷ୍ୟ କରାଯାଏ । ସେମାନେ ଆବଶ୍ୟକତାଠାରୁ ଅଧିକ ଆତ୍ମକେନ୍ଦ୍ରିକ ମନୋଭାବ ପ୍ରଦର୍ଶନ କରନ୍ତି । ସର୍ବଦା ନିଜ ବିଷୟରେ ଭାବନ୍ତି, ନାନା ଉଦ୍ଭଟ କଳ୍ପନା ଓ ଦିବାସ୍ୱପ୍ନରେ ସମୟ କଟାନ୍ତି । ବାସ୍ତବ ଜଗତର ବିଭିନ୍ନ ସମସ୍ୟାର ସମ୍ମୁଖୀନ ହେବାକୁ ଭୟ କରନ୍ତି । ବେଶୀ କଥାବାର୍ତ୍ତା କରନ୍ତି ନାହିଁ । ସାଙ୍ଗସାଥୀଙ୍କ ମେଳରେ ସମୟ ନ କାଟି ଏକାକୀ ରହିବାକୁ

ଭଲ ପାଆନ୍ତି । ନୂତନ ଓ ଅପରିଚିତ ପରିବେଶରେ ଏହି ଧରଣର ପିଲା ଅତ୍ୟଧିକ ମାତ୍ରାରେ ଉଦ୍‌ବେଗ ପ୍ରଦର୍ଶନ କରନ୍ତି ।

ଚିକିତ୍ସା ପ୍ରଣାଳୀ—ଉପରୋକ୍ତ ଅସ୍ୱାଭାବିକ ଆଚରଣଗୁଡ଼ିକୁ ବ୍ୟବହାର ଚିକିତ୍ସା ପଦ୍ଧତି (Behaviour Therapy) ମାଧ୍ୟମରେ ଚିକିତ୍ସା କରାଯାଇପାରେ । ଶିଶୁର ଅଚେତନ, ଅବଚେତନ ଓ ସଚେତନ ଅବସ୍ଥାର ଦ୍ୱନ୍ଦ୍ୱଗୁଡ଼ିକୁ ବିଶ୍ଳେଷଣ କରି ତାର ବ୍ୟକ୍ତିତ୍ୱର ଅସ୍ୱାଭାବିକ ଓ ସମସ୍ୟାତ୍ମକ ଲକ୍ଷଣଗୁଡ଼ିକର ପ୍ରକୃତ କାରଣ ପ୍ରଥମେ ଖୋଜି ବାହାର କରାଯାଇଥାଏ । ଲକ୍ଷଣଗୁଡ଼ିକର କାରଣ ଓ ଗମ୍ଭୀରତା ଇତ୍ୟାଦିକୁ ବିଚାରକୁ ନିଆଯାଇ ବିଭିନ୍ନ ପ୍ରକାରର ଚିକିତ୍ସା ପ୍ରଣାଳୀ ପ୍ରୟୋଗ କରାଯାଇପାରେ ।

ତା’ଛଡ଼ା ଯେକୌଣସି ଚିକିତ୍ସା ପ୍ରଣାଳୀ ପ୍ରୟୋଗ କରିବା ପୂର୍ବରୁ ପ୍ରଥମେ ପିଲା ସହିତ ମିଳାମିଶା କରି ପିଲା ନିକଟରୁ ଏବଂ ତାର ବାପା ମାଙ୍କ ନିକଟରୁ ପିଲା ସମ୍ବନ୍ଧରେ ବିଭିନ୍ନ ତଥ୍ୟ ସଂଗ୍ରହ କରିବା ଆବଶ୍ୟକ ।

ଅସ୍ୱାଭାବିକ ବ୍ୟକ୍ତିତ୍ୱ ସମ୍ପନ୍ନ ସମସ୍ୟାତ୍ମକ ଶିଶୁମାନଙ୍କର ଚିକିତ୍ସା ପାଇଁ ବିଭିନ୍ନ ପ୍ରକାରର ଚିକିତ୍ସା ପ୍ରଣାଳୀ ରହିଛି । ସେଗୁଡ଼ିକ ମଧ୍ୟରୁ କେତେକ ନିମ୍ନରେ ପ୍ରଦତ୍ତ ହେଲା ।

### କ୍ରୀଡ଼ା ଚିକିତ୍ସା ପ୍ରଣାଳୀ

ଶିଶୁ ତାର ଖେଳ ମାଧ୍ୟମରେ ନିଜର ଅଭିପ୍ରେରଣ, ଉଦ୍‌ବେଗ, ହତାଶା, ବ୍ୟର୍ଥତା, ଦେବା ନେବା ତଥା ଅନ୍ୟଠାରୁ ପାଇବାର ଇଚ୍ଛା, ପ୍ରତିଯୋଗୀ ଓ ସହଯୋଗୀ ମନୋଭାବ; ଆକାଂକ୍ଷା, ଅଭିଳାଷ, ଆବେଗ ଏବଂ ବିଭିନ୍ନ ଅପୂର୍ଣ୍ଣ ଇଚ୍ଛା ପ୍ରକାଶ କରିଥାଏ । ଅନ୍ୟ ଭାଷାରେ କହିବାକୁ ଗଲେ ଖେଳ ମାଧ୍ୟମରେ ଶିଶୁ ତାର ବ୍ୟକ୍ତିତ୍ୱର ବିଭିନ୍ନ ଲକ୍ଷଣକୁ ପ୍ରତିବିମ୍ବିତ କରେ । ପିଲାର ଖେଳକୁ ପର୍ଯ୍ୟବେକ୍ଷଣ ବା ବିଶ୍ଳେଷଣ କରି ତା’ର ବ୍ୟକ୍ତିତ୍ୱର ଅସ୍ୱାଭାବିକତାର କାରଣଗୁଡ଼ିକ ଜାଣିସାରିଲା ପରେ ଆବଶ୍ୟକୀୟ ଚିକିତ୍ସା କରାଯାଇଥାଏ । ଏଣୁ ଖେଳକୁ ଏକ ଚିକିତ୍ସା ପ୍ରଣାଳୀ ହିସାବରେ ଗ୍ରହଣ କରାଯାଇଛି । ଶିଶୁର ଖେଳକୁ ପର୍ଯ୍ୟବେକ୍ଷଣ କଲେ ତା’ର ବିଭିନ୍ନ ସମସ୍ୟା ତଥା ଅସ୍ୱାଭାବିକ ବ୍ୟବହାରକୁ ଗଠନାତ୍ମକ ପଦ୍ଧତିରେ ସମାଧାନ କରିବାକୁ ସହଜ ହୁଏ ।

ଏହି କ୍ରୀଡ଼ା ଚିକିତ୍ସା ପ୍ରଣାଳୀ ଦୁଇ ଭାଗରେ ବିଭକ୍ତ । ଅନିୟନ୍ତ୍ରିତ କ୍ରୀଡ଼ା ଚିକିତ୍ସା ପଦ୍ଧତି ଓ ନିର୍ଦ୍ଦେଶାତ୍ମକ କ୍ରୀଡ଼ା ଚିକିତ୍ସା ପଦ୍ଧତି ।

### ଅନିୟନ୍ତ୍ରିତ କ୍ରୀଡ଼ା ଚିକିତ୍ସା ପଦ୍ଧତି

ଅନିୟନ୍ତ୍ରିତ କ୍ରୀଡ଼ା ଚିକିତ୍ସା ପଦ୍ଧତି ମାଧ୍ୟମରେ ପିଲାର ଖେଳକୁ ସୀମିତ ନକରି ତାର ଇଚ୍ଛା, ଆଗ୍ରହ ଓ ରୁଚି ଅନୁଯାୟୀ ସ୍ୱାଧୀନ ଭାବରେ ଖେଳିବାକୁ ତାକୁ ସୁଯୋଗ ଦିଆଯାଏ । ଏଇଟା ଖେଳିବ, ସେଇଟା ଖେଳିବନି, ଏପରି ଖେଳିବ, ସେପରି ଖେଳିବନି ଏହିପରି ଭାବରେ ତାର ଖେଳକୁ ନିୟନ୍ତ୍ରିତ ନକରି ପୂର୍ଣ୍ଣ ସ୍ୱାଧୀନତା ମଧ୍ୟରେ ତାକୁ ଖେଳିବାକୁ ଛାଡ଼ି ଦିଆଯାଇ ତା’ର ବ୍ୟକ୍ତିତ୍ୱର ବିଭିନ୍ନ ଲକ୍ଷଣ, ଆବେଗ, ତ୍ରାସ ଓ ଉଦ୍‌ବେଗ

ଇତ୍ୟାଦିକୁ ପର୍ଯ୍ୟବେକ୍ଷଣ କରାଯାଏ । କ୍ରୀଡ଼ା ମାଧ୍ୟମରେ ପିଲା ତାର ବ୍ୟକ୍ତିତ୍ୱର ଉପରୋକ୍ତ ଅବଦମିତ ଓ ଅପ୍ରକାଶିତ ଲକ୍ଷଣଗୁଡ଼ିକୁ ବିନା ବାଧାବିଘ୍ନରେ ପ୍ରକାଶ କରିବା ଦ୍ୱାରା ଅନେକ ପରିମାଣରେ ମାନସିକ ସ୍ୱଚ୍ଛତା ଅନୁଭବ କରେ । ଦ୍ୱିତୀୟତଃ ସେ ତା'ର ବିଭିନ୍ନ ମନସ୍ତାତ୍ତ୍ୱିକ ସମସ୍ୟା, ଅବଦମିତ ଇଚ୍ଛା ଓ ଅନୁଭବକୁ କ୍ରୀଡ଼ା ମାଧ୍ୟମରେ ପ୍ରକାଶ କରି ସେଗୁଡ଼ିକର ସମ୍ମୁଖୀନ ହେବାକୁ ଚେଷ୍ଟା କରେ ଅଥବା ସେଗୁଡ଼ିକୁ ପରିତ୍ୟାଗ କରେ ।

ଅତ୍ୟନ୍ତ ଭୟାର୍ତ୍ତ, ଅତ୍ୟଧିକ ହିଂସ୍ର ଏବଂ ନିଜର ସ୍ୱାଭାବିକ ଆବେଗକୁ ଅବଦମିତ କରିଥିବା ଶିଶୁମାନଙ୍କ କ୍ଷେତ୍ରରେ ଅନିୟନ୍ତ୍ରିତ କ୍ରୀଡ଼ା ଚିକିତ୍ସା ପଦ୍ଧତି ବିଶେଷ ଫଳପ୍ରଦ ହୋଇଥାଏ ବୋଲି ଜଣାଯାଇଛି ।

## ନିୟନ୍ତ୍ରିତ କ୍ରୀଡ଼ା ଚିକିତ୍ସା ପଦ୍ଧତି

ଏହି ପଦ୍ଧତି ଅନୁସାରେ ନିୟନ୍ତ୍ରିତ ପରିବେଶ ମଧ୍ୟରେ କେତେକ ନିର୍ଦ୍ଦିଷ୍ଟ ଓ ସୀମିତ ନୀତି ନିୟମକୁ ବିଚାରକୁ ନେଇ ପିଲାକୁ ଖେଳିବାକୁ ଦିଆଯାଏ । ଏହା ଅନିୟନ୍ତ୍ରିତ କ୍ରୀଡ଼ା ପଦ୍ଧତିର ବିପରୀତ ଅଟେ । ରାତିରେ ଅଯଥା ଭୟ ପାଉଥିବା, ଅତ୍ୟଧିକ ଉଦ୍‌ବେଗ ପ୍ରକାଶ କରୁଥିବା ଶିଶୁମାନଙ୍କ କ୍ଷେତ୍ରରେ ଏହି ଚିକିତ୍ସା ପଦ୍ଧତି ଯଥେଷ୍ଟ ସାହାଯ୍ୟ କରିବାର ପ୍ରମାଣ ମିଳିଅଛି ।

ନିୟନ୍ତ୍ରିତ କ୍ରୀଡ଼ା ଚିକିତ୍ସା ପଦ୍ଧତିରେ କଣ୍ଢେଇ ଓ ଅନ୍ୟାନ୍ୟ ଖେଳ ସାମଗ୍ରୀ ମାଧ୍ୟମରେ ପିଲାର ଅସ୍ୱାଭାବିକ ବ୍ୟବହାରକୁ ନିୟନ୍ତ୍ରିତ କରାଯାଇଥାଏ । ଉଦାହରଣସ୍ୱରୂପ, ପିଲା କୌଣସି କାରଣରୁ ତା'ର ସାନ ବା ବଡ଼ ଭାଇକୁ ଈର୍ଷା କରୁଛି ଏବଂ ତାକୁ ନାନା ଭାବରେ ହଇରାଣ ହରକତ କରୁଛି । ଏହି କ୍ଷେତ୍ରରେ ପିଲାକୁ ଗୋଟିଏ କଣ୍ଢେଇ ଦେଇ ଯଦି କୁହାଯାଏ ଯେ ଏଇଟି ତୋର ଭାଇ, ତା ସହିତ ଖେଳାଖେଳି କର, ସେ କଣ୍ଢେଇ-ଟିକୁ ଭାଇ ବୋଲି ଭାବି ତାର ଭାଇ ପ୍ରତି ଯାହାକିଛି ଘୃଣା, ହିଂସା ବା କ୍ରୋଧ ରହିଛି, ଯଦି ତାକୁ ପ୍ରକାଶ କରିଦିଏ ତେବେ ତାର ବ୍ୟକ୍ତିତ୍ୱର ଏହି ଅସ୍ୱାଭାବିକତା ଅନେକ ପରିମାଣରେ ହ୍ରାସ ପାଇପାରିବ ।

ପିଲା କୌଣସି କାରଣରୁ ତାର ବାପାଙ୍କ ଉପରେ ବିରକ୍ତ । କିନ୍ତୁ ବାପାଙ୍କ ପ୍ରତି କ୍ରୋଧ ପ୍ରକାଶ କଲେ ସେ ନିନ୍ଦିତ ବା ଦଣ୍ଡିତ ହେବ । କାରଣ ସମାଜ ଏପରି କାର୍ଯ୍ୟକୁ ପସନ୍ଦ କରିବ ନାହିଁ । ଏପରି କ୍ଷେତ୍ରରେ ନିଜର ଅବଦମିତ ଆବେଗକୁ ପ୍ରକାଶ ନ କରି ସେ ଯେଉଁ ମାନସିକ ଯନ୍ତ୍ରଣା ଭୋଗ କରେ ଏବଂ ଏହାର ପ୍ରତିକ୍ରିୟା ତାର ବ୍ୟକ୍ତିତ୍ୱ ଉପରେ ଯେଉଁ କୁପ୍ରଭାବ ପକାଏ, ତାକୁ ଦୂର କରିବାପାଇଁ ପିଲାକୁ ଖେଳ ସମୟରେ ଗୋଟିଏ କଣ୍ଢେଇ ବାପା ଦେଲେ, ସେ କଣ୍ଢେଇ ବାପାଙ୍କୁ ମାରଧର କରି ବା ଗାଳିଗୁଲଜ କରି ତାର ଅବଦମିତ ଆବେଗକୁ ପରିପ୍ରକାଶ କରି ମାନସିକ ସ୍ୱଚ୍ଛତା ଲାଭ କରିପାରିବ ।

କ୍ରୀଡ଼ା ଚିକିତ୍ସା ପଦ୍ଧତି ବ୍ୟତୀତ ସମସ୍ୟାତ୍ମକ ଶିଶୁଙ୍କର ଚିକିତ୍ସାରେ ପିତାମାତାଙ୍କର ଯଥେଷ୍ଟ ଭୂମିକା ରହିଛି । ପିତାମାତାଙ୍କର ସହଯୋଗ ଉପରେ ଏହି ଚିକିତ୍ସାର ସଫଳତା

ଅନେକାଂଶରେ ନିର୍ଭର କରେ । ଶିଶୁର ସମସ୍ୟାମୂଳକ ବ୍ୟବହାର, ତାର ଅନୁଭୂତି, ଅତୀତର ଇତିହାସ ଇତ୍ୟାଦି ବିଶ୍ଳେଷଣ କରିବା ସମୟରେ ମୂଳରୁ ଶେଷ ପର୍ଯ୍ୟନ୍ତ ପିତା-ମାତାଙ୍କର ସହଯୋଗ ଆବଶ୍ୟକ ।

ଶିଶୁର ବ୍ୟକ୍ତିତ୍ୱ ଅନେକାଂଶରେ ପିତାମାତାଙ୍କର ବ୍ୟକ୍ତିତ୍ୱର ପ୍ରତୀକ ହୋଇଥାଏ । ଏଣୁ ଶିଶୁର କୌଣସି ଆବେଗିକ ସମସ୍ୟା ସମ୍ପର୍କରେ ଆଲୋଚନା କଲାବେଳେ ପିତାମାତା-ଙ୍କର ବ୍ୟକ୍ତିତ୍ୱ ତଥା ବ୍ୟକ୍ତିତ୍ୱର ବିଭିନ୍ନ ସମସ୍ୟାଗୁଡ଼ିକୁ ବିଚାରକୁ ନିଆଯାଇ ସେହି ପରିପ୍ରେକ୍ଷୀରେ ପିଲାକୁ ଚିକିତ୍ସା କରିବା ଉଚିତ ।

ପିତାମାତା ତଥା ପରିବାରର ଅନ୍ୟ ଆତ୍ମୀୟମାନେ ସେମାନଙ୍କର ବ୍ୟକ୍ତିତ୍ୱର ବିଭିନ୍ନ ଅସ୍ୱାଭାବିକ ଲକ୍ଷଣ ଓ ଦୋଷତ୍ରୁଟିଗୁଡ଼ିକୁ ବିଭିନ୍ନ ଉପାୟରେ ପିଲାଠାରୁ ଦୂରରେ ରଖିଲେ ଏବଂ ଶିଶୁର ଲାଳନପାଳନରେ କଠୋର ଓ ଅପରିବର୍ତ୍ତନୀୟ ମନୋଭାବ ପୋଷଣ ନ କଲେ, ପିଲା ସହିତ ସହଯୋଗ କଲେ ଏବଂ ତା ସହିତ ଅଧିକ ସମୟ ଅତିବାହିତ କରି ତାକୁ ସ୍ନେହ, ଶ୍ରଦ୍ଧା, ସୁରକ୍ଷା ମନୋଭାବ ସହ ବାନ୍ଧି ରଖିଲେ ପିଲାର ବ୍ୟକ୍ତିତ୍ୱରେ ଅସନ୍ତୁଳନତା ଦେଖାଯାଏ ନାହିଁ ।

ପିତାମାତା ନିଜେ ପିଲାର ଯତ୍ନ ନ ନେଇ କେବଳ ଧନର ପ୍ରାଚୁର୍ଯ୍ୟ ଭିତରେ ପିଲାକୁ ବଢ଼ିବାକୁ ସୁଯୋଗ ଦେଲେ ଯେ ପିଲା ସନ୍ତୁଳିତ ବ୍ୟକ୍ତିତ୍ୱର ଅଧିକାରୀ ହୋଇପାରିବ ଏହା ଏକ ମସ୍ତବଡ଼ ଭୁଲ ଧାରଣା । ପିଲାର ଶରୀରର ସୁସ୍ଥ ବିକାଶ ପାଇଁ ଅର୍ଥର ପ୍ରୟୋଜନ ଯେତିକି, ତାର ବ୍ୟକ୍ତିତ୍ୱ ଓ ମନର ସୁସ୍ଥ ବିକାଶ ପାଇଁ ପିତାମାତା, ଶିକ୍ଷକ, ସାଙ୍ଗସାଥୀ-ଙ୍କର ଭୂମିକା ଅପରିହାର୍ଯ୍ୟ । ସଂକ୍ଷେପରେ କହିବାକୁ ଗଲେ, ଏଥିପାଇଁ ଏକ ସୁସ୍ଥ ମନସ୍ତାତ୍ତ୍ୱିକ ଜଳବାୟୁ ଅପରିହାର୍ଯ୍ୟ ।

ପିତାମାତା ଏବଂ ବାଳ-ବିଦ୍ୟାଳୟର ଶିକ୍ଷକ ଶିକ୍ଷୟିତ୍ରୀ ପିଲା ପ୍ରତି ଅସହିଷ୍ଣୁ ଓ ଅଧୈର୍ଯ୍ୟ ହେଲେ ଏବଂ ତାର ତରଳ ଓ ନରମ ମନର ବିଭିନ୍ନ ସମସ୍ୟା ପାଇଁ ତାକୁ ଅଯଥା ଦୋଷ ଦେଇ ତିରସ୍କାର କଲେ, କଠୋର ନୀତି ପ୍ରୟୋଗ କଲେ ଅଥବା ଦଣ୍ଡ ଦେଲେ ତାର ବ୍ୟକ୍ତିତ୍ୱ ଅଧିକରୁ ଅଧିକ ଅସନ୍ତୁଳନତା ଆଡ଼କୁ ଗତି କରେ ।

ଏହା ନିଶ୍ଚିତ ଭାବରେ ମନେରଖିବା ଉଚିତ ଯେ, ପିଲା ସାଧାରଣତଃ ମାତା ଗର୍ଭରୁ ଅସୁସ୍ଥ ବ୍ୟକ୍ତିତ୍ୱର ଲକ୍ଷଣ ନେଇ ଆସିନଥାଏ । କେବଳ କେତୋଟି ଅନୁବଂଶଜନିତ ଲକ୍ଷଣମାନଙ୍କ ବ୍ୟତୀତ ପିଲାର ବ୍ୟକ୍ତିତ୍ୱର ଅଧିକାଂଶ ଲକ୍ଷଣ ତାର ପରିବେଷ୍ଟନୀ ଦ୍ୱାରା ପ୍ରଭାବିତ ହୋଇ ବିକଶିତ ହୋଇଥାଏ । ଏଣୁ ପିଲାର ବ୍ୟକ୍ତିତ୍ୱକୁ ସନ୍ତୁଳିତ, ସୁସ୍ଥ ଓ ସବଳ କରିବାପାଇଁ ତାକୁ ଅନୁରୂପ ପରିବେଷ୍ଟନୀ ମଧ୍ୟରେ ବୃଦ୍ଧି ଓ ବିକାଶ ଲାଭ କରିବାକୁ ସୁଯୋଗ ଦେବା ଉଚିତ ।

———

## REFERENCES

1. Carmichael, L. — Manual of Chi'd Psychology New York, Wiley 1954 (2nd Ed)

2. Hurlock, E. B. — Developmental Psychology. Tata Mc Graw Hill Publishing Company, Bombay, 1968.

3. Mussen, Conger and Kagan — Child Development and Personality. Harper and Row Publishers New York, 1869.

4. Mussen, P. H. — Hand Book of Research Methods in Child Development. Wiley Eastern Private Ltd. New Delhi.

5. Mussen, P. H. — The Psychological Development of the Child Prentice Hall of India Private Limited New Delhi, 1969.

6. Thompson, G. G — Child Psychology. The Times of India Press, Bombay, 1969.